Vol. XLVIII No. 9 UTKAL PRASANGA Regd. No. O-05/92
Licence No. C.R.N.P. 5—Licensed to post without Pre-payment

# ସମୃଦ୍ଧିର ଦ୍ୱାରଦେଶରେ ଓଡ଼ିଶା

- ପ୍ରଚୁର ଖଣିଜ, ଜଙ୍ଗଲ ଓ ଜଳ ସଂପଦର ସଂପୂର୍ଣ୍ଣ ବିନିଯୋଗ କରି ଏକ ସମୃଦ୍ଧ ଓଡ଼ିଶା ଗଢ଼ି ତୋଳିବା ପାଇଁ ଆଜି ଆମେ ସଂକଳ୍ପବଦ୍ଧ।
- ଦ୍ୱିତୀୟ ଇସ୍ପାତ କାରଖାନା ସମେତ ବହୁ ବୃହତ୍ ଶିଳ୍ପ ସ୍ଥାପନ ପାଇଁ ଓଡ଼ିଶା ସରକାର ଆଜି କର୍ମତତ୍ପର।
- ଚାଷୀ, ମୂଲିଆ, ହରିଜନ, ଆଦିବାସୀ, ବେକାର, ବୃଦ୍ଧ, ବିଧବା, ଅନାଥ ଓ ବିକଳାଙ୍ଗଙ୍କ ମୁହଁରେ ଆଜି ଫୁଟି ଉଠିଛି ଅପୂରନ୍ତ ହସ, ଆଶା ଓ ଆତ୍ମବିଶ୍ୱାସ।





ତାଳପତ୍ର ପୋଥିରେ ଜୟଦେବଙ୍କ ସଚିତ୍ର ଗୀତ ଗୋବିନ୍ଦ

# ଉତ୍କଳ ପ୍ରସଙ୍ଗ

୪୮ ଭାଗ ୧୦ମ ସଂଖ୍ୟା ବୈଶାଖ ୧୯୧୪ ଶକାବ୍ଦ ମେ ୧୯୯୨

## ସମ୍ପାଦନା ମଣ୍ଡଳୀ




ପ୍ରଚ୍ଛଦପଟ : ଶ୍ରୀ ଆଶିଷ କୁମାର ପାଣ୍ଡେ

ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଭୁବନେଶ୍ୱର ।

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ
(ଫଟୋଟାଇପ୍‌ସେଟିଂ ପଦ୍ଧତିରେ ଅକ୍ଷର ସଂଯୋଜିତ)

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦


ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।
"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ


| | | |
|---|---|---|
| ଖାଉଟୀ ସୁରକ୍ଷା – ଏକ ଜାତୀୟ ଆନ୍ଦୋଳନ | ବିଶ୍ୱଭୂଷଣ ହରିଚନ୍ଦନ | ୧ |
| ବିଗତ ଦଶନ୍ଧିରେ ଓଡ଼ିଶାରେ ତାଲାବନ୍ଦ ଓ ଶ୍ରମିକ ଧର୍ମଘଟ | ଶ୍ରୀମତୀ କାନନବାଳା ମିଶ୍ର | ୩ |
| ଶ୍ରମଜୀବୀ ମହିଳାଙ୍କ ସ୍ୱାଧିକାର ଓ ସୁରକ୍ଷା | ଶ୍ରୀମତୀ କନକବାଳା ଦାସ | ୫ |
| ପଦ୍ମଶ୍ରୀ ସ୍ୱର୍ଗତ କୃତାର୍ଥବାବୁ : ଅବିସ୍ମରଣୀୟ ପ୍ରତିଭା | ଅଧ୍ୟାପକ ଡକ୍ଟର ହାଡ଼ିବନ୍ଧୁ ମିଶ୍ର | ୭ |
| ଓଡ଼ିଶା ଶିଳ୍ପ ବିକାଶ ନିଗମ : ଏକ ବୃହତ୍ ପ୍ରକଳ୍ପ | ଶ୍ରୀ ଲକ୍ଷ୍ମୀମୋହନ ଦାଶ | ୯ |
| ଜମାଜର ପ୍ରଗତିରେ ନାରୀ | ଶ୍ରୀମତୀ ମନୋରମା ମିଶ୍ର | ୧୨ |
| ସ୍ୱତନ୍ତ୍ର ପ୍ରଦେଶର ପଟ୍ଟଭୂମି ଓ ପାରଳା ମହାରାଜା | ଡକ୍ଟର ରାମଚନ୍ଦ୍ର ମିଶ୍ର | ୧୫ |
| ସାକ୍ଷରତା | ହିମାଞ୍ଚଳ ସାହୁ | ୨୦ |
| ଶ୍ରମିକ | ଡାଃ ରାଜାରାମ ଷଡ଼ଙ୍ଗୀ | ୨୧ |
| ଆମ ଭଙ୍ଗର | ପ୍ରଭାକର ନାୟକ | ୨୨ |
| ନବ ମଣିବନ୍ଧି ମୁକୁଳି ଉଠଇ...... | ଡକ୍ଟର କାର୍ତ୍ତିକ ଚନ୍ଦ୍ର ଦାସ | ୨୫ |
| କେନ୍ଦୁଝରର ଶ୍ରୀଶ୍ରୀବଳଦେବ ଜୀଉଙ୍କର ଚନ୍ଦନ ଯାତ୍ରା | ଶ୍ରୀ ହରିହର ନନ୍ଦ | ୨୭ |
| ଓଡ଼ିଶାରେ ନାରୀ ସାକ୍ଷରତା ଅଭିଯାନ | ବିଭୂତି ଭୂଷଣ ଆଚାର୍ଯ୍ୟ | ୨୮ |
| ଅଷ୍ଟମ ଯୋଜନାରେ ପଶୁ ସମ୍ପଦ ବିକାଶର ଆଭିମୁଖ୍ୟ | ଗୋକୁଳ ଚନ୍ଦ୍ର ପତି | ୩୦ |
| ବିଶ୍ୱଦର୍ଶୀର ସହର ବୁଗୁଡ଼ା | ବୃଷକେତୁ ଦାଶ | ୩୨ |
| ବଲାଙ୍ଗୀର ଜିଲ୍ଲାର ଦାଦନ ଶ୍ରମିକ | ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାଶ | ୩୪ |
| ଓଡ଼ିଶାରେ ଦୋଳ ଯାତ୍ରା | ଶ୍ରୀ ରଘୁନାଥ ପାଢ଼ି | ୩୬ |
| ସମ୍ବାଦ ପରିକ୍ରମା | | ୪୨ |
| ଗୀତ ଗୋବିନ୍ଦର ବିଶ୍ଳେଷଣ | .. | ୫୩ |
| ବୈଷ୍ଣବ ଗୀତକାବ୍ୟ ଗୀତ ଗୋବିନ୍ଦ | ଶ୍ରୀ ଅଜିତ କୁମାର ତ୍ରିପାଠୀ | ୫୪ |
| ଗୁପ୍ତ ସେ କେଳି ଭକ୍ତ ହୃଦୟେ | ଡକ୍ଟର ଭଗବାନ ପଣ୍ଡା | ୫୬ |
| ଶ୍ରୀଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଶାସନ | ପ୍ରହରାଜ ସତ୍ୟନାରାୟଣ ନନ୍ଦ | ୫୯ |
| ପ୍ରାଚୀ ଉପତ୍ୟକାର ମାଧବ ପୀଠ | ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ | ୬୨ |
| ଭାରତୀୟ ସାଂସ୍କୃତିକ ଏକତାର ପ୍ରତୀକ ଗୀତ ଗୋବିନ୍ଦ | ନିରୂପମା ତ୍ରିପାଠୀ | ୬୪ |
| | ଶ୍ରୀ ବ୍ରଜ ପାଇକରାୟ | |

# ସଂପାଦକୀୟ

## ଶ୍ରମିକ ଦିବସର ଅନୁଚିନ୍ତା

ମେର ପହିଲା ଦିନଟି ସମଗ୍ର ବିଶ୍ୱରେ ଶ୍ରମିକ ଦିବସ ରୂପେ ପାଳନ କରାଯାଉଛି । ଶ୍ରମିକମାନଙ୍କ ସାମାଜିକ ତଥା ଅର୍ଥନୈତିକ ସୁରକ୍ଷା ସମ୍ପର୍କରେ ଗଣଚେତନା ସୃଷ୍ଟି କରିବା ହିଁ ଏଥିର ମୂଳ ଲକ୍ଷ୍ୟ ।

ଶ୍ରମ ଶକ୍ତି ହିଁ ଯେ କୌଣସି ରାଷ୍ଟ୍ରର ବିକାଶ ଓ ପ୍ରଗତିର ମୂଳ ଉତ୍ସ । କୃଷି, ଶିଳ୍ପ, ନିର୍ମାଣ ଇତ୍ୟାଦି ସବୁ କ୍ଷେତ୍ରର ସାଫଲ୍ୟ ଶ୍ରମ ଶକ୍ତି ଉପରେ ନିର୍ଭର କରିଥାଏ । କିନ୍ତୁ ଶ୍ରମିକମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ଆମେ କେତେ ଦୂର ସଚେତନ ? ଶ୍ରମିକମାନଙ୍କ ଦୁର୍ଦ୍ଦଶାକୁ ନେଇ ରାଜନୈତିକ ଫାଇଦା ଉଠାଇବା ଛଡ଼ା ଶ୍ରମିକମାନଙ୍କ ନ୍ୟାୟସଙ୍ଗତ ଦାବୀକୁ ଜଳାଞ୍ଜଳି ଦେଇ ମାଲିକ ସହିତ ମିଳିମିଶି ସାଲିସ୍ କରିବା ଦୃଷ୍ଟାନ୍ତର ଅଭାବ ନାହିଁ । ଅବଶ୍ୟ ଶିଳ୍ପ ଶ୍ରମିକମାନେ ସଙ୍ଗଠିତ ହୋଇଥିବା ଯୋଗୁଁ ଅପେକ୍ଷାକୃତ ଭାଗ୍ୟବାନ । କିନ୍ତୁ ଭାରତବର୍ଷ ତଥା ଆମ ରାଜ୍ୟର ଅର୍ଥନୀତି ମୁଖ୍ୟତଃ କୃଷିଭିତ୍ତିକ । ଅଶୀ ଭାଗରୁ ଅଧିକ ଲୋକ କୃଷିଜୀବୀ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଭୂମିହୀନ କୃଷି ଶ୍ରମିକ । ସେମାନଙ୍କ କଥା କିଏ ଚିନ୍ତା କରୁଛି ? ଅଧିକା ମଜୁରି ଆଶାରେ ଅନେକ ଦାଦନ ଶ୍ରମିକ ହୁଅନ୍ତି । ଲୁଟିଆଣୀର ଏହି ଜାଲ ଭିତରେ ଥରେ ପଶିଗଲେ ମୁକ୍ତି ଅନିଶ୍ଚିତ । ଏ ସବୁର ପ୍ରତିକାର ପାଇଁ କି ବ୍ୟବସ୍ଥା ହୋଇଛି ??

ଦୁଇବର୍ଷ ତଳେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ ଓଡ଼ିଶାରେ ଏକ ଜନକଲ୍ୟାଣାଭିମୁଖୀ ସରକାର ପ୍ରତିଷ୍ଠିତ ହେବା ପରେ ଶ୍ରମିକମାନଙ୍କ ସ୍ୱାର୍ଥକୁ ଅଗ୍ରାଧିକାର ଦିଆଗଲା । ଶ୍ରମ ଆଇନର ଆବଶ୍ୟକୀୟ ସଂଶୋଧନ କରି ସର୍ବନିମ୍ନ ମଜୁରି ପଚିଶି ଟଙ୍କା କରାଗଲା । କିନ୍ତୁ ସମାଜର ଥିଲାବାଲା ଏହା ବିରୁଦ୍ଧରେ ଆରମ୍ଭ କଲେ ଚକ୍ରାନ୍ତ । ସ୍ୱାର୍ଥାନ୍ୱେଷୀ ରାଜନୈତିକ ବଡ଼ପଣ୍ଡାମାନେ ମଧ୍ୟ ଏଥିରେ ସାମିଲ ହେଲେ । ଏହି ଚକ୍ରାନ୍ତ କେବଳ ବିବୃତି ଦେବାରେ ସୀମିତ ରହିଲା ନାହିଁ । ଏହି ପ୍ରଗତିଶୀଳ ଆଇନ ବିରୁଦ୍ଧରେ ଅଦାଲତର ଆଶ୍ରୟ ନିଆଗଲା । ଶ୍ରମିକମାନଙ୍କ ପ୍ରତି ଏଇ ବଡ଼ପଣ୍ଡାମାନଙ୍କ ଦରଦୀ ମନୋଭାବ ସହଜେ ଅନୁମେୟ । ଶ୍ରମିକମାନଙ୍କ କଲ୍ୟାଣ ନିମନ୍ତେ ସେମାନେ କିଛି କରିବେ ନାହିଁ । ଅନ୍ୟ କେହି କିଛି କଲେ ତାକୁ ମଧ୍ୟ ଗ୍ରହଣ କରିବାକୁ ସେଇ ବଡ଼ପଣ୍ଡାମାନେ ପ୍ରସ୍ତୁତ ନୁହନ୍ତି ।

ପଚିଶି ଟଙ୍କା ମଜୁରି ହାରରେ ଯଦି ଜଣେ ଶ୍ରମିକ ମାସ ସାରା କାମ ପାଏ, ତେବେ ତା'ର ମାସିକ ଆୟ ସର୍ବାଧିକ ୭୫୦ ଟଙ୍କା ମାତ୍ର । ପରିବାର ଚଳାଇବା ପାଇଁ ଏହି ଆୟ କ'ଣ ଯଥେଷ୍ଟ ? ମୁଦ୍ରାସ୍ଫୀତି ଓ ବଜାର ଦର କଥା ବିଚାରକୁ ନେଲେ ବିଜୁବାବୁଙ୍କ ଏହି ପଚିଶି ଟଙ୍କା ମଜୁରି ନିଶ୍ଚିତ ଏକ ଯଥାର୍ଥ ପଦକ୍ଷେପ । ଅବଶ୍ୟ ସମଗ୍ର ଭାରତବର୍ଷରେ ଏହା ହେଉଛି ସର୍ବାଧିକ ମଜୁରି । ଶ୍ରମିକମାନଙ୍କ ନିମନ୍ତେ କୁମ୍ଭୀର କାନ୍ଦଣା କାନ୍ଦି, ଶ୍ରମ ଦିବସ ପାଳନରେ ଲମ୍ବା ଲମ୍ବା ଭାଷଣ ଦେଲାବେଳେ ଆମେ କ'ଣ ସତରେ ପ୍ରଗତିର ଏହି ବିଶ୍ୱକର୍ମାମାନଙ୍କର ପରିବାର କଥା, ସେମାନଙ୍କର ଦାରିଦ୍ର୍ୟ ଓ ବୁଭୁକ୍ଷା କଥା ଚିନ୍ତା କରୁ ? ଏ ସବୁ ପ୍ରତି ପ୍ରକୃତରେ ଟିକିଏ ବି ଦରଦ ଥିବା ବ୍ୟକ୍ତି ରାଜ୍ୟ ସରକାରଙ୍କ ଏହି ଆଇନର ପ୍ରତିବାଦ ଓ ପ୍ରତିରୋଧ କରିବା କଥା ଚିନ୍ତା କରିପାରିବ ନାହିଁ । ଆମେ ଶ୍ରମିକ ସମାଜର ସ୍ୱାର୍ଥ ଚାହୁଁ ନା ଶିଳ୍ପପତି ଓ ଜମି ମାଲିକମାନଙ୍କୁ ସମର୍ଥନ କରୁ ତାହାର ବିଚାର ଆଜି ଜନସାଧାରଣ କରିବେ ।

ପରିସଂଖ୍ୟାନରୁ ଜଣାଯାଏ ଯେ ଓଡ଼ିଶା ସରକାରଙ୍କର ଶ୍ରମ କଲ୍ୟାଣାଭିମୁଖୀ ପଦକ୍ଷେପ ଯୋଗୁଁ ଗତ କିଛି ବର୍ଷ ତୁଳନାରେ ସବୁଠାରୁ କମ୍ ଶ୍ରମ ଦିବସ ନଷ୍ଟ ହୋଇଛି । ସବୁଆଡ଼େ ଶ୍ରମିକ ଅଶାନ୍ତି ବୃଦ୍ଧି ପାଉଥିବା ବେଳେ ଆମ ରାଜ୍ୟରେ ଏହା ସମ୍ଭବପର ହୋଇପାରିଛି ମୁଖ୍ୟମନ୍ତ୍ରୀ ବିଜୁବାବୁ ଓ ଶ୍ରମିକମାନଙ୍କ ସ୍ୱାର୍ଥରକ୍ଷା ପାଇଁ ବର୍ତ୍ତମାନର ସରକାର ନେଇଥିବା ପଦକ୍ଷେପ ଯୋଗୁଁ । ମୁଖ୍ୟମନ୍ତ୍ରୀ ସ୍ପଷ୍ଟ କହିଦେଇଛନ୍ତି ଯେ, ମାଲିକମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଶ୍ରମିକମାନଙ୍କର କୌଣସି ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଦମନ କରିବା ନିମନ୍ତେ ପୋଲିସ୍ ପକ୍ଷରୁ ବା ପ୍ରଶାସନ ପକ୍ଷରୁ କୌଣସି ପଦକ୍ଷେପ ନିଆଯିବ ନାହିଁ ।

ଆଜି ଆମ ରାଜ୍ୟରେ ପ୍ରଗତିର ଏକ ନୂତନ ଯୁଗ ଆରମ୍ଭ ହୋଇଛି । ଏହି ଅବକାଶରେ ପ୍ରଗତିର ଏହି ସ୍ୱପ୍ନକୁ ସାକାର କରିବା ପାଇଁ ଶ୍ରମ ଶକ୍ତିର ସୁରକ୍ଷା ପାଇଁ ରାଜ୍ୟ ସରକାରଙ୍କର ପ୍ରଗତିଶୀଳ ଶ୍ରମ ନୀତିକୁ ସମର୍ଥନ କରିବା ଓ ଏହାର କାର୍ଯ୍ୟକାରିତା ପାଇଁ ସହଯୋଗ କରିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । ଏଥିନିମନ୍ତେ ଗଣଚେତନା ଜାଗ୍ରତ ହେଉ: ଏହା ହିଁ ଶ୍ରମ ଦିବସର ଅନୁଚିନ୍ତା ।

# ଖାଉଟୀ ସୁରକ୍ଷା – ଏକ ଜାତୀୟ ଆନ୍ଦୋଳନ

ବିଶ୍ୱଭୂଷଣ ହରିଚନ୍ଦନ

ଖାଉଟୀ ସୁରକ୍ଷା ଉପରେ ଆଜି ସମଗ୍ର ଦେଶରେ ଆଲୋଚନା ଚାଲିଛି। ଏ ଦେଶର ପ୍ରତି ନାଗରିକ ଜଣେ ଖାଉଟୀ ବା ଉପଭୋକ୍ତା। ନାଗରିକର ସମସ୍ତ ଅଧିକାର, ଯଥା–କଥା କହିବାର ଅଧିକାର, ବଞ୍ଚିବାର ଅଧିକାର, ଭାରତର ସବୁ ଅଞ୍ଚଳରେ ବିନା ପ୍ରତିବନ୍ଧରେ ଶାନ୍ତିପୂର୍ଣ୍ଣ ଭାବରେ ବୁଲିବାର ଅଧିକାର ଇତ୍ୟାଦି ପାଇଁ ଆମ ସମ୍ବିଧାନରେ ବ୍ୟବସ୍ଥା ରହିଛି। ସେ ଅଧିକାରକୁ କ୍ଷୁଣ୍ଣ କରିବା ପାଇଁ ସରକାର କିମ୍ବା ସରକାରୀ କଳ କୌଣସି ପଦକ୍ଷେପ ନେଲେ, ଜଣେ ନାଗରିକ ତା' ବିରୋଧରେ ନ୍ୟାୟାଳୟକୁ ଯାଇ ପ୍ରତିକାର ପାଇଁ ଆବେଦନ କରିପାରିବେ। ଠିକ୍ ସେହିଭଳି ଏ ଦେଶର ସମସ୍ତ ଖାଉଟୀ ବା ଉପଭୋକ୍ତାର ଅଧିକାର ସୁରକ୍ଷା ପାଇଁ ଖାଉଟୀ ସୁରକ୍ଷା ଆଇନ, ୧୯୮୬ (Consumer's Protection Act, 1986) କେନ୍ଦ୍ର ସରକାର ପ୍ରଣୟନ କଲେ। ଆଜିକୁ ଦୀର୍ଘ ପାଞ୍ଚବର୍ଷ କଟି ଯାଇଥିଲେ ସୁଦ୍ଧା ଖାଉଟୀମାନଙ୍କୁ ସମସ୍ତ ପ୍ରକାର ଅସୁବିଧା ଓ ଶୋଷଣରୁ ରକ୍ଷା କରାଯାଇ ପାରିନାହିଁ।

କେବଳ ଆଇନ ପ୍ରଣୟନ କରି ଆଇନ ପୁସ୍ତକରେ ଲିପିବଦ୍ଧ କରିଦେଲେ ଜନସାଧାରଣ ବଳେ ବଳେ ନ୍ୟାୟ ପାଇଯିବେ ନାହିଁ କିମ୍ବା ବିଚାରାଳୟ କାହାକୁ ନ୍ୟାୟ ଦେଇ ପାରିବ ନାହିଁ। ଦେଶର ବିଭିନ୍ନ ରାଜ୍ୟରେ ଯୌତୁକ ନିରୋଧ ଆଇନମାନ ପ୍ରଣୀତ ହୋଇଛି ଓ ବିଭିନ୍ନ ସମୟରେ ଲୋକେ ବିଚାରାଳୟର ଆଶ୍ରୟ ନେଉଛନ୍ତି। ଆମେ ଯଦି କହିବା ଏହାଦ୍ୱାରା ଯୌତୁକ ଦେବାନେବା ବନ୍ଦ ହୋଇଯାଇଛି, ତେବେ ସତ୍ୟର ଅପଲାପ ହେବ। ସେଥିପାଇଁ ଏକ ସାମାଜିକ ବିପ୍ଳବର ଆବଶ୍ୟକତା ରହିଛି।

ମାର୍ଚ୍ଚ ମାସ ୧୫ ତାରିଖଠାରୁ ୩୧ ତାରିଖ ପର୍ଯ୍ୟନ୍ତ ଖାଉଟୀ ସଚେତନତା ପକ୍ଷ ପାଳିତ ହେଉଛି। ଏ କାର୍ଯ୍ୟକ୍ରମକୁ ଖୁବ୍ ବ୍ୟାପକ ଭାବରେ ପାଳନ କରିବା ପାଇଁ ସରକାରଙ୍କ ତରଫରୁ ବିଭିନ୍ନ କାର୍ଯ୍ୟକ୍ରମ ନିଆଯିବା ସହିତ, ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକ ଏହାକୁ ପାଳନ କରିବାକୁ ଅନୁରୋଧ କରାଯାଇଛି। ରାଜ୍ୟର ବହୁ ସ୍ଥାନରେ ଏହା ପାଳିତ ହେଉଥିବାର ଖବର ମଧ୍ୟ ଆସି ପହଞ୍ଚିଛି। ଏ କ୍ଷେତ୍ରରେ ଅଧିକ ଉତ୍ସାହ ସୃଷ୍ଟି କରିବା ପାଇଁ ରାଜ୍ୟସ୍ତରୀୟ 'ଚେତନା ସମ୍ମାନ'ର ସୃଷ୍ଟି କରାଯାଇଛି। ଏହି ବ୍ୟବସ୍ଥା ଅନୁସାରେ ଖାଉଟୀ ସୁରକ୍ଷା ଓ ସଚେତନତା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଏକ ସକ୍ରିୟ ଖାଉଟୀ ସୁରକ୍ଷା ଅନୁଷ୍ଠାନକୁ ସମ୍ମାନ ପତ୍ର ସହିତ ଦଶ ହଜାର ଟଙ୍କା, ସ୍ୱଲିଖିତ ପୁସ୍ତକ ବା ଲେଖା ଦ୍ୱାରା ଖାଉଟୀ ଆନ୍ଦୋଳନକୁ ଉତ୍ସାହ ତଥା ଦିଗ୍‌ଦର୍ଶନ ଦେଇଥିବା ଜଣେ ବିଶିଷ୍ଟ ଲେଖକଙ୍କୁ ସମ୍ମାନ ପତ୍ର ସହିତ ଦଶ ହଜାର ଟଙ୍କା, ଖାଉଟୀ ସୁରକ୍ଷା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଥିବା ଜଣେ ଯୁବ କର୍ମୀଙ୍କୁ ପ୍ରଶଂସା ପତ୍ର ସହିତ ଦୁଇ ହଜାର ଟଙ୍କା ଏବଂ ଖାଉଟୀ ଅଧିକାର ସାବ୍ୟସ୍ତ କରିଥିବା ଜଣେ ସଚେତନ ନାଗରିକଙ୍କୁ ପ୍ରଶଂସା ପତ୍ର ସହିତ ଦୁଇ ହଜାର ଟଙ୍କା ଏକ ବିଶେଷ ଆୟୋଜିତ ସଭାରେ ଦେବା ପାଇଁ ସ୍ଥିର କରାଯାଇଛି। ଏଥିପାଇଁ ଏକ ଉଚ୍ଚସ୍ତରୀୟ ବିଚାରକ ପରିଷଦ ଗଠନ କରାଯାଇ ତା'ର ସୁପାରିଶକ୍ରମେ 'ଚେତନା ସମ୍ମାନ' ପ୍ରଦାନ କରାଯିବ।

ଏହି ଆଇନ ଅନୁସାରେ ଉପଭୋକ୍ତାମାନଙ୍କ ପ୍ରତି ହୋଇଥିବା ଅନ୍ୟାୟର ପ୍ରତିକାର ପାଇଁ ସେମାନେ ଉପଯୁକ୍ତ ଅଭିଯୋଗ ପ୍ରତିକାର ସଂସ୍ଥାରେ ଆବେଦନ କରିପାରିବେ। ଉପରୋକ୍ତ ଆଇନରେ ଖାଉଟୀମାନଙ୍କୁ ଦିଆଯାଇଥିବା ବିଶେଷ ଅଧିକାରଗୁଡ଼ିକ ହେଲା–

(କ) ଧନ ଜୀବନ ପ୍ରତି କ୍ଷତିକାରକ ସାମଗ୍ରୀର ବ୍ୟବସାୟଜନିତ ବିପଦରୁ ସୁରକ୍ଷା ଦେବାର ଅଧିକାର।

(ଖ) ଆବଶ୍ୟକ ସାମଗ୍ରୀଗୁଡ଼ିକର ଗୁଣ, ପରିମାଣ, ସାମର୍ଥ୍ୟ, ବିଶୁଦ୍ଧତା, ମାନ ଓ ମୂଲ୍ୟ ସମ୍ବନ୍ଧରେ ସଚେତନ କରାଇ ଅସାଧୁ ବ୍ୟବସାୟ ଓ କାରବାର ବିରୋଧରେ ସୁରକ୍ଷା ପ୍ରଦାନ ଅଧିକାର।

(ଗ) ଯେଉଁଠାରେ ସମ୍ଭବ, ବିଭିନ୍ନ ସାମଗ୍ରୀର ପ୍ରତିଯୋଗିତାମୂଳକ ମୂଲ୍ୟ ନିର୍ଦ୍ଧାରଣ କରିବାରେ ନିଶ୍ଚିତ କରିବାର ଅଧିକାର।

(ଘ) ଖାଉଟୀମାନଙ୍କର ଅଭିଯୋଗର ଶୁଣାଣି ଓ ଉପଯୁକ୍ତ ସଂସ୍ଥା ଦ୍ୱାରା, ସେମାନଙ୍କର ସ୍ୱାର୍ଥଜନିତ ବିଷୟଗୁଡ଼ିକର ବିହିତ ବିଚାର ପାଇଁ ଅଧିକାର।

(ଙ) ଅସାଧୁ ବ୍ୟବସାୟ ପ୍ରଥା ଓ ଖାଉଟୀମାନଙ୍କୁ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟବସାୟୀମାନଙ୍କ ଶୋଷଣ ବିରୋଧରେ ନ୍ୟାୟ ବା ପ୍ରତିକାର ଲୋଡ଼ିବାର ଅଧିକାର।

(ଚ) ଖାଉଟୀ ସଚେତନତା ସମ୍ପର୍କୀୟ ଅଧିକାର। ଜଣେ ସାଧାରଣ ଖାଉଟୀ ବା ଉପଭୋକ୍ତା ବିନା ଖର୍ଚ୍ଚରେ ଏଭଳି ଆବେଦନ କରି କ୍ଷତିପୂରଣ ପାଇପାରିବ।

ଏହି ଅଧିକାରଗୁଡ଼ିକ ସାବ୍ୟସ୍ତ କରି ଶୋଷଣ ଓ ଉତ୍ପୀଡ଼ନରୁ ନିଜକୁ ରକ୍ଷା କରିବାକୁ ଏହି ଆଇନରେ ଜିଲ୍ଲା, ରାଜ୍ୟ ଓ କେନ୍ଦ୍ରସ୍ତରରେ ଅଭିଯୋଗ ପ୍ରତିକାର ସଂସ୍ଥା ସ୍ଥାପନ କରିବାର ବ୍ୟବସ୍ଥା କରାଯାଇଅଛି। ଏହି ସଂସ୍ଥାଗୁଡ଼ିକ ନିର୍ଦ୍ଦିଷ୍ଟ ଆର୍ଥିକ ସୀମା ମଧ୍ୟରେ ଖାଉଟୀ ଅଭିଯୋଗଗୁଡ଼ିକ ବିଚାର କରି ତାହାର ବିହିତ ପ୍ରତିକାର କରିବେ। ଏହି ଅଭିଯୋଗଗୁଡ଼ିକ ସମ୍ପୃକ୍ତ ଉପଭୋକ୍ତା, ସ୍ୱେଚ୍ଛାସେବୀ ଖାଉଟୀ ସଙ୍ଗଠନ କେନ୍ଦ୍ର ବା ରାଜ୍ୟ ସରକାର ଆଗତ

କରିବା ପାଇଁ ଆଇନରେ ବ୍ୟବସ୍ଥା ଅଛି । ଏହା ବ୍ୟତୀତ ଖାଉଟୀ ଅଧିକାରର ସୁରକ୍ଷା ଓ ପ୍ରୋତ୍ସାହନ ନିମନ୍ତେ କେନ୍ଦ୍ର ଓ ରାଜ୍ୟ ସ୍ତରରେ ବିଭିନ୍ନ ସରକାରୀ ଓ ବେସରକାରୀ ବ୍ୟକ୍ତିଙ୍କୁ ନେଇ ଖାଉଟୀ ସୁରକ୍ଷା ପରିଷଦ ଗଠନ କରିବାର ବ୍ୟବସ୍ଥା ଅଛି ।

ଏହି ସବୁ ଆଇନଗତ ବ୍ୟବସ୍ଥା ଅନୁସାରେ କେନ୍ଦ୍ର ସରକାର ଜାତୀୟ କମିଶନ ଓ ଜାତୀୟ ସୁରକ୍ଷା ପରିଷଦ ଗଠନ କରିଅଛନ୍ତି । ରାଜ୍ୟ ସରକାର ମଧ୍ୟ ଉଭୟ ରାଜ୍ୟ ଓ ଜିଲ୍ଲାସ୍ତରରେ ଯଥାକ୍ରମେ ରାଜ୍ୟ କମିଶନ ଓ ଜିଲ୍ଲା ଫୋରମ୍ ସ୍ଥାପନ କରିଛନ୍ତି । ରାଜ୍ୟ କମିଶନ ଉଚ୍ଚ ନ୍ୟାୟାଳୟର ଜଣେ ବିଚାରପତିଙ୍କ ଅଧ୍ୟକ୍ଷତାରେ ଗଠନ କରାଯାଇଅଛି ଓ ଏଥିରେ ଜଣେ ମହିଳାଙ୍କ ସମେତ ଦୁଇଜଣ ବେସରକାରୀ ସଭ୍ୟ ଅଛନ୍ତି । ସେହିପରି ଜିଲ୍ଲା ଫୋରମ୍‌ଗୁଡ଼ିକ ସମ୍ପୃକ୍ତ ଜିଲ୍ଲା ଜଜ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ ହୋଇ ସେଥିରେ ଜଣେ ଲେଖାଏଁ ମହିଳା ସଦସ୍ୟାଙ୍କ ସମେତ ଦୁଇଜଣ ଲେଖାଏଁ ବେସରକାରୀ ସଭ୍ୟ ରହିଛନ୍ତି । ରାଜ୍ୟ କମିଶନ ଓ ଜିଲ୍ଲା ଫୋରମ୍‌ଗୁଡ଼ିକ ଖାଉଟୀ ଅଭିଯୋଗମାନ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ ସରଳ ଓ ସହଜ ପନ୍ଥାରେ ଫଇସଲା କରି କ୍ଷତିଗ୍ରସ୍ତ ଖାଉଟୀମାନଙ୍କୁ ନ୍ୟାୟ ପ୍ରଦାନ କରୁଛନ୍ତି ।

ଉକ୍ତ ଆଇନ ଅନୁସାରେ ଜିଲ୍ଲା ଫୋରମ୍‌ମାନଙ୍କୁ ଏକଲକ୍ଷ ଟଙ୍କାରୁ କମ୍ ମୂଲ୍ୟର ଦ୍ରବ୍ୟ ବା ସେବା ସମ୍ବନ୍ଧୀୟ ଅଭିଯୋଗର ବିଚାର ପାଇଁ କ୍ଷମତା ପ୍ରଦାନ କରାଯାଇଅଛି । ସେହିପରି ରାଜ୍ୟ କମିଶନ ଏକଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଓ ଦଶଲକ୍ଷ ଟଙ୍କାରୁ କମ୍ ମୂଲ୍ୟର ଦ୍ରବ୍ୟ ଓ ସେବା ସମ୍ବନ୍ଧୀୟ ଅଭିଯୋଗ ବିଚାର କରିବା ପାଇଁ କ୍ଷମତାପ୍ରାପ୍ତ ହୋଇଛନ୍ତି । ସେବା ଦ୍ରବ୍ୟର ମୂଲ୍ୟ ଦଶଲକ୍ଷ ଟଙ୍କାରୁ ଅଧିକ ହୋଇଥିଲେ ଉକ୍ତ ଅଭିଯୋଗ ଜାତୀୟ କମିଶନଙ୍କ ବିଚାର କ୍ଷମତାର ପରିସରଭୁକ୍ତ । ଏହା ବ୍ୟତୀତ ରାଜ୍ୟ କମିଶନ ଜିଲ୍ଲା ଫୋରମଙ୍କ ଆଦେଶ ବିରୋଧରେ ଦାଖଲ ହୋଇଥିବା ଅପିଲଗୁଡ଼ିକର ଶୁଣାଣି କରିପାରିବେ ଓ ସେହିପରି ଜାତୀୟ କମିଶନ ରାଜ୍ୟ କମିଶନଙ୍କ ଆଦେଶ ବିରୋଧରେ ହୋଇଥିବା ଅପିଲର ଶୁଣାଣି କରିବେ । ଏ ପର୍ଯ୍ୟନ୍ତ ଜିଲ୍ଲା ଫୋରମ୍‌ଗୁଡ଼ିକରେ ୧,୦୮୩ଟି ଅଭିଯୋଗ ଦାଖଲ ହୋଇ ସେଥି ମଧ୍ୟରୁ [illegible] ଫଇସଲା ଶେଷ ହୋଇଛି । ରାଜ୍ୟ କମିଶନରେ ଦାଖଲ ହୋଇଥିବା ୩୮୭ଟି ଅଭିଯୋଗ ମଧ୍ୟରୁ ୧୮୮ଟି ଓ ୬୭ଟି ଅପିଲ ମଧ୍ୟରୁ ୧୯ଟି ଫଇସଲା ହୋଇଅଛି । କ୍ରମବର୍ଦ୍ଧିଷ୍ଣୁ ଖାଉଟୀ ଅଭିଯୋଗର ସଂଖ୍ୟା ନାଗରିକ ସଚେତନତା ତଥା ଅନ୍ୟାୟ ବିରୋଧରେ ଗଣତାନ୍ତ୍ରିକ ପଦ୍ଧତିରେ ସ୍ୱର ଉତ୍ତୋଳନ କରିବା ପାଇଁ ଦୃଢ଼ ମନୋଭାବର ପରିଚୟ ବହନ କରେ ।

ରାଜ୍ୟ ସରକାର ଖାଉଟୀ ସୁରକ୍ଷା ଆଇନର ବ୍ୟବସ୍ଥା ଅନୁଯାୟୀ ବିଭିନ୍ନ ସରକାରୀ ଓ ବେସରକାରୀ ବ୍ୟକ୍ତିବିଶେଷଙ୍କୁ ନେଇ "ଖାଦ୍ୟ ଓ ଯୋଗାଣ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ" ରାଜ୍ୟ ଖାଉଟୀ ପରିଷଦ ଗଠନ କରିଅଛନ୍ତି । ନିକଟ ଅତୀତରେ ଏହି ପରିଷଦ ପୁନର୍ଗଠିତ ହୋଇ ଏଥିରେ ସମାଜର ବିଭିନ୍ନ ସ୍ତରର ବ୍ୟକ୍ତିଙ୍କୁ ଅନ୍ତର୍ଭୁକ୍ତ କରାଯାଇଅଛି ।

ଖାଉଟୀ ସୁରକ୍ଷାକୁ ଏକ ଆନ୍ଦୋଳନରେ ପରିଣତ କରିବାର ଆବଶ୍ୟକତା ରହିଛି । ଖାଉଟୀର ସ୍ୱାର୍ଥ ଓ ଅଧିକାରକୁ ବେଖାତିର କରି ସବୁ କ୍ଷେତ୍ରରେ ତାକୁ ଶୋଷଣ କରିବାରେ ଅନେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଓ ସଂସ୍ଥା ଲାଗି ପଡ଼ିଛନ୍ତି । ଏ ଦିଗରେ ଆଶାଜନକ ସଫଳତା ପାଇଁ ସୁସଙ୍ଗଠିତ ଉଦ୍ୟମ ଓ ନିଷ୍ଠାର ଆବଶ୍ୟକତା ରହିଅଛି । ବର୍ତ୍ତମାନ ସୁଦ୍ଧା ସାଧାରଣ ଖାଉଟି ନିମ୍ନମାନର ଦ୍ରବ୍ୟ ଯୋଗାଣ, ଅପମିଶ୍ରଣ, ବିଭ୍ରାନ୍ତକାରୀ ବିଜ୍ଞାପନ, ମାପ ଓ ଓଜନଜନିତ ଅସାଧୁତା, ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଅଭାବ ଓ ଦର ବୃଦ୍ଧି ଏବଂ ସେବା ମାନର ଅବକ୍ଷୟ ଦ୍ୱାରା ପ୍ରତାରିତ ହେଉଛନ୍ତି । ନାଗରିକମାନଙ୍କର ନ୍ୟାଯ୍ୟ ଦାବୀ ପୂରଣ କରି ଏକ ସୁସ୍ଥ ସାମାଜିକ ତଥା ଅର୍ଥନୈତିକ ବ୍ୟବସ୍ଥା ପ୍ରଚଳନ କରିବା ଖାଉଟୀ ଆନ୍ଦୋଳନର ଏକ ମହାନ ଲକ୍ଷ୍ୟ ।

---

*ଖାଦ୍ୟ ଓ ଯୋଗାଣ ମନ୍ତ୍ରୀ,*
*ଓଡ଼ିଶା ।*



*ଓଡ଼ିଶାରେ ଆକାଶବାଣୀ ଓ ଦୂରଦର୍ଶନ ପ୍ରକଳ୍ପଗୁଡ଼ିକର ସମ୍ପ୍ରସାରଣ ବିଷୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ବିଧାନ ସଭା ଗୃହ ପ୍ରକୋଷ୍ଠରେ [illegible] ମୁଖ୍ୟମାନଙ୍କ ସହିତ ଆଲୋଚନା କରୁଛନ୍ତି (୨୫/୪) ।*

# ବିଗତ ଦଶନ୍ଧିରେ ଓଡ଼ିଶାରେ ତାଲାବନ୍ଦ ଓ ଶ୍ରମିକ ଧର୍ମଘଟ

ଶ୍ରୀମତୀ କାନନବାଳା ମିଶ୍ର

"କ୍ରୋଧାତ୍ ଭବତି ସମ୍ମୋହଃ ସମ୍ମୋହାତ୍ ସ୍ମୃତି ବିଭ୍ରମଃ
ସ୍ମୃତି ଭ୍ରଂଶାତ୍ ବୁଦ୍ଧିନାଶୋ ବୁଦ୍ଧି ନାଶାତ୍ ପ୍ରଣଶ୍ୟତି"
ଭଗବଦ୍‌ଗୀତା, ତୃତୀୟ ଅଧ୍ୟାୟ ଶ୍ଳୋକ—୬୩

ଅର୍ଥାତ୍ କ୍ରୋଧରୁ ସମ୍ମୋହ ଏବଂ ସମ୍ମୋହରୁ ସ୍ମୃତି ବିଭ୍ରମ ଘଟିଥାଏ। ସ୍ମୃତି ବିଭ୍ରମ ହେଲେ ବୁଦ୍ଧିର ବିନାଶ ଘଟେ ଏବଂ ବୁଦ୍ଧି ବିନାଶରୁ ଧ୍ୱଂସର ମାର୍ଗ ଉନ୍ମୋଚିତ ହୁଏ। ୧୯୮୧ରୁ ୧୯୯୦ ମସିହା ମଧ୍ୟରେ ଓଡ଼ିଶାରେ ଶିଳ୍ପ ଶ୍ରମିକଙ୍କ ଧର୍ମଘଟ ଓ ବିଭିନ୍ନ ଶିଳ୍ପାନୁଷ୍ଠାନର ତାଲାବନ୍ଦ ବିଷୟ ପର୍ଯ୍ୟାଲୋଚନା ପୂର୍ବରୁ ଭଗବଦ୍ ଗୀତାର ଏହି ଅମର ବାଣୀ ଉଦ୍ଧାର କରିବାର ତାତ୍ପର୍ଯ୍ୟ ଏହି ଯେ ସେ ଶ୍ରମିକ ହେଉ ବା ମାଲିକ ହେଉ କ୍ରୋଧକୁ ସମ୍ବରଣ କଲେ ବହୁ ଜଟିଳ ସମସ୍ୟାର ସମାଧାନ ହୋଇପାରିବ।

ଓଡ଼ିଶା ମୁଖ୍ୟତଃ ଏକ କୃଷି ପ୍ରଧାନ ପ୍ରଦେଶ ଏବଂ ଏହାର ଶ୍ରମିକ ମୁଖ୍ୟତଃ କୃଷି କାର୍ଯ୍ୟରେ, ଜଙ୍ଗଲରେ ଏବଂ ନିର୍ମାଣ ପ୍ରକଳ୍ପରେ କାର୍ଯ୍ୟ କରନ୍ତି। ଓଡ଼ିଶାରେ ଶିଳ୍ପ ବିପ୍ଳବର ବାସନ୍ତିକ ବାୟୁ ପ୍ରବାହିତ ହୋଇଥିବା ସତ୍ତ୍ୱେ ଓଡ଼ିଶାରେ ଶିଳ୍ପର ବିକାଶ ଯେତିକି ହୋଇଛି ସେଥିରେ ମୋଟ ଶ୍ରମିକ ଶକ୍ତିର ଏକ ଷଷ୍ଠାଂଶ ନିଯୁକ୍ତ ହୋଇଛନ୍ତି। ସେମାନଙ୍କର ମୁଖ୍ୟ ସମସ୍ୟା ଅର୍ଥନୈତିକ, କାରଣ ଓଡ଼ିଶାର ଶିଳ୍ପ ଶ୍ରମିକ ପ୍ରଚଳିତ ଦରଦାମରେ ନିଜର ନିମ୍ନତମ ସୁବିଧା ମେଣ୍ଟାଇବା ପାଇଁ ଆବଶ୍ୟକ କରୁଥିବା ମଜୁରି ହିଁ ସର୍ବପ୍ରଥମ ଦାବୀ। ଅନ୍ୟ ପକ୍ଷରେ, ଓଡ଼ିଶାର ଶିଳ୍ପପତି ଏବଂ ମାଲିକମାନେ ତାଙ୍କ ଶିଳ୍ପର ବିକାଶ ନିମନ୍ତେ ଆବଶ୍ୟକ କରୁଥିବା କଞ୍ଚାମାଲ। ଶକ୍ତି ଏବଂ ଉତ୍ପାଦିତ ବସ୍ତୁର ବଜାର ସୁବିଧା ଇତ୍ୟାଦି ବିଷୟ ଚିନ୍ତା କଲାବେଳେ ଯେଉଁ ଶ୍ରମିକଙ୍କ ଲହୁ ଝାଳରେ କଳକାରଖାନାର କୋଣାର୍କ ଗଢ଼ି ଉଠିଛି, ତା ପ୍ରତି ସମ୍ବେଦନଶୀଳ ହେବା ପ୍ରାସଙ୍ଗିକ।

ଧର୍ମଘଟ ଓ ତାଲାବନ୍ଦର ପରିସଂଖ୍ୟାନରୁ ଜଣାଯାଏ ଯେ ଓଡ଼ିଶାରେ ଗତ-ଦଶନ୍ଧିରେ ବହୁ ଶ୍ରମିକ ଧର୍ମଘଟ ସଂଘଟିତ ହୋଇ ଯାଇଛି। ତା'ର ପରିସଂଖ୍ୟାନ ନିମ୍ନରେ ପ୍ରଦତ୍ତ ହେଲା।—

| ବର୍ଷ | ଧର୍ମଘଟ ସଂଖ୍ୟା | ତାଲାବନ୍ଦ ସଂଖ୍ୟା | ଧର୍ମଘଟ ଯୋଗୁଁ ମାନବ ଦିବସ ନଷ୍ଟ | ତାଲାବନ୍ଦ ଯୋଗୁଁ ମାନବ ଦିବସ ନଷ୍ଟ |
|---|---|---|---|---|
| ୧୯୮୧ | ୮୭ | ୩ | ୨,୬୩,୩୮୦ | ୧୫,୫୮୭ |
| ୧୯୮୨ | ୫୭ | ୮ | ୧,୧୮,୨୦୦ | ୨,୫୬,୦୨୮ |
| ୧୯୮୩ | ୪୮ | ୮ | ୪,୨୦,୭୪୪ | ୪,୩୧,୮୧୦ |
| ୧୯୮୪ | ୬୯ | ୧୭ | ୨,୬୭,୫୭୦ | ୩,୩୨,୫୦୨ |
| ୧୯୮୫ | ୧୧୦ | ୯ | ୨,୪୮,୬୩୭ | ୭୦,୨୯୫ |
| ୧୯୮୬ | ୧୦୦ | ୧୦ | ୨,୪୪,୫୧୯ | ୨,୦୬,୨୨୭ |
| ୧୯୮୭ | ୮୩ | ୧୧ | ୩,୨୧,୧୨୮ | ୨,୨୬,୨୭୯ |
| ୧୯୮୮ | ୫୧ | ୮ | ୧,୭୨,୨୫୫ | ୨,୫୭,୪୯୦ |
| ୧୯୮୯ | ୫୭ | ୭ | ୩,୮୪,୩୭୯ | ୪୭,୨୫୭ |
| ୧୯୯୦ | ୮୧ | ୫ | ୭୦,୩୧୯ | ୨୮,୩୮୫ |

ଏହି ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ ୧୯୮୩ ମସିହାରେ ସର୍ବାଧିକ ଶ୍ରମିକ ଦିବସ ନଷ୍ଟ (୮-୫୪ ଲକ୍ଷ) ହୋଇଥିବା ସ୍ଥଳେ ୧୯୮୫ ମସିହାରେ ସର୍ବାଧିକ ଧର୍ମଘଟ ଏବଂ ୧୯୮୪ ମସିହାରେ ସର୍ବାଧିକ ତାଲାବନ୍ଦ ଘଟଣା ଘଟିଛି।

୧୯୮୩ ମସିହାରେ ସବୁଠାରୁ କମ୍ ସଂଖ୍ୟକ ଶ୍ରମିକ ଧର୍ମଘଟ (୪୮ଟି) ହୋଇଥିବା ସ୍ଥଳେ ସର୍ବାଧିକ ଶ୍ରମ ଦିବସ ନଷ୍ଟ ହୋଇଛି। ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହେଉଛି ଯେ ୧୯୮୩ ମସିହାରେ ଓଡ଼ିଶାରେ କେତେକ ବଡ଼ ବଡ଼ ଶିଳ୍ପାନୁଷ୍ଠାନରେ ଦୀର୍ଘଦିନ ଧରି ଧର୍ମଘଟ ହୋଇଥିଲା। ସେଗୁଡ଼ିକ ହେଲା ଓରିଏଣ୍ଟ୍ କାଗଜକଳ, ବ୍ରଜରାଜନଗର (୨୯୮୦ଜଣ ଶ୍ରମିକଙ୍କ ଦୀର୍ଘ ଷ୍ଠିମାସକାଳ ଧର୍ମଘଟ ଫଳରେ ୩,୬୦,୫୮୦ ଶ୍ରମ ଦିବସ ନଷ୍ଟ), ଇପିକୋଲ ରିଫ୍ରାକ୍ଟରିଜ ଢେଙ୍କାନାଳ (୪୧୭ ଜଣ ଶ୍ରମିକ ୧୬ ଦିନ ଧର୍ମଘଟ ଯୋଗୁଁ ୬୬୭୨ ଶ୍ରମ ଦିବସ ନଷ୍ଟ), କଳିଙ୍ଗ ଜୁଟ୍ ପ୍ରୋଡ଼କ୍ଟ ଲିମିଟେଡ୍, ଢେଙ୍କାନାଳ (୨୪୦ ଜଣ ଶ୍ରମିକଙ୍କ ଏକମାସ ଧର୍ମଘଟ ଯୋଗୁଁ ୫୬୭୦ ଶ୍ରମ ଦିବସ ନଷ୍ଟ) ଇତ୍ୟାଦି ଓରିଏଣ୍ଟ କାଗଜ କଳରେ ଦୀର୍ଘ ୪ ମାସର ଶ୍ରମିକ ଧର୍ମଘଟ ମୁଖ୍ୟତଃ ସର୍ବାଧିକ ଶ୍ରମ ଦିବସ ନଷ୍ଟର ମୂଳକାରଣ।

୧୯୮୩ ମସିହାରେ ହୋଇଥିବା ପ୍ରମୁଖ ତାଲାବନ୍ଦ ମଧ୍ୟରେ ଓରିଏଣ୍ଟ କାଗଜ କଳର ଦୀର୍ଘ ୫ ମାସରୁ ଅଧିକକାଳ ପର୍ଯ୍ୟନ୍ତ ତାଲାବନ୍ଦ ଅନ୍ୟତମ। ଏହା ବ୍ୟତୀତ କଳିଙ୍ଗ ଜୁଟ୍ ପ୍ରୋଡାକ୍ଟସ୍, ଢେଙ୍କାନାଳ, କୋଣାର୍କ ଜୁଟ୍ ଲିମିଟେଡ୍ ଧାନମଣ୍ଡଳ ଏବଂ ସୁଖାନି ଟେକସ୍‌ଟାଇଲସ୍, ଝାରସୁଗୁଡ଼ାରେ ତାଲା ବନ୍ଦ ଜନିତ ଶ୍ରମ ଦିବସ ନଷ୍ଟ ୧୯୮୩ ମସିହାରେ ଅଧିକ ଶ୍ରମ ଦିବସ ନଷ୍ଟର ମୁଖ୍ୟ କାରଣ। ଏହିସବୁ ଧର୍ମଘଟ ଏବଂ ତାଲାବନ୍ଦ ମୁଖ୍ୟତଃ ଆର୍ଥିକ ଦାବୀକୁ ନେଇ ସୂତ୍ରପାତ ହୋଇଥିଲା।

୧୯୮୫ ମସିହାରେ ଯଦିଓ ସର୍ବାଧିକ ୧୧୦ଟି ଧର୍ମଘଟ ଓ ତାଲାବନ୍ଦ ଘଟଣା ଘଟିଥିଲା, ଏହି ବର୍ଷ ଆନୁପାତିକ ଭାବେ କମ୍ ଶ୍ରମ ଦିବସ ନଷ୍ଟ ହୋଇଥିଲା।

୧୯୮୧ ମସିହାରୁ ୧୯୯୦ ମସିହା ମଧ୍ୟରେ ମୋଟ ୭୩୮ଟି ଧର୍ମଘଟ ହୋଇଥିବା ସ୍ଥଳେ ଏହି ସମୟ ମଧ୍ୟରେ ମୋଟ ୮୧ଟି

ତାଲା ବନ୍ଦ ହୋଇଥିଲା । ଏହି ହିସାବରେ ତାଲାବନ୍ଦଠାରୁ ଧର୍ମଘଟର ସଂଖ୍ୟା ପ୍ରାୟ ୯ ଗୁଣ ଅଧିକ । ଏହି ଦଶବର୍ଷ ମଧ୍ୟରେ ପ୍ରତି ବର୍ଷ ହାରା ହାରି ୭୩.୮ଟି ଧର୍ମଘଟ ଏବଂ ୮.୧ ତାଲାବନ୍ଦ ହୋଇଥିଲା । ୧୯୮୧ ମସିହାରେ ସର୍ବନିମ୍ନ ୩ଟି ତାଲାବନ୍ଦ ହୋଇଥିବା ସ୍ଥଳେ ୧୯୮୫ରେ ସର୍ବାଧିକ ୧୨ଟି ତାଲାବନ୍ଦ ହୋଇଥିଲା । ସେହିପରି ୧୯୮୩ରୁ ସର୍ବନିମ୍ନ ଏବଂ ୧୯୮୫ରେ ସର୍ବାଧିକ ଧର୍ମଘଟ ହୋଇଥିଲା । ୧୯୯୦ ମସିହାରେ ସବୁଠାରୁ କମ୍ ସଂଖ୍ୟକ ଶ୍ରମ ଦିବସ ନଷ୍ଟ ହୋଇଥିଲା । ଏହି ବର୍ଷ ଧର୍ମଘଟ ଯୋଗୁଁ ମାତ୍ର ୬୦,୩୧୯ ଏବଂ ତାଲାବନ୍ଦ ଯୋଗୁଁ ୨୮,୭୮୫ ଶ୍ରମ ଦିବସ ନଷ୍ଟ ହୋଇ ଏଇ ଦଶନ୍ଧିରେ ଏକ ଯୁଗାନ୍ତକାରୀ ଅଧ୍ୟାୟ ସୃଷ୍ଟି କରିଛି ।

୧୯୯୦ ମସିହାରେ ଏପରି କମ୍ ଶ୍ରମ ଦିବସ ନଷ୍ଟ ହେବାର କାରଣ କ'ଣ ? ଆଗରୁ ଉଲ୍ଲେଖ କରାଯାଇଛି ଯେ ମୁଖ୍ୟତଃ ଆର୍ଥିକ କାରଣ ଯୋଗୁଁ ଧର୍ମଘଟ ଏବଂ ତାଲାବନ୍ଦ ହୋଇଥାଏ । ୧୯୯୦ ଜୁଲାଇ ପହିଲା ଓଡ଼ିଶାର ଶ୍ରମିକମାନଙ୍କ ନିମନ୍ତେ ଏକ ଶୁଭ ଦିବସ । ଏହିଦିନ 'ସର୍ବନିମ୍ନ ମଜୁରି ଆଇନ୍' ଅନୁସାରେ ଅଣକୁଶଳୀ ଶ୍ରମିକଙ୍କ ସର୍ବନିମ୍ନ ମଜୁରି ଦୈନିକ ୨୫ ଟଙ୍କାକୁ ବୃଦ୍ଧି ପାଇଲା । ଏହା ଫଳରେ ଉଭୟ ଶିଳ୍ପ ତଥା କୃଷିକ୍ଷେତ୍ରରେ ଶ୍ରମିକମାନଙ୍କ ମନରେ ନୂତନ ଆଶାର ଆଲୋକ ଉଦ୍ରେକ ହେଲା । ଶ୍ରମିକମାନଙ୍କର ସର୍ବନିମ୍ନ ଆର୍ଥିକ ଦାବୀ ପୂରଣ ହେବାରୁ ଅଟିକମ୍ ଦିନ ପାଇଁ ଖାଁ ଖାଁ କେଉଁଠି କେମିତି ଧର୍ମଘଟ ଘଟି କମ୍ ଶ୍ରମ ଦିବସ ନଷ୍ଟ ହେଲା ।

ସର୍ବନିମ୍ନ ମଜୁରି ସଂଶୋଧନ ଫଳରେ ଅବଶ୍ୟ ଶତାଧିକ ମୋକଦ୍ଦମା ମାଲିକମାନଙ୍କ ଦ୍ୱାରା ଉଚ୍ଚନ୍ୟାୟାଳୟରେ ଦାୟର ହୋଇଛି, ମାତ୍ର ୧୯୯୦ ମସିହାରେ ତାଲାବନ୍ଦ ସଂଖ୍ୟା ଅ... ନଗଣ୍ୟ । ଏହାଫଳରେ ଶିଳ୍ପାନୁଷ୍ଠାନ ବନ୍ଦ ହୋଇଯିବା କି... ଅଧିକ ତାଲାବନ୍ଦ ହେବା ଦେଖା ଯାଇନାହିଁ । ଏଣୁ ଏପରି ... ମଜୁରି ସଂଶୋଧନ ଯଥାର୍ଥ ଏବଂ ସମୟୋପଯୋଗୀ ହୋଇ... ରାଜ୍ୟ ସରକାରଙ୍କ ଶ୍ରମ ଦିବସ ଏପରି ମଜୁରି ସଂଶୋଧନ ପୂର୍... ଶ୍ରମିକମାନଙ୍କର ସର୍ବନିମ୍ନ ଆବଶ୍ୟକତା ଏବଂ ଗୁହିବାକୁ ଯଥା... ବିଗ୍ରହକୁ ନେଇ ଏପରି ସର୍ବନିମ୍ନ ମଜୁରି ସଂଶୋଧନ କରିଛ... ଏହାଫଳରେ ଅନେକ ବାକିଆ ଶିଳ୍ପ ବିବାଦ ଏବଂ ଆର୍ଥି... ଦାବୀ ସମ୍ବଳିତ ଶିଳ୍ପ ବିବାଦ ଆପେ ଆପେ ସମାଧ... ହୋଇଥିଲା । ଉଦାହରଣ ସ୍ୱରୂପ, ରାଜ୍ୟର ବହୁ ଗୁଡ଼ାଏ... ସର୍ବନିମ୍ନ ମଜୁରି ଦୈନିକ ୧୮ ଟଙ୍କା କରିବା ନିମନ୍ତେ ଶ୍ରମି... ସଂଗଠନମାନଙ୍କ ତରଫରୁ ଦାବୀ ଉପସ୍ଥାପିତ ହୋଇଥି... ସର୍ବନିମ୍ନ ମଜୁରି ଦୈନିକ ୨୫ ଟଙ୍କା ହେବା ଫଳରେ ଏପରି ଦାବୀ... ପ୍ରାସଙ୍ଗିକତା ରହିଲା ନାହିଁ । ତେଣୁ ୧୯୯୦ ମସିହା... ଓଡ଼ିଶାରେ ଧର୍ମଘଟ ଏବଂ ତାଲାବନ୍ଦ ଏକ ନୂତନ ମୋ... ନେଲା । ଆଗାମୀ ଦିନମାନଙ୍କରେ ରାଜ୍ୟ ସରକାର... ପ୍ରଗତିଶୀଳ ଶ୍ରମ ନୀତି ଯୋଗୁଁ ଶିଳ୍ପ ତଥା ଅନ୍ୟାନ୍ୟ କ୍ଷେତ୍ରରେ ... ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇ ଉତ୍ପାଦନ ବୃଦ୍ଧି ପା... ପାରିବ ବୋଲି ଆଶା କରାଯାଉଛି ।

---


*ଟାଇପ୍ IV A,*
*କ୍ୱାଟର ନଂ ୨୦/୩,*
*ୟୁନିଟ୍–II,*
*ଭୁବନେଶ୍ୱର ।*





*କେନ୍ଦ୍ରାପଡ଼ା ଗୋକୁଳଚନ୍ଦ୍ର ସଙ୍ଗୀତ ସଦନ ବାର୍ଷିକ ଉତ୍ସବରେ ଅର୍ଥ ମନ୍ତ୍ରୀ ଶ୍ରୀ ବେଦପ୍ରକାଶ ଅଗ୍ରୱାଲ୍ ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ।*

# ଶ୍ରମଜୀବୀ ମହିଳାଙ୍କ ସ୍ୱାଧିକାର ଓ ସୁରକ୍ଷା

**ଶ୍ରୀମତୀ କନକବାଳା ଦାସ**

ସମାଜରେ ବାସ କରୁଥିବା ଶ୍ରମଜୀବୀ ମହିଳାଙ୍କର ସ୍ୱାଧିକାର ଓ ସୁରକ୍ଷା ଲାଗି ସଚେତନତା ଆବଶ୍ୟକ । ଏ କଥା ସମସ୍ତେ ସ୍ୱୀକାର କରିବେ । ଆମ ଦେଶରେ ଶ୍ରମଜୀବୀ ମହିଳାଙ୍କ ସଂଖ୍ୟା ୫୯ ନିୟୁତରୁ ଅଧିକ । ଅର୍ଥାତ୍ ଦେଶରେ ଥିବା ସମୁଦାୟ ଶ୍ରମିକଙ୍କ ସଂଖ୍ୟାର ୩୧.୫ ଶତାଂଶରୁ ଅଧିକ ହେଉଛନ୍ତି ନାରୀ ଶ୍ରମିକ । ଦେଶର ଏହି ବିପୁଳ ସଂଖ୍ୟକ ନାରୀ ଶ୍ରମିକ ସେମାନଙ୍କର ଦାବୀ ଓ ଅଧିକାର ସମ୍ପର୍କରେ ଅଜ୍ଞ । ନିଜ ଅଧିକାରକୁ ମାଲିକ ପାଖରେ ସାବ୍ୟସ୍ତ କରିବାକୁ ସେମାନେ ଦୁର୍ବଳ । ତେବେ ସୁଖର କଥା ଶ୍ରମଜୀବୀ ମହିଳାମାନେ ସମ୍ମୁଖୀନ ହେଉଥିବା ଅର୍ଥନୈତିକ ଓ ରାଜନୈତିକ ସମସ୍ୟା ସମୂହ ଏବେ ବିଶେଷ ଦୃଷ୍ଟି ଆକର୍ଷଣ କରିବାରେ ଲାଗିଛି । ନିଯୁକ୍ତି ଅବକାଶ କ୍ଷେତ୍ରରେ ପାତର ଅନ୍ତର, ଆୟ, ଶିକ୍ଷାଗତ ଯୋଗ୍ୟତା, ରାଜନୈତିକ ପ୍ରତିନିଧିତ୍ୱ, ସ୍ୱାସ୍ଥ୍ୟ, ବିଧି ସୁରକ୍ଷା, ତାଲିମ ସୁଯୋଗାଦି ସ୍ଥାନ ଦେଶକାଳ ଭେଦରେ ଫରକ ଥିବା ଏକ ନିଛକ ସତ କଥା । ନୀତି, ବିଧିବିଧାନ' ଓ ପ୍ରକୃତି ପରିପାଳନ କ୍ଷେତ୍ରରେ ଅସ୍ପୃହଣୀୟ ବ୍ୟବଧାନ ହିଁ ଶ୍ରମଜୀବୀ ମହିଳାଙ୍କ ପ୍ରଗତିର ମୁଖ୍ୟ ଅନ୍ତରାୟ ରୂପେ ବିଶ୍ୱବିଦିତ, ଏହା ଅସ୍ୱୀକାର କରିବାର ନୁହେଁ । ଆମ ସରକାର ଶ୍ରମ ବିଭାଗ, ଶ୍ରମିକ ୟୁନିୟନ ସେମାନଙ୍କ ସୁରକ୍ଷା ଦିଗରେ ବହୁ ସୁଚିନ୍ତିତ ପଦକ୍ଷେପ ଗ୍ରହଣ କରିଛନ୍ତି ।

ସ୍ୱାଧୀନତାର ପ୍ରାକ୍- କାଳରେ ପ୍ରଥମେ ଗୁଜୁରାଟର ଅହମଦାବାଦର ଟେକ୍ସଟାଇଲ୍ ସଙ୍ଘରେ ପ୍ରଥମ କରି ଏକ ମହିଳା ବିଭାଗ ଖୋଲାଯାଇଥିଲା । ଏହି ଟେକ୍ସଟାଇଲ୍ ସଙ୍ଘ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିଲା ଏବଂ ଏହାର ନାମ 'ମହାଜନ ସଙ୍ଘ' ନାମରେ ନାମିତ ହୋଇଥିଲା । ଶ୍ରୀମତୀ ଇଲା ଭଟ୍ଟ ଏହାର ନେତୃତ୍ୱ ନେଇଥିଲେ । ଏହି ମହିଳା ବିଭାଗର କାର୍ଯ୍ୟ ଖୁବ୍ ବିସ୍ତୃତ ଥିଲା ।' ସମାଜରେ ମହିଳା ଶ୍ରମିକମାନଙ୍କ ଅଧିକାରର ସୁରକ୍ଷା ତଥା ଶ୍ରମିକମାନଙ୍କର ପରିବାରରେ ଥିବା ମହିଳାମାନଙ୍କୁ ଧନ୍ଦାମୂଳକ ତାଲିମ ଦେବା ସେମାନଙ୍କୁ ଉପାର୍ଜନକ୍ଷମ କରାଇବା ତା' ସହିତ ବିଭିନ୍ନ ଲୁଗା କଳଗୁଡ଼ିକରେ କାର୍ଯ୍ୟରତ ମହିଳାମାନଙ୍କୁ ଏକଜୁଟ କରି ସଙ୍ଗଠନ ବଢ଼ାଇବା ଏହି ବିଭାଗର କାର୍ଯ୍ୟ ଥିଲା । ଶ୍ରୀମତୀ ଇଲା ଭଟ୍ଟ ଅହମଦାବାଦର ଏହି ସଙ୍ଗଠିତ ଶ୍ରମିକମାନଙ୍କର ଦୁର୍ଦ୍ଦଶା ସମ୍ପର୍କରେ ଆନ୍ତର୍ଜାତିକ ଶ୍ରମ ସଙ୍ଗଠନର ଦୃଷ୍ଟି ଆକର୍ଷଣ କରିଥିଲେ । ଏହାପରେ ଶ୍ରୀମତୀ ଇଲା ଭଟ୍ଟ ଓ ଶ୍ରୀ ଏ: ଏନ୍: ବୁଚ୍‌ଙ୍କ ଉଦ୍ୟମରେ ଅହମଦାବାଦସ୍ଥିତ ମହିଳା ଶ୍ରମିକମାନଙ୍କର ନିରାପତ୍ତା ରକ୍ଷା ଲାଗି ଓ ଅଧିକାର ସାବ୍ୟସ୍ତ ଲାଗି ଏକ ଆତ୍ମ ନିଯୁକ୍ତି ମହିଳା ସଙ୍ଘ ଗଠିତ ହେଲା । ୧୯୨୬ର ଶ୍ରମିକ ଆଇନ ଅନୁଯାୟୀ ଏହି ସଙ୍ଘ ରେଜିଷ୍ଟ୍ରିଭୁକ୍ତ ୟୁନିୟନ'। ବର୍ତ୍ତମାନ ଏହି ସଙ୍ଘର ସଭ୍ୟ ସଂଖ୍ୟା ୧୫,୦୦୦ରୁ ଊର୍ଦ୍ଧ୍ୱ । ପରେ ପରେ ଏହି ସଙ୍ଘକୁ ସାରା ଦେଶରେ ସବୁ ସ୍ତରରେ ସ୍ୱୀକୃତି ମିଳିଲା । ଏହାର ଅନୁସରଣରେ ଦିଲ୍ଲୀରେ ଜରି କାମ, କାଗଜ ଠୁଙ୍ଗା ଏବଂ ରାସ୍ତା କଡ଼ରେ ବିକ୍ରି ହେଉଥିବା ବିଭିନ୍ନ ହସ୍ତଶିଳ୍ପରେ କାର୍ଯ୍ୟରତ ମହିଳାମାନଙ୍କର ଏକ ସଙ୍ଗଠନ ଗଠିତ ହେଲା । ଏହି ସଙ୍ଗଠନର ନାରୀ ଶ୍ରମିକ ସଙ୍ଗଠନ ଶାଖା ପଶ୍ଚିମ ଭାରତରେ ମୁଣ୍ଡ ଟେକିଲା । ବିଡ଼ି ବଳୁଥିବା ମହିଳା ଶ୍ରମିକ, ଠେଲା ଗାଡ଼ିରେ ବାସନକୁସନ ତଥା ପ୍ରଶାଧନ ସାମଗ୍ରୀ ଆଦି ବିକ୍ରି କରୁଥିବା ମହିଳାମାନଙ୍କୁ ଏହି ସଙ୍ଗଠନର ସଭ୍ୟ ଅନ୍ତର୍ଭୁକ୍ତ କରାଯାଇଥିଲା ।

ଆମ ରାଜ୍ୟରେ ସମ୍ପ୍ରତି ଶ୍ରମ ଆଇନଗୁଡ଼ିକରେ ନାରୀମାନଙ୍କ ଲାଗି ରୋଗ ଚିକିତ୍ସା ଶାରୀରିକ ଅକ୍ଷମତା, ପ୍ରସବକାଳୀନ ଛୁଟି ଓ ଚିକିତ୍ସା ବ୍ୟବସ୍ଥା ରହିଛି । ମହିଳା ଶ୍ରମିକମାନେ କୌଣସି କାରଖାନାରେ ରାତି ସାତଟାରୁ ଛଅଟା ପର୍ଯ୍ୟନ୍ତ କାର୍ଯ୍ୟ କରିବେ ନାହିଁ । ସେମାନଙ୍କ ପାଇଁ କାର୍ଯ୍ୟ କରିବାର ସମୟ ନିରୂପଣ କରାଯାଇଛି । ସେମାନଙ୍କ କଲ୍ୟାଣ ନିମନ୍ତେ ବିଜୁବାବୁଙ୍କ ନେତୃତ୍ୱରେ ଗଠିତ ଆମ ରାଜ୍ୟ ସରକାର ପୁରୁଷ ଶ୍ରମିକଙ୍କ ସହିତ ସମାନ ହାରରେ ମଜୁରି ବ୍ୟବସ୍ଥା କରିଛନ୍ତି । ସର୍ବନିମ୍ନ ମଜୁରି ୧୧ ଟଙ୍କାରୁ ୨୫ ଟଙ୍କାକୁ ବୃଦ୍ଧି କଲାବେଳେ ବିଜୁବାବୁ ସେହି ସମାନ ବ୍ୟବସ୍ଥା ମହିଳାମାନଙ୍କ ପାଇଁ ମଧ୍ୟ କରିଛନ୍ତି । ଅସହାୟା ମହିଳାମାନଙ୍କ ଥଇଥାନ ପାଇଁ ୧୯୯୦-୯୧ ମସିହାରେ ଧନ୍ଦାମୂଳକ ତାଲିମ ଦେବା ଲାଗି ୮ ଲକ୍ଷ ଟଙ୍କା ବ୍ୟୟରେ ଏକ ପରିକଳ୍ପନା ଆରମ୍ଭ ହୋଇଛି । ଏଥିରେ ସ୍ୱତନ୍ତ୍ର ତାଲିମ ବିଷୟ ହେଲା–ସିଲେଇ ଶିକ୍ଷା, ଛୁଞ୍ଚି କାମ, ବୁଣାବୁଣି, ଖୋଦେଇ, କସେଇ ତିଆରି ଏବଂ ନଡ଼ିଆ କତାରେ ପ୍ରସ୍ତୁତ ସାମଗ୍ରୀ ଇତ୍ୟାଦି । ମହିଳା ବିକାଶ ନିଗମ ବିଜୁବାବୁଙ୍କର ଆଉ ଏକ ଉଚ୍ଚ ପଦକ୍ଷେପ । ଏଥିରେ ମହିଳା ଉଦ୍ୟୋଗୀମାନଙ୍କୁ ଚିହ୍ନଟ କରି ସେଇମାନଙ୍କ ପାଇଁ ବୈଷୟିକ ସୁବିଧା ସହିତ ଉପଯୁକ୍ତ ପରାମର୍ଶ ଯୋଗାଇ ଦେବା ଏହାର ପ୍ରଥମ କାର୍ଯ୍ୟ । ଏହି ବ୍ୟବସ୍ଥା ଦ୍ୱାରା ବହୁ ମହିଳା ଶ୍ରମିକ କାର୍ଯ୍ୟ କରିବାର ସୁବିଧା ପାଉଛନ୍ତି ।

ଏତେ ସବୁ ବ୍ୟବସ୍ଥା ପରେ ବି ସବୁଠାରୁ ପରିତାପର ବିଷୟ ଯେ ଶ୍ରମଜୀବୀ ମହିଳା ଉତ୍ପାଦନ ପ୍ରକ୍ରିୟାରେ ପୁରୁଷ ଶ୍ରମିକଙ୍କ ଭଳି ଉତ୍ପାଦନକ୍ଷମ ନୁହନ୍ତି । ଏଭଳି ଧାରଣା ବିଲୋପ ନିମିତ୍ତ ଯେଉଁ ଭିତ୍ତିଭୂମି ସୃଷ୍ଟି କରିବାର କଥା, ତାହା ଏବଂବିଧ ବହୁ ଐତିହାସିକ, ଅର୍ଥନୈତିକ, ସାମାଜିକ କାରଣ ସମ୍ବଳିତ ଅନ୍ତରାୟ ହେତୁ ବିଘ୍ନିତ ଏବଂ ଏହାର ନିରାକରଣ ତଥା ମୁଲୋତ୍ପାଟନ ଏକାନ୍ତ ଅପରିହାର୍ଯ୍ୟ ।

ଶ୍ରମଜୀବୀ ମହିଳାଙ୍କ ସ୍ୱାଧିକାର ସଂରକ୍ଷଣ ତଥା କଲ୍ୟାଣ ବାସ୍ତବରେ ଏକ ବହୁମୁଖୀ ସମସ୍ୟା । ମହିଳା ଶ୍ରମିକମାନେ ନିଜ ଗୋଡ଼ରେ ଠିଆ ହେବାକୁ ଚେଷ୍ଟା କରିବା ଉଚିତ । ଶ୍ରମିକ ୟୁନିୟନଗୁଡ଼ିକରେ ନାରୀ ଶ୍ରମିକମାନଙ୍କ ସଂଖ୍ୟା ଅତି ନଗଣ୍ୟ । ପୂର୍ବରୁ ବିଭିନ୍ନ କଳକାରଖାନା, ପୋଲ ବନ୍ଧ ନିର୍ମାଣ, କୋଠାବାଡ଼ି ନିର୍ମାଣ ଇତ୍ୟାଦିରେ କାର୍ଯ୍ୟରତ ଥିବା ଶ୍ରମିକ ବିଶେଷତଃ ମହିଳା ଶ୍ରମିକମାନଙ୍କ ପ୍ରତି ବିଶେଷ ଧ୍ୟାନ ଦିଆଯାଉ ନଥିଲା । ଦାରିଦ୍ର୍ୟ, ଅଶିକ୍ଷା ତଥା ନେତୃତ୍ୱର ଅଭାବରୁ କାଳେ କାଳେ ନାରୀ ଶ୍ରମିକ ଶୋଷିତ, ଉପେକ୍ଷିତ, ନିର୍ଯ୍ୟାତିତ, ନିଷ୍ପେଷିତ । ସୁଖର କଥା ବର୍ତ୍ତମାନର ସରକାର ସେମାନଙ୍କ ପ୍ରତି ଧ୍ୟାନ ଦେଇଛନ୍ତି । ସେମାନଙ୍କ ପାଇଁ ବହୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛନ୍ତି । ଉଚିତ ପଦକ୍ଷେପ ନେଇଛନ୍ତି । ଯନ୍ତ୍ରଣାର ମୂଳ କେଉଁଠି ତାହା ଯନ୍ତ୍ରଣା ଭୋଗୀ ଜାଣେ । କେବଳ ଆମ ଦେଶ ନୁହେଁ, ବିଶ୍ୱର ପ୍ରାୟ ସବୁ ଦେଶର ଅର୍ଥନୀତିରେ ମଜୁରି ନୀତି ନିର୍ଦ୍ଧାରଣ ଓ ନିୟନ୍ତ୍ରଣ ଏକ ଜ୍ୱଳନ୍ତ ପ୍ରସଙ୍ଗ ଅଟେ । ଖଟିଖିଆ ଦିନ ମଜୁରିଆ ସମାଜର ତଳ ଶ୍ରେଣୀର ବାସିନ୍ଦା ସେମାନେ । କେବଳ ବଞ୍ଚିବା ପାଇଁ ଖାଆନ୍ତି । ସର୍ବନିମ୍ନ ଆବଶ୍ୟକତା ପୂରଣ ହେଲେ ବହୁତ କିଛି ହୋଇଗଲା ବୋଲି ଭାବନ୍ତି । ଏହି ସର୍ବନିମ୍ନ ଆବଶ୍ୟକତା ଜଣେ ପୁରୁଷ ଅପେକ୍ଷା ଜଣେ ନାରୀର ଅଧିକ । ଯଥା— ପୁରୁଷ ଶ୍ରମିକର ଖଣ୍ଡେ ଲୁଙ୍ଗି ସହିତ ଖଣ୍ଡେ ଗାମୁଛା ହୋଇଗଲେ ଚଳିଯାଇପାରେ କିନ୍ତୁ ଜଣେ ମହିଳା ଶ୍ରମିକର ଅନ୍ତତଃ ତିନିଖଣ୍ଡ ଦରକାର ଏହିପରି ସବୁ କ୍ଷେତ୍ରରେ ତା'ର ଅଧିକ ଖର୍ଚ୍ଚ । ସେହି ହିସାବରେ ତା'ର ମଧ୍ୟ ଅଧିକ ଉପାର୍ଜନ ଦରକାର । ସେହି ସବୁ ଦୃଷ୍ଟିରୁ ସରକାର ମହିଳାମାନଙ୍କ ପ୍ରତି ଅଧିକ ଗୁରୁତ୍ୱ ଦେଇଛନ୍ତି । ଶ୍ରମଜୀବୀ ମହିଳାଙ୍କ ସ୍ୱାଧିକାର ସଂରକ୍ଷଣ ତଥା କଲ୍ୟାଣ ବାସ୍ତବରେ ଏକ ବହୁମୁଖୀ ସମସ୍ୟା । ଏକ ଦିଗରୁ ଏଥିପାଇଁ ପାରମ୍ପରିକ ମୂଲ୍ୟବୋଧ ଓ ଆବେଦନର ପରିବର୍ତ୍ତନ ଲୋଡ଼ା । ଅପର ଦିଗରୁ ଶିକ୍ଷାୟତନ ତଥା ବିଭିନ୍ନ ବୃତ୍ତିରେ ନାରୀର ଉତ୍ପାଦନ ଦକ୍ଷତାର ପର୍ଯ୍ୟାପ୍ତ ବିନିଯୋଗ ପ୍ରକ୍ରିୟା ତ୍ୱରାନ୍ୱିତ ଓ ସଫଳ କରିବା ପାଇଁ ଧନ୍ଦା ଓ ବୃତ୍ତିଭିତ୍ତିକ ତାଲିମ ଏବଂ ପ୍ରଶିକ୍ଷଣ ବ୍ୟବସ୍ଥା ପ୍ରତି ସମତୁଲ ପ୍ରାଧାନ୍ୟ ଦେବା ବିଧେୟ । ଏ କ୍ଷେତ୍ରରେ ଫଳପ୍ରଦ ନାରୀ ଜାଗରଣ, ଶିକ୍ଷା ଓ ପର୍ଯ୍ୟାପ୍ତ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ଉପାଦେୟତା ଭୁଲିଯିବାର ନୁହେଁ । ଶ୍ରମବର୍ଣ୍ଣୀକରଣ ଓ ଲିଙ୍ଗଭେଦ ଆଧାରିତ ଆମ ପୁରୁଣା ଚିନ୍ତାଧାରାର ବିଲୋପନ ପାଇଁ ନବଜାଗରଣ ଓ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଅନୁରୂପ ଭାବେ ଅପରିହାର୍ଯ୍ୟ ମଧ୍ୟ । ନାରୀ ପୁରୁଷର ଶେଷ ଉପନିବେଶ ନୁହେଁ, ଉତ୍ତମ ଅର୍ଦ୍ଧାଙ୍ଗିନୀ ଓ ଉତ୍ପାଦନ ପ୍ରକ୍ରିୟାରେ ଉତ୍ତମ ଅର୍ଦ୍ଧାଙ୍ଗିନୀ... ଅବଦାନ ବିନା ଅର୍ଥନୈତିକ ପୂର୍ଣ୍ଣାଙ୍ଗ ପୁନର୍ଗଠନ ସମ୍ଭବ ... ହୁଏ ।

ଶ୍ରମଜୀବୀ ମହିଳାଙ୍କ ସ୍ୱାଧିକାର ଏବଂ ସୁରକ୍ଷା ପାଇଁ ... ସାମ୍ବିଧାନିକ ବ୍ୟବସ୍ଥା ଯଥେଷ୍ଟ ନୁହେଁ ଏଥିପାଇଁ ... ସଚେତନତା ଆମ ଭିତରେ ସୃଷ୍ଟି ହେବା ଆବଶ୍ୟକ । ... ସମତା ଓ ଆଇନତଃ ମହିଳା ଶ୍ରମଜୀବୀଙ୍କୁ ସ୍ୱାଧିକାରରୁ ବଞ୍ଚିତ ... ଏବଂ ପ୍ରତାରିତ କରୁଥିବା ଦୋଷ ଦୁଷ୍ଟ ନିଯୋକ୍ତାଙ୍କ ବିରୁଦ୍ଧରେ ... କଠୋର ଶାସ୍ତି ବିଧାନ ଆବଶ୍ୟକ ସ୍ଥଳେ କରିବା ଉଚିତ । ... ବିଶେଷ କରି ନିଯୁକ୍ତି ପ୍ରବେଶ, କାର୍ଯ୍ୟଭାର ଗ୍ରହଣ, ଉନ୍ନତି ଓ ... ସର୍ବାଙ୍ଗୀନ ସୁରକ୍ଷା ବା ନିରାପତ୍ତା କ୍ଷେତ୍ରରେ ବଞ୍ଚିତ ମହିଳା ଶ୍ରମିକ... ଆଇନତଃ ସହାୟତା ଦେବା ପାଇଁ ସ୍ୱତନ୍ତ୍ର ସେଲ୍‌ର ବ୍ୟବସ୍ଥା ... ହେବା ଉଚିତ । ସମାନ ମଜୁରି, ଶ୍ରମ କଲ୍ୟାଣ, ସାମାଜିକ ... ସୁରକ୍ଷା ଆଦି ଶିକ୍ଷାୟତନରେ ଶ୍ରମନିରତ ନାରୀର କେତେଗୁଡ଼ିଏ ... ଜ୍ୱଳନ୍ତ ସମସ୍ୟା । ଯାହା ସ୍ୱତନ୍ତ୍ର ଆବେଦନ ଓ ପ୍ରାଧାନ୍ୟ ... କରେ । ଉପାର୍ଜନ କ୍ଷେତ୍ରରେ ପୁରୁଷ ଓ ମହିଳା ଶ୍ରମିକମାନଙ୍କ ... ମଧ୍ୟରେ ପାରିଶ୍ରମିକର ଅନ୍ୟ ଏକ ପୁରୁଣା ବ୍ୟାଧି । ... ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦୃଢ଼ ସଂକଳ୍ପ ... ବ୍ୟାଧିର ସମ୍ପୂର୍ଣ୍ଣ ନିରାକରଣ ଏବେ ହୋଇପାରିଛି । ... ଆଇନଗତ ବ୍ୟବସ୍ଥାର ପ୍ରଚଳନ ଏ କ୍ଷେତ୍ରରେ ପରିଲକ୍ଷିତ ... ଅନ୍ତରାୟର ପ୍ରତିକାର ପାଇଁ ସବୁକିଛି ଯଥେଷ୍ଟ ନୁହେଁ । ଏଥିପାଇଁ ... ସମ୍ପୃକ୍ତ ନିଯୋକ୍ତା ମହିଳା ଶ୍ରମିକ, ସେମାନଙ୍କ ସୁରକ୍ଷା ଦାୟିତ୍ୱ ... କ୍ଷମତାଧିକାରୀ, ଶ୍ରମ ସଙ୍ଗଠକ, ସମାଜସେବୀ ଲୋକ ପ୍ରତିନିଧି ... ମଧ୍ୟରେ ଏକ ଗଣ ସଚେତନତା ହିଁ ସର୍ବ ପ୍ରଥମ ଆବଶ୍ୟକ । ... ଆଜି ସେ ଦିଗରେ ସରକାର ଶ୍ରମ ବିଭାଗ ଶ୍ରମିକ ୟୁନିୟନ ଓ ... ନାରୀ ସଙ୍ଗଠନ ସମସ୍ତେ ସଚେତନ ହୋଇ ପଡ଼ିଛନ୍ତି । ... ବହୁ ମହିଳା ସରକାରୀ ଦପ୍ତରରୁ ଆରମ୍ଭ କରି ରାସ୍ତା କାମ ... ପର୍ଯ୍ୟନ୍ତ କାର୍ଯ୍ୟରେ ନିଯୁକ୍ତି ପାଉଛନ୍ତି । ଗୋଟିଏ ... କହିଲେ, ସମାଜରେ ସେମାନଙ୍କର ସୁରକ୍ଷା ଯୋଗାଇ ଦେବା ... ଦାୟିତ୍ୱ ଆମ ସମସ୍ତଙ୍କର ।

---

*ଅଧ୍ୟକ୍ଷା,*
*ଇନ୍ଦିରାଦେବୀ ମହିଳା ମହାବିଦ୍ୟାଳୟ,*
*ଗାଁ/ପୋ:-ଅଣ୍ଡରା, ଜିଲ୍ଲା-କଟକ ।*

# ପଦ୍ମଶ୍ରୀ ସ୍ୱର୍ଗତ କୃତାର୍ଥବାବୁ : ଅବିସ୍ମରଣୀୟ ପ୍ରତିଭା

ଅଧ୍ୟାପକ ଡକ୍ଟର ହାଡ଼ିବନ୍ଧୁ ମିଶ୍ର

ପ୍ରକୃତିର ରମ୍ୟଭୂମି ବରପାଲି । ଅନେକ ମନୀଷୀଙ୍କୁ ଜନ୍ମ ଦେଇ ତା'ର ସ୍ୱର୍ଣ୍ଣପ୍ରସୂ ଗର୍ଭକୁ ସାର୍ଥକ କରିଛି । ସମ୍ବଲପୁରରୁ ବଲାଙ୍ଗୀର ଯିବା ରାସ୍ତାରେ ଯିଏ ଯାଇଛି ଏଇ ମାଟିର ପବିତ୍ରତା ସ୍ପର୍ଶ କରି ସେ ନିଜକୁ ଧନ୍ୟ ମନେ କରିଛି – କରୁଛି ମଧ୍ୟ । ବରପାଲି ବୁଣାକାରର କଳା, କୌଶଳ, ମେହେର କବିଙ୍କର ସାରସ୍ୱତ ନିର୍ଝର ରାଘବ ମିଶ୍ରଙ୍କର ଆଦର୍ଶ ଚେତନା, ଆଉ ଐତିହାସିକ ସାଂସ୍କୃତିକ, ରାଜନୈତିକ ତଥା ସ୍ୱାଧୀନତା ସଂଗ୍ରାମର ଭୂମିରେ ଭାସ୍ୱର ହୋଇ ଯୁଗାବଧି ଓଡ଼ିଆ ଜାତିର ସାହିତ୍ୟ – ସଂସ୍କୃତିକୁ ଅନୁପ୍ରାଣିତ କରିଛି ।ଏଣୁ ଏହି ମାଟି ଧନ୍ୟ । ଏମାଟି ଅନେକ ଅମର ସନ୍ତାନଙ୍କ ମଧ୍ୟରେ କୃତାର୍ଥ ମାଷ୍ଟ୍ରଙ୍କୁ ସ୍ୱାଗତ କରିଛି ।

ବାସ୍ତବରେ ଏମାଟି କଳା – ନୈପୁଣ୍ୟରେ ବିଚିତ୍ର । ତା'ର ଶିଳ୍ପ ବିଭିନ୍ନ ବିଭାବରେ ସମୃଦ୍ଧ । ତାହା ତା'ର କୃତୀ ସନ୍ତାନମାନଙ୍କର ବ୍ୟକ୍ତିତ୍ୱରେ ବିକଶିତ । କବିର କବିତାରେ ଚିତ୍ରିତ ଛବି ଅବିନଶ୍ୱର ଭାବ ଅଙ୍କନ କରୁଥିଲେ ମଧ୍ୟ ପରିଧାନରେ ତନ୍ତୀ ଫୁଲ ଜୀବନ୍ତ ଛବି ଅଙ୍କନ କରି ସମଗ୍ର ସଭ୍ୟ ଜଗତକୁ ବିମୋହିତ ଓ ଆକର୍ଷିତ କରୁଛନ୍ତି ଅଦ୍ୟାବଧି ।

ଏଣୁ ତନ୍ତ ଶିଳ୍ପର ବୈଚିତ୍ର୍ୟ ପ୍ରତି ଆକର୍ଷିତ ହୁଅନ୍ତି କଳା ପ୍ରେମୀ କୃତାର୍ଥ ମାଷ୍ଟ୍ରେ । ମାଷ୍ଟ୍ରର ବା ଶିକ୍ଷକର ଦୃଷ୍ଟିଭଙ୍ଗୀ ସୁଦୂର ପ୍ରସାରୀ । ସେ ଦାର୍ଶନିକ ଗୁଣାନୁରାଗୀ, ଭାବ ଗ୍ରାହୀ । ମାଷ୍ଟ୍ରେ କହିଲେ, ବରପାଲି, ବରଗଡ଼ ଅଞ୍ଚଳରେ କୃତାର୍ଥବାବୁଙ୍କୁ ଲୋକେ ବୁଝୁଥିଲେ । ପଣ୍ଡିତେ କହିଲେ, 'ରାଘବ ମିଶ୍ରଙ୍କୁ ବୁଝୁଥିଲେ । ସୁପରିଚିତ ପରିଚୟ । ମାତ୍ର ଛାତ୍ରକୁ ଶିକ୍ଷା ଦେଇନିଜ ଗୁଜରାଣ ମେଣ୍ଟାଇବା କେବଳ କୃତାର୍ଥବାବୁଙ୍କର ଉଦ୍ଦେଶ୍ୟ ନଥିଲା, ସେ ଚାହୁଁଥିଲେ ବରପାଲିର ତନ୍ତଶାଳାର ଯେଉଁ କଳା ରହିଛି, ତା'ର ବ୍ୟାପକ ପ୍ରଚାର ଓ ପ୍ରସାର । ସେ କବି ଗଙ୍ଗାଧରଙ୍କୁ ଦେଖିଛନ୍ତି । ତାଙ୍କ କୃତି, କୃତିତ୍ୱରେ ମୁଗ୍ଧ ହୋଇଛନ୍ତି ।

ମେହେର କବି, କବିତା ସହ ଶାଢ଼ୀରେ ମଧ୍ୟ ଫୁଲ ଫୁଟାଉଥିଲେ । ଏଣୁ ମାଷ୍ଟରଙ୍କ ମନରେ କଳାର ବିକାଶ ପ୍ରତି ପ୍ରବଳ ବାସନା ଜାଗ୍ରତ ହୋଇଛି । ସେ ତନ୍ତୀ କୁଳକୁ ଏକତ୍ରିତ କଲେ । କର୍ମ–ଜ୍ଞାନର ଗଙ୍ଗାଯମୁନା ସଂଗମ ପାଇଁ ପ୍ରୟାସ କଲେ ।

"ଏମନ ଭାବିଥାଏ ଯାହା
କାଳେ ପ୍ରାପତ ହୁଏ ତାହା ।"

(ଭାଗବତ)

ଯିଏ ସୁପୁରୁଷ, ଚିନ୍ତାଶୀଳ, ଦୂର ଦୃଷ୍ଟିସମ୍ପନ୍ନ ବ୍ୟକ୍ତି, ତା'ର ଗଭୀର ମନନ,ଅଧ୍ୟୟନ ବୃଥା ହୁଏ ନାହିଁ । କବି ଭୀମ ଭୋଇଙ୍କ ଭାଷାରେ "ତୋଳେ ଦେଖ ଯେ, ଡାଳଛାଡ଼ି ଧର ମୂଳ ବୃକ୍ଷ ଯେ ।" ଏଣୁ ସେ ତନ୍ତୀ ସମ୍ପ୍ରଦାୟଙ୍କର କଳା କୃତି ପ୍ରତି ମୁଗ୍ଧ ହୋଇ ମୂଳ କାର୍ଯ୍ୟକୁ ସଙ୍ଗଠିତ କଲେ ଏବଂ ବରଗଡ଼ରେ, "ସମ୍ବଲପୁରୀ ବସ୍ତ୍ରାଳୟ ସଂସ୍ଥା" ପ୍ରତିଷ୍ଠା କରି ଗରିବ ତନ୍ତୀମାନଙ୍କର ପୃଷ୍ଠପୋଷକତା କଲେ । "ଦୁଃଖ କଲେ ସିନା ସୁଖ ଭୋଗ ଅଛି, ଦୟାରୁ ଧରମ ଉଦେ ।" (ଭୀମ ଭୋଇ) ଭାବରେ ସେ ଅନୁପ୍ରାଣିତ ହେଲାପରି ବୋଧହୁଏ । ପ୍ରଥମେ "କଷ୍ଟତାପର" ଭୋଗ ଏବଂ ଦୟାରୁ ଧର୍ମ ଅର୍ଜନ । ତାହାହିଁ କର୍ମଯୋଗୀ କୃତାର୍ଥବାବୁଙ୍କ ଜୀବନରେ ଘଟିଲା । ପଣ୍ଡିତଜୀ ତାଙ୍କୁ କହିଲେ, "ଆପଣ ଜଣେ ସାଧୁ ବ୍ୟବସାୟୀ ହେବେ, ନାମ ରଖିବେ" ତାହା ସତ ହେଲା । ସମଗ୍ର ଦେଶରେ ନାମ ରଖିଲେଏବଂ ବିଭିନ୍ନ ରଙ୍ଗରେ ରଙ୍ଗୀନ ଶାଢ଼ୀରେ ବାନ୍ଧ ପ୍ରସ୍ତୁତ କରିବାକୁ ସମସ୍ତଙ୍କୁ ଉତ୍ସାହିତ କଲେ । କଳାକାର, ବୁଣାକାରମାନେ ମଧ୍ୟ ଅର୍ଥର ଅନାଟନ ଭୁଲି ମନନିବେଶ କଲେ । ଗଢ଼ି ଉଠିଲା ସହଯୋଗ ସମିତି । ନାନା ରଙ୍ଗରେ, ନାନା ଚିତ୍ର ବୈଚିତ୍ର୍ୟ ସହିତ ବୁଣାଗଲା ଶାଢ଼ୀ । ଆକର୍ଷିତ ହେଲା ଜନ–ମନ । ନାରୀର କୋମଳ ସୌନ୍ଦର୍ଯ୍ୟବୋଧ ପ୍ରଲୋଭିତ ହେଲା । ନୂତନ ଶାଢ଼ୀ, ଅଭିନବ ଛଟାରେ ଆତ୍ମ ପ୍ରକାଶ କଲା । ରସସିକ୍ତ, ଭାବଗର୍ଭକ କବିତା ପାଠକ ମଗ୍ନ ହୋଇ ଅମୃତପାନ କଲାପରି କୃତାର୍ଥ ଆଗ୍ରହୀଙ୍କର ଉଦ୍ୟମରେ ନବ ଉନ୍ମାଦନା – ନବୀନ ଉତ୍ସାହରେ କଳା – କୌଶଳ ଯୁକ୍ତ ରଙ୍ଗୀନ ଶାଢ଼ୀର ରୂପ ମାଧୁରୀ ପ୍ରତି ଦେଶ ବିଦେଶରେ ମାଁ, ବୋହୂ, ଝିଅଙ୍କର ଦୃଷ୍ଟି ଆକର୍ଷିତ ହେଲା । ଫଳରେ ଉକ୍ତ ଶାଢ଼ୀ, ପରଦା, ଗାମୁଛା ଅନ୍ୟ ଦେଶ ଓ ରାଜ୍ୟକୁ ରପ୍ତାନୀ ହେଲା । ବରପାଲି, ସୋନପୁର, ବଲାଙ୍ଗୀର ତଥା ସମ୍ବଲପୁର ଅଞ୍ଚଳରେ ରହିଥିବା ତନ୍ତୀମାନଙ୍କର କୋଣାର୍କ ଶିଳାର ଜୀବନ୍ତ ପଥର ମୂର୍ତ୍ତି ଭଳି ପଶ୍ଚିମ ଓଡ଼ିଶାର ତନ୍ତ ଶିଳ୍ପର ନୈପୁଣ୍ୟ ବିଶ୍ୱର ସଭ୍ୟ ଜଗତରେ ଏହି କଳାର ବୈଶିଷ୍ଟ୍ୟ ପାଇଁ ପ୍ରଶଂସିତ ହେଲା । ବରପାଲି ତଥା ପଶ୍ଚିମାଞ୍ଚଳର ଭୁଲିଆ, କୁଷ୍ଟାଜାତି ମଧ୍ୟ ଦେଶ ବିଦେଶରେ ଆଦରଣୀୟ ହେଲେ । ଏହି ଗୌରବ ଅନ୍ତରାଳରେ ଥିଲେ କଳା ପ୍ରେମୀ କୃତାର୍ଥବାବୁ । ତାଙ୍କର ନିରଳସ କର୍ମ ପ୍ରେରଣା ଓ ଅବଦାନ ଏକ ଯୁଗାନ୍ତକାରୀ ରୂପ ନେଲା ।

ସ୍ରଷ୍ଟା ସୃଷ୍ଟି କରେ ସତ ! ତା'ର ପାଳନ କରିବା ହେଉଛି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । କବି ବହୁ କବିତା ସଙ୍ଗୀତ ସୃଷ୍ଟି କରେ – ମାତ୍ର କବିର ଗୌରବ ପ୍ରକାଶ ପାଏ ଗାୟକର କଣ୍ଠରେ । ଯେପରି ବସନ୍ତର ଗୌରବ ଜଣାଯାଏ କୋକିଳର ପଞ୍ଚମ ତାନରେ, ସେପରି ବହୁ ବିଚିତ୍ର ବସନ୍ତ ସମକୁଳୋଦ୍ଭବ ତନ୍ତୀମାନଙ୍କର ଏକ ମାତ୍ର

ଜନପ୍ରିୟ କୋକିଳ ହେଲେ କୃତାର୍ଥବାବୁ । ସମସ୍ତ ତନ୍ତୀ ଜାତିକୁ କୃତାର୍ଥ କରିବାରେ ସମର୍ଥ ହୋଇ ନିଜ ଜନ୍ମ ନାମକୁ ସେ ସାର୍ଥକ କଲେ । ଏହି ଦୀର୍ଘ ସାଧନା ତଥା ତନ୍ତୀ ଜାତି ଓ ତନ୍ତ କଳାର ବିକାଶ ପାଇଁ ସେ ଭାରତ ସରକାରଙ୍କ ଦ୍ୱାରା ପଦ୍ମଶ୍ରୀ ଉପାଧିରେ ଭୂଷିତ ହେଲେ । ଜାତୀୟ ସମ୍ମାନ ପାଇ ନିଜେ ମର୍ଯ୍ୟାଦାର ସହିତ ବଞ୍ଚିଲେ; ଗୋଟିଏ ଜାତିକୁ ମଧ୍ୟ ସମ୍ମାନର ସହିତ ବଞ୍ଚିବାର ସୁଯୋଗ ଦେଲେ । ଏହାହିଁ ବ୍ୟକ୍ତିର ମହାନତା । ପଦ୍ମଶ୍ରୀ ଉପାଧିରେ ବିଭୂଷିତ ହେବା ପରେ ତାଙ୍କର ଯଶ ଦିଗ ଦିଗନ୍ତର ବିଚ୍ଛୁରିତ ହେଲା । ସେ ହେଲେ ଚର୍ଚ୍ଚାର ବ୍ୟକ୍ତି । ମୋର ତାଙ୍କ ସହ ବ୍ୟକ୍ତିଗତ ସମ୍ପର୍କଥିଲା । ମୁଁ ତାଙ୍କର ପୁତ୍ର ତୁଲ୍ୟ । ବରପାଲି ହାଇସ୍କୁଲର ଛାତ୍ର ଥିବା ଦିନରୁ ତାଙ୍କୁ ଚିହ୍ନେ । ତାଙ୍କର କଥାବାର୍ତ୍ତା ଭାବଭଙ୍ଗୀରେ ଆକର୍ଷଣୀୟତା ଥାଏ । ସହଜରେ ଟାଣି ନିଅନ୍ତି । ସେ ମୋର ସାହିତ୍ୟ ଭାଷା ପ୍ରତି କ୍ରମେ ଆକୃଷ୍ଟ ହୁଅନ୍ତି । ଗୁଣୀ ଗୁଣ ଚିହ୍ନେ । ଚିହ୍ନଗା ଗ୍ରାହକ ସେ । ମଝିରେ ମଝିରେ ବରପାଲିରେ ଦେଖା ହୁଏ । ଗୋଲାପ ପରି ଦେହର ରଙ୍ଗ । ସୁନ୍ଦର ମଣିଷ । ମୋଟା ନୁହନ୍ତି କି ବେଶି ପତଳା ନୁହନ୍ତି । ଶାନ୍ତ – ସ୍ନିଗ୍ଧ କମନୀୟ କାନ୍ତି । ସାଧାରଣ ବେଶ ଭୂଷା, ନିରାଡ଼ମ୍ବର । ଅଭିମାନ ନାହିଁ । ଈର୍ଷା ନା ଅହଙ୍କାର । ଗଙ୍ଗାଜଳ ପରି ପବିତ୍ର ମଣିଷ । ପ୍ରଫୁଲ୍ଲିତ ମନ । ହସରେ ମୁହୁ ତରଙ୍ଗ ।

ତାଙ୍କର ଚେହେରାରେ ସ୍ୱାଭିମାନ ଛିଟିକି ପଡୁଥାଏ । ଧୀର ଚାଲି । ଧୀର କଥା । ତାଙ୍କୁ ଦେଖିଲେ ମନ ଆନନ୍ଦରେ ଭରି ଯାଉଥାଏ । ବରପାଲିର ପରିଚୟ ହେଲା କଲେଜ ଜୀବନରେ ନିବିଡ଼ତା । ୧୯୬୩ରେ ମୁଁ ଥାଏ ଗଙ୍ଗାଧର ମେହେର କଲେଜର ଛାତ୍ର । ସମ୍ବଲପୁର କେବେ ଛାଡ଼ିଲେ ବରଗଡ଼ରେ ଓହ୍ଲାଏ । ତାଙ୍କୁ ଭେଟେ ଦିନର ଦ୍ୱିପ୍ରହରରେ । ବିଶ୍ରାମ ସମୟ ହୋଇଥିଲେ ମଧ୍ୟ ମୋର ଆସିବାର ଜାଣି ଉଠିଆସନ୍ତି । ଏଇତ ତାଙ୍କର ମୋର ଅପତ୍ୟ ସ୍ନେହ ଆଉ ଶ୍ରଦ୍ଧାର ପ୍ରତୀକ ଅଧଘଣ୍ଟାଏ ସାହିତ୍ୟ – ସଂସ୍କୃତି ଶିକ୍ଷା ନେଇ ଗପ କରନ୍ତି । ସାହିତ୍ୟ ସଭା ସମିତି ଆୟୋଜନ କଲେ ବିନା ଦ୍ୱିଧାରେ କିଛି ଟଙ୍କା ଯାଚିକରି ଦିଅନ୍ତି । ପତ୍ରିକା ପ୍ରକାଶ ପାଇଁ ଯେତେଥର ଯାଇଛୁ କିଛିନା କିଛି ବିଜ୍ଞାପନ ଦେଇ ପୃଷ୍ଠପୋଷକତା କରିଛନ୍ତି । ଧନ୍ୟ ତାଙ୍କର ଉଦାରତା । ସେପରି ପୃଷ୍ଠପୋଷକ ଏବେ କାହାନ୍ତି ? ନିଃସ୍ୱାର୍ଥପର ଭାବରେ, ମୁକ୍ତ ହସ୍ତରେ ସେ ଦାନ କରୁଥିଲେ । କହୁଥିଲେ, ସାହିତ୍ୟ – ଶିକ୍ଷା – କଳାକୁ ପୃଷ୍ଠପୋଷକତା ଅନୁକୂଳ ଚିତ୍ତରେ ନ କଲେ ଏହି ରାଜ୍ୟର ସଂସ୍କୃତି ଉତ୍ପନ୍ନ ହେବ ?" ଏ ଥିଲା ଆଶ୍ଚର୍ଯ୍ୟ କୃତାର୍ଥବାବୁଙ୍କର ଉକ୍ତି । ବାହୁ ପ୍ରସାରି ସମସ୍ତଙ୍କୁ ଆଦରି ନେବା ଗୁଣରେ ପାରଙ୍ଗମ ଥିଲେ ସେ । ଏପରି ଅନେକ ଥର ତାଙ୍କୁ ଭେଟିଛି' ଏବଂ ଗୋଟାଏ ପାରିଜାତ ଫୁଲର ମହକ ଅନୁଭବ କରିଛି । ଜଣଙ୍କଠୁ କିଛି ନ ପାଇଲେ ମଧ୍ୟ ତାଙ୍କୁ ଦେଖିବାକୁ ତାଙ୍କ ସହିତ ମିଶିବାକୁ ତାଙ୍କଠାରୁ ଦି'ପଦ ଶୁଣିବାକୁ ଲୋକ ଆ... ତାଙ୍କଠି ଥିଲା ଦେବତ୍ୱର ଲକ୍ଷଣ । ତାଙ୍କ ଯୋଗୁଁ କେବଳ ବରପାଲି ନୁହେଁ ସମଗ୍ର ରାଜ୍ୟ ଗୌରବବାନ୍ୱିତ । ସେ ଥିଲେ ମା' ... ମର୍ଯ୍ୟାଦାବନ୍ତ ପୁରୁଷ । ଦେବତୁଲ୍ୟ ମଣିଷ । ସ୍ୱର୍ଗତ ... ପଣ୍ଡିତ ରାଘବ ମିଶ୍ରଙ୍କ ସହିତ ତାଙ୍କର ମହନୀୟ ଗୁଣ, ... ଶିକ୍ଷା, କଳାପ୍ରୀତି ଆଲୋଚିତ ହେଉଥିଲା । ସତକୁ ସତ ... ତ୍ୟାଗର ଆଦର୍ଶ ନେଇ ଗଢ଼ି ହୋଇଛି ଅନେକ ସ୍କୁଲ କଲେଜ ... ସାଂସ୍କୃତିକ ଅନୁଷ୍ଠାନ ।

'ଧନ ଅର୍ଜିଲେ ଧର୍ମ କରି,
ଧର୍ମେ ପ୍ରାପତେ ନର ହରି ।"

ତାଙ୍କର ଜୀବନର ଥିଲା ଆଦର୍ଶ । ତେବେ ବୁଦ୍ଧଦେବଙ୍କ ... ଉଡ଼ିଶା/ ସମ୍ବଲପୁର ମାଟିର ଅମର ସନ୍ତାନ ଆଶ୍ଚର୍ଯ୍ୟ ... ଦ୍ୱାରା ଲିଖିତ 'ଜ୍ଞାନ ସିଦ୍ଧି'ର ବାଣୀ ଆମ ପ୍ରିୟ କୃତାର୍ଥ ... ଜୀବନ ଦର୍ଶନ ପ୍ରତି ଯଥାର୍ଥ ହେବ ନାହିଁ କି ? ତାହା ... ସ୍ୱର୍ଗତଃ ଅମର ଆତ୍ମା ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି !

ଯଥା :–

ସର୍ବୈଜ୍ଞୋ ବର ଦୋବାଦୀ ବର୍ଣ୍ଣ ସଂସ୍ଥାନ
ଏକ ବିନା ।
ଗତା ଗତିର୍ବିନି – ମୁକ୍ତେ ଆଶ୍ଚଲ୍ୟଃ
ସର୍ବ ବାନ୍ଧୁଭିାଧକ

"ସର୍ବଙ୍କ ବୁଦ୍ଧ ଜାତି ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ମଙ୍ଗ... କାମନା କରନ୍ତି । ତାଙ୍କଠାରେ ବ୍ୟକ୍ତିଗତ ବିଭେଦ ... ବୌଦ୍ଧଭାବନାରେ ଜୀବ ଜଗତରେ ସମସ୍ତେ ସମାନ ସୁଖ ସୁବିଧାର ଅଧିକାରୀ । ବାୟୁ ଘାତରେ ଅଚଳ ଓ ଗତାଗତି ... ଅବିଚଳିତ ମହାମେରୁ ପରି ସେ ଧୀରସ୍ଥିର ଓ ... ଆଶ୍ଚର୍ଯ୍ୟ ମହାଶୟ ବୁଦ୍ଧଦେବଙ୍କର ଆଦର୍ଶରେ ମଧ୍ୟ ... ନଥିଲେ କି ? ମହାନ ବ୍ୟକ୍ତିଙ୍କଠାରେ ସାନ ବଡ଼ ଭେଦଭାବ ବିଚାର ନଥାଏ । ସେ ନିଜ ଗୁଣରେ ଅନ୍ୟଙ୍କୁ ମଧ୍ୟ ଗୁଣୀ କରନ୍ତି । ଠିକ୍ ସେପରି ବ୍ୟକ୍ତି ଥିଲେ କୃତାର୍ଥବାବୁ । ସେ ଜାତି ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଭଲ ପାଉଥିଲେ । ମାନବୀୟ ଗୁଣରେ ସେ ଥିଲେ ବିଭୂଷିତ ।

କୁଳୀନ ବ୍ରାହ୍ମଣ କୁଳରେ ଜନ୍ମ ହୋଇ ଜାତିର ଆଶ୍ଚର୍ଯ୍ୟ ... କାର୍ଯ୍ୟରେ ଔଦାର୍ଯ୍ୟ ପ୍ରକାଶ କରିଛନ୍ତି ସେ । ଏଣୁ ଆଜି ସେ ... ଶ୍ରଦ୍ଧା ଓ ସମ୍ମାନର ପାତ୍ର ।

ପ୍ରଫେସର କଲୋନୀ,
ବୁଢ଼ାରଜା, ସମ୍ବଲପୁର ।

# ଓଡ଼ିଶା ଶିଳ୍ପ ବିକାଶ ନିଗମ : ଏକ ବୃହତ୍ ପ୍ରକଳ୍ପ

ଶ୍ରୀ କ୍ଷେତ୍ରମୋହନ ଦାଶ

ସ୍ୱାଧୀନତା ପରେ ପ୍ରଚୁର ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ଖଣିଜରେ ପୂର୍ବ ଉପକୂଳ ପ୍ରଦେଶ ଓଡ଼ିଶାରେ ଶିଳ୍ପର ବିକାଶ ପାଇଁ ଯେଉଁସବୁ ନିଗମମାନ ଗଢ଼ିଉଠିଅଛି, ସେଥିମଧ୍ୟରୁ ଓଡ଼ିଶା ଶିଳ୍ପ ବିକାଶନିଗମ (IDCOL) ଅନ୍ୟତମ । ଶିଳ୍ପ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିବା ସଙ୍ଗେ ସଙ୍ଗେ ନୂତନ ଦିଗ୍‌ଦର୍ଶନ ଦେଇ ଓଡ଼ିଶାର ଶିଳ୍ପକୁ ବିଶ୍ୱ ଦରବାରରେ ପ୍ରଗତି ପଥରେ ଆଗେଇନେବା ଏହି ନିଗମର ଲକ୍ଷ୍ୟ । ଏହି ନିଗମ ପ୍ରଥମେ ୧୯୬୨ ମସିହା ମାର୍ଚ୍ଚ ମାସରେ ଏକ ସାଧାରଣ କମ୍ପାନୀ ଭାବେ ରେଜେଷ୍ଟ୍ରିଭୁକ୍ତ ହୋଇଥିଲା । ବର୍ତ୍ତମାନ ୧୨ଟି ଶିଳ୍ପ ପ୍ରତିଷ୍ଠାନକୁ (ଦୁଇଟି ସହାୟକ ସଂସ୍ଥା ସହ) ଏହି ଶିଳ୍ପ ନିଗମ ପରିଚାଳନା କରୁଛି । ଏଠାରେ ପ୍ରାୟ ୬,୬୩୦ ବ୍ୟକ୍ତି ପ୍ରତ୍ୟକ୍ଷଭାବେ ଓ ୩,୦୦୦ ବ୍ୟକ୍ତି ଠିକାଦାରମାନଙ୍କ ଦ୍ୱାରା ପରୋକ୍ଷ ଭାବେ ନିଯୁକ୍ତି ପାଇଛନ୍ତି । ଏହାର ବାର୍ଷିକ କାରବାର ପ୍ରାୟ ୧୦୦ କୋଟି ଟଙ୍କା ।

## (୧) ହୀରାକୁଦ ଶିଳ୍ପ କାରଖାନା :

ହୀରାକୁଦ ନଦୀବନ୍ଧ ଯୋଜନାର ଏକ ବୃହତ୍ ଇଞ୍ଜିନିୟରିଂ କାରଖାନାକୁ ୧୯୬୨ ମସିହାରେ ଏହି ନିଗମ ନିଜ ହାତକୁ ନେଇ ସମ୍ବଲପୁର ଜିଲ୍ଲାର ହୀରାକୁଦଠାରେ "ହୀରାକୁଦ ଶିଳ୍ପ କାରଖାନା" ନାମରେ କାର୍ଯ୍ୟାରମ୍ଭ କରିଥିଲା । ଏହି କାରଖାନାକୁ ଆଧୁନିକୀକରଣ କରିବା ପାଇଁ ନିଗମ ନିଜର ଅର୍ଥ ବ୍ୟୟ କରିଥିଲା । ସେହି ବର୍ଷ ନଭେମ୍ବର ମାସଠାରୁ ଉଚ୍ଚଶକ୍ତି ସମ୍ପନ୍ନ ବିଦ୍ୟୁତ ତାର ବାନ୍ଧିବା ପାଇଁ ଆବଶ୍ୟକ ହେଉଥିବା ଟାୱାର ଓ ବିଦ୍ୟୁତ ସବ୍‌ଷ୍ଟେସନମାନଙ୍କରେ ବ୍ୟବହୃତ ହେଉଥିବା ଖୁଣ୍ଟି ତିଆରି ଆରମ୍ଭ ହେଲା । ପ୍ରଥମେ ଏହି କାରଖାନାରୁ ୬୬ କେ: ଭି: ଓ ୧୩୨ କେ: ଭି: ଏବଂ ୨୨୦ କେ: ଭି: ବିଦ୍ୟୁତ ସରବରାହ ଟାୱାରମାନ ତିଆରି ହେଉଥିଲା । ଉଚ୍ଚ ଶକ୍ତି ସମ୍ପନ୍ନ ବିଦ୍ୟୁତ ଶକ୍ତିର ପରିବହନ ପାଇଁ ଅଧିକ ଦକ୍ଷଯୁକ୍ତ ଟାୱାର ଖୁଣ୍ଟର ଆବଶ୍ୟକତା ମେଣ୍ଟାଇବା ପାଇଁ କାରଖାନାର ଶକ୍ତି ବୃଦ୍ଧି କରାଯାଇ ସେଠାରେ ୪୦୦ କେ: ଭି: ଶକ୍ତି ଯୁକ୍ତ ତାର ପରିବହନ ଖୁଣ୍ଟମାନ ତିଆରି ହେଉଅଛି । ବର୍ତ୍ତମାନ ଏହାର ବାର୍ଷିକ ଉତ୍ପାଦନ କ୍ଷମତା ୬,୦୦୦ ଟନ୍ । ଏହି କାର୍ଯ୍ୟର ସୂକ୍ଷ୍ମ ପରିକଳ୍ପନା ପାଇଁ ଡିଜିଟାଲ କମ୍ପ୍ୟୁଟରର ସାହାଯ୍ୟରେ ସ୍ୱୟଂଚାଳିତ ସ୍ପେସ୍ ଟ୍ରେସ୍ (Automated Space Tress) ବିଶ୍ଳେଷଣ ବ୍ୟବସ୍ଥା ସମ୍ପାଦନ କରାଯାଉଅଛି । ବାଙ୍ଗାଲୋରସ୍ଥିତ କେନ୍ଦ୍ରୀୟ ଶକ୍ତି ଗବେଷଣା ସଂସ୍ଥା (Central Power Research Institute) ଦ୍ୱାରା କାରଖାନାରୁ ଉତ୍ପନ୍ନ ସାମଗ୍ରୀ ଉନ୍ନତ ମାନର ବୋଲି ନିରୂପିତ ହୋଇଅଛି । କାରଖାନାରୁ ଉତ୍ପନ୍ନ ହେଉଥିବା ଟାୱାର ସରଞ୍ଜାମ ଓ ଖୁଣ୍ଟ ଅନ୍ୟାନ୍ୟ ରାଜ୍ୟର ବିଦ୍ୟୁତ ବୋର୍ଡ଼ ଓ ସାଧାରଣ ସଂସ୍ଥାମାନଙ୍କୁ ଯୋଗାଇ ଦିଆଯାଉଅଛି । ବର୍ତ୍ତମାନ ଏହି କାରଖାନାଦ୍ୱାରା ଲୌହ ଶିଳ୍ପ, ସାର କାରଖାନା, ଜଳସେଚନ ଓ ଶକ୍ତି ଉତ୍ପାଦନ ପ୍ରକଳ୍ପ ପାଇଁ ଆବଶ୍ୟକ ଡ଼ିଜାଇନ ଓ ନିର୍ମାଣ କାମ କରାଯାଉଅଛି । ଅଦ୍ୟାବଧି କାରଖାନାରେ ମୋଟ ୧ କୋଟି ୬୬ ଲକ୍ଷ ଟଙ୍କା ବିନିଯୋଗ କରାଯାଇଅଛି ଓ ୪୬୨ଜଣ ଲୋକଙ୍କୁ କର୍ମନିଯୁକ୍ତି ଦିଆଯାଇଅଛି । ୧୯୬୮ ମସିହା ଅଗଷ୍ଟ ମାସରେ ଏହାର ଆଉ ଏକ ଶାଖା ପ୍ରତିଷ୍ଠା କରାଯାଇ ଆବଶ୍ୟକ ସ୍ଥଳେ ବିଦ୍ୟୁତ ବୋର୍ଡ଼ମାନଙ୍କର ଟାୱାର ତିଆରି ଓ ତାର ଟଣା କାମ କରାଇ ଦିଆ ଯାଉଅଛି ।

## (୨) ହୀରା କେବଲ୍ କାରଖାନା :

୧୯୬୭ ମସିହା ନଭେମ୍ବର ମାସରେ "ହୀରା କେବଲ ୱାର୍କସ" ନାମରେ ଏକ କେବଲ୍ ତିଆରି କାରଖାନା ଓଡ଼ିଶା ଶିଳ୍ପ ବିକାଶ ନିଗମ ଉଦ୍ୟମରେ ୪ କୋଟି ୨୫ ଲକ୍ଷ ଟଙ୍କା ବ୍ୟୟରେ କାର୍ଯ୍ୟକାରୀ କରାଯାଇଅଛି । ଏହି କାରଖାନାର ବାର୍ଷିକ ଉତ୍ପାଦନ କ୍ଷମତା ୫,୦୦୦ ଟନ୍ ବିଦ୍ୟୁତ ପରିବାହୀ ଆଲୁମୁନିୟମ ଓ ୬୬୦ ମେଟ୍ରିକ ଟନ୍ ତମ୍ବା ମିଶ୍ରିତ ଆଲୁମୁନିୟମ ତାର । ଏହି କାରଖାନାର ବ୍ୟବସାୟିକ ଉତ୍ପାଦନ ୧୯୬୯ ମସିହାଠାରୁ ଆରମ୍ଭ ହୋଇଅଛି ।

ଭାରତୀୟ ବିଦ୍ୟୁତ ସରବରାହ ମାନଚିତ୍ରରେ ହୀରା କେବଲ ୱାର୍କସ୍‌ର ଦାନ ଉଲ୍ଲେଖନୀୟ । ଫରାସୀ ବୈଷୟିକ ସହାୟତା ଓ ସ୍ଥାନୀୟ ନିପୁଣ କର୍ମ କୁଶଳତା ହୀରା କେବଲର ଆନ୍ତର୍ଜାତୀୟ ମାନ ରକ୍ଷା କରି ପାରିଅଛି । ଏଠାରେ ତିଆରି ହେଉଥିବା କେବଲର କଞ୍ଚାମାଲ ଉତ୍ପାଦନଠାରୁ ଆରମ୍ଭ କରି ପଦାର୍ଥ ଉତ୍ପାଦନ ଶେଷ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଭାରତୀୟ, ବ୍ରିଟିଶ ତଥା ଆନ୍ତର୍ଜାତୀୟ ମାନ ନିର୍ଦ୍ଧାରଣ ପାଇଁ ଆବଶ୍ୟକ ହେଉଥିବା ସବୁପ୍ରକାରର ପରୀକ୍ଷା ନିରୀକ୍ଷାର ସୁବ୍ୟବସ୍ଥା ରହିଅଛି । ଉତ୍ପାଦିତ ସାମଗ୍ରୀକୁ ସର୍ବୋତ୍କୃଷ୍ଟ କରିବା ପାଇଁ କାରଖାନାର ପ୍ରତ୍ୟେକ ସ୍ତରରେ କୁଶଳୀ ଓ କର୍ମଠ ହସ୍ତର ପ୍ରଦର୍ଶନ କରାଯାଇଥାଏ । ବ୍ୟବହାରକାରୀର ବିଶ୍ୱାସ, ଆବଶ୍ୟକତା ଓ ଉତ୍ପାଦିତ ସାମଗ୍ରୀର ଦୀର୍ଘ ସ୍ଥାୟିତ୍ୱ ଉପରେ ଦିଆଯାଇଥିବା ଗୁରୁତ୍ୱ ଖାଉଟିଙ୍କୁ ହୀରା କେବଲ କିଣିବା ପାଇଁ ଉତ୍ସାହିତ କରିଥାଏ । ହୀରା କେବଲର ଉତ୍ପାଦିତ ସାମଗ୍ରୀ ଆଲିପୁରସ୍ଥିତ ଜାତୀୟ ପରୀକ୍ଷାଗାରର (National Test House) ସମସ୍ତ ପ୍ରକାର ଟିକିନିଖି ପରୀକ୍ଷାରେ କୃତିତ୍ୱ ଅର୍ଜନ କରିଅଛି । ଏହି କାରଖାନାରୁ ୫୦୦ କେ: ଭି: ବିଦ୍ୟୁତ ଶକ୍ତି ପରିବହନ କରିପାରୁଥିବା ଉଚ୍ଚମାନର ବିଦ୍ୟୁତ ପରିବାହୀ ତାର ତିଆରି ହୋଇ ପାରୁଅଛି ।

ହୀରା କେବଲ କାରଖାନା ଭାରତର ବିଭିନ୍ନ ବିଦ୍ୟୁତ୍ ବୋର୍ଡର କେବଲ୍ ଗୁଡ଼ିକ ନିର୍ଦ୍ଦିଷ୍ଟ ସମୟରେ ଆବଶ୍ୟକ ମୁତାବକ ଯୋଗାଇ ଦେଉଅଛି । ଏତଦ୍‌ଭିନ୍ନ ଥାଇଲାଣ୍ଡ ଓ ଫିଲିପାଇନସ୍ ଇତ୍ୟାଦି ବିଦେଶୀ ରାଷ୍ଟ୍ରକୁ କେବଲ ଯୋଗାଇ ଦେବାର କ୍ଷମତା ଅର୍ଜନ କରିଅଛି । ପରିବର୍ଦ୍ଧିତ ଯୋଜନା ଅନୁସାରେ ଏକ ପ୍ରୋପର୍ଜି ମିଲ୍ ଦ୍ୱାରା ଆଲୁମିନିୟମ ପିଣ୍ଡକୁ ରଡ୍‌ରେ ପରିଣତ କରାଯାଉଛି । ବାର୍ଷିକ ୬,୦୦୦ ମେଟ୍ରିକ ଟନ୍ ଆଲୁମିନିୟମ୍ ରଡ୍ ଉତ୍ପାଦନ କରି ପାରୁଥିବା ଏହି କାରଖାନାରୁ ୧୯୮୨ ମାର୍ଚ୍ଚ ମାସଠାରୁ ଉତ୍ପାଦନ କାର୍ଯ୍ୟ ଆରମ୍ଭ ହୋଇଅଛି । କାରଖାନାରେ ୨୪୯ ଜଣ ଲୋକ କର୍ମନିଯୁକ୍ତି ପାଇଛନ୍ତି ।

## (୩) ହୀରା ସିମେଣ୍ଟ କାରଖାନା :

୧୩ କୋଟି ୫୦ ଲକ୍ଷ ଟଙ୍କା ବ୍ୟୟରେ ହୀରା ସିମେଣ୍ଟ କାରଖାନା ୧୯୬୮ ମସିହା ଫେବ୍ରୁଆରୀ ମାସଠାରୁ ଉତ୍ପାଦନକ୍ଷମ ହୋଇପାରିଛି । ଏହାର ବାର୍ଷିକ ଉତ୍ପାଦନ ହୋଇପାରିଛି । ଏହାର ବାର୍ଷିକ ଉତ୍ପାଦନ କ୍ଷମତା ୩୯,୬,୦୦୦ ଟନ ପୋର୍ଟଲାଣ୍ଡ ସିମେଣ୍ଟ । ସମ୍ବଲପୁର ଜିଲ୍ଲାର ବରଗଡ଼ ଉପଖଣ୍ଡଠାରୁ ମାତ୍ର ୫ କି.ମି. ଦୂର ବରଦୋଲଠାରେ ଏହି କାରଖାନା ପ୍ରତିଷ୍ଠିତ । ଏହାର ଉତ୍ପାଦନ କ୍ଷମତା କାରଖାନାଦ୍ୱାରା ନିର୍ଦ୍ଧାରିତ ୧୦୦ ଶତାଂଶରୁ ଅଧିକ ଏବଂ ଏହି ଉତ୍ପାଦନ ପ୍ରକ୍ରିୟା ଗତ କେତେ ବର୍ଷ ଧରି ଅବ୍ୟାହତ ରହିଛି । କାରଖାନାରୁ ୪୫ କି.ମି. ଦୂରରେ ଥିବା ଦୁଙ୍ଗାରୀ ଚୂନପଥର ଖଣି କାରଖାନାର ନିଜସ୍ୱ ରେଲପଥ ଦ୍ୱାରା ସଂଯୁକ୍ତ ହୋଇଥିବାରୁ ଚୂନପଥର ସରବରାହରେ ଅଧିକ ସୁବିଧା ହୋଇପାରିଛି । ଏହି କାରଖାନାରେ ସାଧାରଣ ପୋର୍ଟଲେଣ୍ଡ୍ ସିମେଣ୍ଟ୍ ବ୍ୟତିତ ପୋର୍ଟଲେଣ୍ଡ ପ୍ରୋଜୋଲେନା ଓ PBFS ଇତ୍ୟାଦି ଭାରତୀୟ ମାନ ନିର୍ଦ୍ଧାରଣ ସଂସ୍ଥା ଦ୍ୱାରା ସ୍ୱୀକୃତି ପାଇଥିବା ସିମେଣ୍ଟ ଉତ୍ପାଦିତ ହେଉଛି ।

କାରଖାନାକୁ କେନ୍ଦ୍ର କରି ଗଢ଼ିଉଠିଥିବା ଜନବସତି ଅଞ୍ଚଳମାନଙ୍କରେ ଆଧୁନିକ ସହରର ସମସ୍ତ ପ୍ରକାର ସୁବିଧା ସୁଯୋଗ ରହିଛି । କାରଖାନା ଓ କଲୋନୀର ସବୁ ପ୍ରକାରର ବିଦ୍ୟୁତ ସଂଯୋଗ ପରିକଳ୍ପନା ଏବଂ ସଂଯୋଜନା ଏହି ନିଗମର କର୍ମଚାରୀମାନଙ୍କ ଦ୍ୱାରା ସମ୍ପାଦିତ ହୋଇଛି । କାରଖାନାରେ ଆବଶ୍ୟକ ଜଳ ଯୋଗାଣ, ବିଶୁଦ୍ଧ ଓ ଛଣା ହୋଇଥିବା ପାନୀୟ ଜଳ, ଯୋଗାଣ ଓ ସେଥିପାଇଁ ଆବଶ୍ୟକ ହେଉଥିବା ପାଣି ନଳସଂଯୋଗ ଇତ୍ୟାଦି ସମସ୍ତ କାମ ନିଗମର କର୍ମଚାରୀମାନଙ୍କ ଦ୍ୱାରା ସମାହିତ ହୋଇଛି । ସମସ୍ତ ପ୍ରକାର M.G. ଓ N.G. ଦ୍ରାଗନ ପଏଣ୍ଟ୍ ଓ ସ୍ୱିଂ ବ୍ରିଜ ଗାର୍ଡର ଓ ଆନୁଷଙ୍ଗିକ ଉପକରଣମାନ କାରଖାନାର ନିଜସ୍ୱ ସମ୍ବଳ ଓ ଜନସହାୟତାରେ ପ୍ରସ୍ତୁତ କରାଯାଇଛି । ଦୈନିକ ୧୨,୦୦୦ ଟନ୍ ପୋର୍ଟଲେଣ୍ଡ୍ ସିମେଣ୍ଟ ଉତ୍ପାଦନ କରିପାରିଥିବା ଏହି କାରଖାନା ଅଳ୍ପ ଦିନ ଭିତରେ ଉତ୍କର୍ଷତା ଯୋଗୁଁ ନିଜର ସମ୍ମାନ ବୃଦ୍ଧି କରିପାରିଛି । ଏଠାରୁ ଉତ୍ପାଦିତ ହେଉଥିବା ସିମେଣ୍ଟ ଗୁଡ଼ିକ ନିଜରାଜ୍ୟ ବ୍ୟତୀତ ପଶ୍ଚିମବଙ୍ଗ, ଆସାମ, ମଣିପୁର, ତ୍ରିପୁରା, ନେଫା, ନାଗାଲାଣ୍ଡ, ବିହାରର କେତେକ ଅଞ୍ଚଳ ତଥା ମଧ୍ୟପ୍ରଦେଶରେ ବୃଦ୍ଧି ପାଇଛି । ବାଲିମେଳା, ଫାରାକ୍କା, ବକାରୋଷ୍ଟିଲ ଇସ୍ପାତ କାରଖାନା ଇତ୍ୟାଦି ଜାତୀୟ ପ୍ରକଳ୍ପ ତଥା ପ୍ରତିରକ୍ଷା ବିଭାଗର ଆବଶ୍ୟକ ସିମେଣ୍ଟ ହୀରା ସିମେଣ୍ଟ କାରଖାନା ଯୋଗାଇ ଦେଉଛି । ଏତଦ୍‌ବ୍ୟତୀ ମୁଖ୍ୟ ଜଳସେଚନ ପ୍ରକଳ୍ପ ଓ ଶକ୍ତି ଉତ୍ପାଦନ ପ୍ରକଳ୍ପ ପା ଆବଶ୍ୟକ ହେଉଥିବା ସିମେଣ୍ଟ ଏହି କାରଖାନାରୁ ଯୋଗା ଦିଆଯାଉଛି । କାରଖାନାର ଉତ୍ପାଦନ ଶକ୍ତି ବୃଦ୍ଧି ଆବଶ୍ୟକତା ଉପଲବ୍ଧି ହେବାରୁ ପରବର୍ତ୍ତୀ ପର୍ଯ୍ୟାୟରେ କୋଟି ୬୦ ଲକ୍ଷ ଟଙ୍କା ବ୍ୟୟରେ ବାର୍ଷିକ ୧,୬୯,୦୦୦ ମେଟ୍ରି ଟନ୍ ସିମେଣ୍ଟ ଉତ୍ପାଦନ କରାଯାଇପାରୁଛି । ଏହି ପରିବର୍ଦ୍ଧି କାରଖାନାରୁ ୧୯୮୫ ମସିହା ନଭେମ୍ବର ମାସଠାରୁ ଉତ୍ପାଦ ଆରମ୍ଭ ହୋଇଛି । ଏହି ପ୍ରକଳ୍ପରେ ୦୧୬ ଜଣ ବ୍ୟକ୍ତି ପ୍ରତ୍ୟ ନିଯୁକ୍ତି ପାଇଛନ୍ତି ।

## (୪) କଳିଙ୍ଗ ଲୌହ ଶିଳ୍ପ :

ଓଡ଼ିଶା ଶିଳ୍ପ ବିକାଶ ନିଗମ ଆନୁକୂଲ୍ୟରେ ୧୯୬୩ ମସି ଅପ୍ରେଲ ମାସରେ ଓଡ଼ିଶାର ଏକ ଆଦିବାସୀ ଅଧ୍ୟୁଷିତ ଜି କେନ୍ଦୁଝରରୁ ମାଟିକାମ୍ବଡ଼ାରେ କଳିଙ୍ଗ ଲୌହ ଶିଳ୍ପ ପ୍ରତି କରାଯାଇଛି । ଏହା ଦକ୍ଷିଣ ପୂର୍ବ ରେଲପଥର ବଡ଼ବିଲ୍ ରେଳ ଷ୍ଟେସନର ନିକଟବର୍ତ୍ତୀ ସ୍ଥାନ । ତତ୍କାଳୀନ ପଶ୍ଚିମ ଜର୍ମାନ ଫ୍ରେଡ୍‌କ୍ରୁପ୍ କମ୍ପାନୀର ପରିଚାଳନାଗତ ସହାୟତାରେ ଏହି ପ୍ରକଳ୍ପ ପ୍ରତିଷ୍ଠିତ ହୋଇଥିଲା । ସେତେବେଳେ ଏହାର ବାର୍ଷିକ ଉତ୍ପାଦ କ୍ଷମତା ମାତ୍ର ୩୦,୦୦୦ ମେଟ୍ରିକ ଟନ୍ ମୁଣ୍ଡା ଲୁହା ଥିଲା । ଏହାରଆଧୁନିକୀକରଣକରାଯାଇ ଓ ଅଧିକ ଦୁଇଟି ଲୁହା ଗଳା ଚୁଲା ନିର୍ମାଣ କରାଯାଇ ଏହାର ଉତ୍ପାଦନ କ୍ଷମତାକୁ ବାର୍ଷିକ ୩୦ ହଜାର ମେଟ୍ରିକ ଟନ୍‌ରୁ ୧ ଲକ୍ଷ ମେଟ୍ରିକଟନ୍‌କୁ ବୃଦ୍ଧି କରାଯାଇଛି । କାରଖାନାର ଉତ୍ପାଦନ କ୍ଷମତା ବୃଦ୍ଧି ପାଇଁ ୮ ମେଗାୱାଟ୍ ବିଜୁଳି ଶକ୍ତି ରଖାଯାଇ ପାରୁଥିବା ବିଦ୍ୟୁତ ଉତ୍ପାଦ କେନ୍ଦ୍ର ନିଗମ ତରଫରୁ ତିଆରି କରାଯାଇ ପାରୁଛି । ପୁନଃ ପୁ ବିଶୋଧନ ପ୍ରକ୍ରିୟାରେ ଉନ୍ନତ ମାନର ମୁଣ୍ଡା ଲୁହା ଉତ୍ପାଦ କରାଯାଇ ଶିଳ୍ପ ସଂସ୍ଥାମାନଙ୍କୁ ଯୋଗାଇ ଦିଆଯାଉଛି । ଏଥିପାଇଁ ଉନ୍ନତ କଞ୍ଚାମାଲ ନିରୂପଣ କରାଯାଉଛି ଓ ପୂର୍ବ ନିର୍ଦ୍ଧା ବିଶ୍ଳେଷଣ ପଦ୍ଧତି ଉପରେ ଗୁରୁତ୍ୱ ଦିଆଯାଉଛି । ଏହି ପ୍ରକଳ୍ପ ପ୍ରତିଷ୍ଠା ଓ କାର୍ଯ୍ୟକାରିତା ପାଇଁ ୧୦ କୋଟି ଟଙ୍କା ଖର୍ଚ୍ଚ ହୋଇଛି ମୋଟ ୯୨୩ ଜଣଙ୍କୁ ପ୍ରତ୍ୟକ୍ଷ ନିଯୁକ୍ତ ଦିଆଯାଇଛି ।

ଲୁହାକୁ ତରଳାଇବା ପାଇଁ ଆବଶ୍ୟକ ହେଉଥିବା ଫେରୋସିଲିକନ୍ ଅଧିକ ମୂଲ୍ୟବାନ ହୋଇଥିବାରୁ ଏଠାରୁ ଉତ୍ପାଦିତ ହେଉଥିବା ପ୍ରଥମ ଶ୍ରେଣୀ ମୁଣ୍ଡା ଲୁହାରେ ସିଲିକନ୍ ଭାଗ ଶତକଡ଼ା ୨.୭୫ରୁ ଶତକଡ଼ା ୩.୨୫ ଭାଗ ଓ ସ୍ୱତନ୍ତ୍ର ଶ୍ରେଣୀ ମୁଣ୍ଡା ଲୁହାରେ ଶତକଡ଼ା ୩.୨୫ରୁ ଅଧିକ ରଖାଯାଉଛି । ସେଥିରୁ ଏହି ଲୁହା ତରଳାଇ ଯନ୍ତ୍ରପାତି ତିଆରି କରିବାରେ ଅପେକ୍ଷାକୃତ କମ ଖର୍ଚ୍ଚ ହୋଇଥାଏ । ଉତ୍ପାଦିତ କଳକବ୍‌ଜାକୁ ଦୀର୍ଘସ୍ଥାୟୀ କରିବାପାଇଁ ଏହି ମୁଣ୍ଡା ଲୁହାରେ ସଲଫର ଭାଗକୁ ଶତକଡ଼ା ୦.୦୫ରୁ କମ୍ ରଖାଯାଇଥାଏ । ଏଠାରୁ ଉତ୍ପାଦିତ ଲୌହ ପିଣ୍ଡ ଉନ୍ନତ ମାନର ହୋଇଥିବାରୁ ତାହା ଜାପାନ, ୟୁଗୋସ୍ଲାଭିଆ, ଇରାନ୍ ରୁମାନିଆ, ଉଭୟ ଉତ୍ତର ଓ ଦକ୍ଷିଣ କୋରିଆ, ଇରାନ୍ ଓ ବାଙ୍ଗ୍ଲାଦେଶକୁ ରପ୍ତାନୀକରାଯାଇ ୧୨ କୋଟି ଟଙ୍କାର ବୈଦେଶିକ

... ମୁଦ୍ରା ଅର୍ଜନ କରାଯାଇପାରିଛି । ଏହି କାରଖାନାର ଉତ୍ପାଦିତ ... ୧୯୭୫ ମସିହାରେ ପ୍ରଥମେ ଓଡ଼ିଶାର ପାରାଦୀପ ବନ୍ଦରରୁ ଯୁଗୋସ୍ଲାଭିଆକୁ ରପ୍ତାନୀ କରାଯାଇଥିଲା । ୧୯୮୫-୮୬ ଓ ୧୯୮୬-୮୭ ବର୍ଷମାନଙ୍କରେ ଏହାର ଉତ୍ପାଦନ କ୍ଷମତା ଓ ବିକ୍ରୟ ୧୦୦ ଶତାଂଶରୁ ଅଧିକ ହୋଇଥିଲା ।

### (୫) ବଏଲର୍ ପାଇପ୍ ଓ ସହାୟକ କାର୍ଯ୍ୟ :

୧୯୮୩ ମସିହା ଅପ୍ରେଲ୍ ମାସଠାରୁ ଭୁବନେଶ୍ୱର ନିକଟସ୍ଥ ... ଶିଳ୍ପାଞ୍ଚଳଠାରେ ୩ କୋଟି ୨୦ ଲକ୍ଷ ଟଙ୍କା ବ୍ୟୟରେ ଏହି କାରଖାନା ପ୍ରତିଷ୍ଠିତ ହୋଇ ଉତ୍ପାଦନକ୍ଷମ ହୋଇଛି । ଏହି କାରଖାନାରୁ ବାର୍ଷିକ ୨,୫୦୦ ମେଟ୍ରିକ ଟନ୍ ବିଭିନ୍ନ ବ୍ୟାସ ବିଶିଷ୍ଟ ଷ୍ଟେନଲେସଷ୍ଟିଲ ଓ ଟିଟାନିୟମ୍ ମିଶ୍ରିତ ପାଇପ୍ ଉତ୍ପାଦନ କରାଯାଉଛି । ବିଜୁଳିଶକ୍ତି ଉତ୍ପାଦନ ପାଇଁ ଆବଶ୍ୟକ ହେଉଥିବା ଉଚ୍ଚ କ୍ଷମତାଯୁକ୍ତ ପାଇପ୍ ଲାଇନ୍, ସାର କାରଖାନାରେ ବ୍ୟବହୃତ ହେଉଥିବା ପାଇପ୍ ଲାଇନ ଓ ତୈଳ କାରଖାନାରେ ବ୍ୟବହୃତ ହେଉଥିବା ପାଇପଲାଇନ୍‌ର ଆବଶ୍ୟକତା ଏହି କାରଖାନା ପୂରାଇଥାଏ । ଏଠାରୁ ଉତ୍ପନ୍ନ ହେଉଥିବା ମୁଖ୍ୟଭାଗ ସାମଗ୍ରୀ ଭାରତ ଭାରି ବିଦ୍ୟୁତ୍ ଶିଳ୍ପ ସଂସ୍ଥାଦ୍ୱାରା କ୍ରୟ କରାଯାଇଥାଏ । ଏହି ଭାରତ ଭାରି ବିଦ୍ୟୁତ୍ ଶିଳ୍ପ ସଂସ୍ଥା ବଏଲର ପାଇପ ସଂସ୍ଥାକୁ ଯଥେଷ୍ଟ ବୈଷୟିକ ସାହାଯ୍ୟ ଯୋଗାଇ ଦେଇଥାଏ । ଏହି କାରଖାନାରେ ୧୨୨ ଜଣ ଲୋକଙ୍କୁ କର୍ମ ନିଯୁକ୍ତି ଦିଆଯାଇଛି ।

### (୬) ସୂତା କଳ :

ଶିଳ୍ପ ବିହୀନ ମୟୁରଭଞ୍ଜ ଜିଲ୍ଲାର ବାରିପଦାଠାରେ ୧୯୮୩ ମସିହା ମାର୍ଚ୍ଚମାସଠାରୁ ୭ କୋଟି ୨୮ ଲକ୍ଷ ଟଙ୍କା ବ୍ୟୟରେ ଏକ ସୂତାକଳ ପ୍ରତିଷ୍ଠା କରାଯାଇଛି । ଏହି କଳ ୨୫,୦୮୦ ତାକୁଡ଼ିଯୁକ୍ତ ଓ ଏହାର ଉତ୍ପାଦନ କ୍ଷମତା ୩୨-୫୦ ଲକ୍ଷ କିଲୋଗ୍ରାମ୍ ସୂତା । ଏହି କଳରେ ୨୦ ନମ୍ବର ଓ ୪୦ ନମ୍ବର ସୂତା ବ୍ୟବହୃତ ହୋଇଥାଏ । ଏହି କଳରେ ମୋଟ ୯୫୯ ଜଣ ଲୋକ କର୍ମନିଯୁକ୍ତି ପାଇଛନ୍ତି ।

୧୯୮୩ ମସିହା ମାର୍ଚ୍ଚ ମାସଠାରୁ ବଲାଙ୍ଗୀର ଜିଲ୍ଲାର ସୋନପୁରଠାରେ ୬ କୋଟି ୭୦ ଲକ୍ଷ ଟଙ୍କା ବ୍ୟୟରେ ଏକ ସୂତାକଳ ପ୍ରତିଷ୍ଠା କରାଯାଇଛି । ଏହି ସୂତାକଳ ୨୫,୦୮୦ ତାକୁଡ଼ି ବିଶିଷ୍ଟ ଓ ଏଠାରୁ ୨୦ ନମ୍ବର ଓ ୪୦ ନମ୍ବର ସୂତା ଉତ୍ପାଦନ କରାଯାଉଛି । ଏହି ସୂତାକଳରେ ମୋଟ ୮୬୮ ଜଣ ଲୋକ କର୍ମନିଯୁକ୍ତି ପାଇଛନ୍ତି ।

୧୯୮୬ ମସିହା ମାର୍ଚ୍ଚ ମାସଠାରୁ ଗଞ୍ଜାମ ଜିଲ୍ଲାର ଆସ୍କାଠାରେ ୫ କୋଟି ଟଙ୍କା ବ୍ୟୟରେ ୨୫,୭୫୨ ତାକୁଡ଼ିବିଶିଷ୍ଟ ଏକ ସୂତାକଳ ପ୍ରତିଷ୍ଠା କରାଯାଇଛି । ଏହି କଳର ଉତ୍ପାଦନ କ୍ଷମତା ୧୩ ଲକ୍ଷ କିଲୋଗ୍ରାମ୍ କପା ଓ କପାମିଶ୍ରିତ ରାସାୟନିକ ସୂତା । ଏହି କାରଖାନାରେ ମୋଟ ୬୦୦ ଲୋକ କର୍ମନିଯୁକ୍ତି ପାଇଛନ୍ତି ।

### (୭) ସୂର୍ଯ୍ୟ ଉପକୂଳ ବିଅର କାରଖାନା :

କଟକ ଜିଲ୍ଲାର ପାରାଦୀପଠାରେ ତିଆରି ହୋଇଥିବା "ଇଷ୍ଟ କୋଷ୍ଟ ବ୍ରିୱାରି ଓ ଡିଷ୍ଟିଲାଇଜର୍ସ ଲିମିଟେଡ୍" ୧୯୭୯ ମସିହା ଜୁଲାଇ ମାସଠାରୁ ବ୍ୟବସାୟିକ ଭିତ୍ତିରେ ଉତ୍ପାଦନ ଆରମ୍ଭ କରିଥିଲା । ୧୯୮୩ ମସିହା ମାର୍ଚ୍ଚ ମାସରେ ଓଡ଼ିଶା ଶିଳ୍ପ ବିକାଶ ନିଗମ ଏହି କାରଖାନାକୁ ନିଜ ହାତକୁ ନେଇଥିଲା । ଏହି କାରଖାନାର ବାର୍ଷିକ ଉତ୍ପାଦନ କ୍ଷମତା ୫ ଅଯୁତ ହେକ୍ଟୋଲିଟର ମୃଦୁ ଓ ତୀବ୍ର ବିଅର । ଉତ୍ପାଦନର ଉତ୍କୃଷ୍ଟତା ଯୋଗୁ ଏହାର ବ୍ୟବସାୟିକ ଚାହିଦା ଯଥେଷ୍ଟ ରହିଛି । ଓଡ଼ିଶା ଶିଳ୍ପ ବିକାଶ ସଂସ୍ଥା ଏହି କାରଖାନାକୁ ନିଜ ହାତକୁ ନେବା ପରେ ଏହାର ଆର୍ଥିକ ଓ ଶାରୀରିକ ଅଭିବୃଦ୍ଧି ଘଟିଛି । ବର୍ତ୍ତମାନ ଏହାର ବାର୍ଷିକ ଉତ୍ପାଦନ କ୍ଷମତା ୬୫,୦୦୦ ହେକ୍ଟୋଲିଟର । ଏହି କାରଖାନାର ପ୍ରତିଷ୍ଠା ଖର୍ଚ୍ଚ ୩ କୋଟି ୮୦ ଲକ୍ଷ ଟଙ୍କା । ୧୩୫ ଜଣ ଲୋକ ଏଥିରେ ନିଯୁକ୍ତି ପାଇଛନ୍ତି । ଏହି କାରଖାନାରୁ ଉତ୍ପାଦିତ ହେଉଥିବା ମଦଗୁଡ଼ିକ ଯଥା :—କ୍ଲବ ୫୦୦୦ । ପ୍ରିମିୟର ସୁପର ସୋନିକ୍ । ବ୍ଲାକ ପାଗୋଡ଼ା, କୋଣାର୍କ, ସଫାରୀ, କଳିଙ୍ଗ, ପାମ୍‌ବିଚ୍ ଓ ଡଲଫିନ୍ ଇତ୍ୟାଦି ।

### (୮) ରି–ରୋଲିଂ ମିଲ :

୧୯୬୮ ମସିହାର ମଧ୍ୟଭାଗ ବେଳକୁ ସମ୍ବଲପୁର ଜିଲ୍ଲାର ହୀରାକୁଦଠାରେ ୧ କୋଟି ୯୮ ଲକ୍ଷ ଟଙ୍କା ବ୍ୟୟରେ ରିରୋଲିଂ କାରଖାନା ପ୍ରତିଷ୍ଠା କରାଯାଇଛି । ସେତେବେଳେ ଏହାର ବାର୍ଷିକ ଉତ୍ପାଦନ କ୍ଷମତା ୧୫,୦୦୦ ମେଟ୍ରିକ ଟନ୍ ଥିଲା । ବିଦେଶରୁ ତାଲିମ ପାଇଁ ଆସିଥିବା ଯୁବ ଇଞ୍ଜିନିୟରମାନଙ୍କ ଦ୍ୱାରା ଏହି କାରଖାନା ପ୍ରତିଷ୍ଠା ହୋଇଛି । ଏଠାରେ ପ୍ରସ୍ତୁତ ହେଉଥିବା ସମସ୍ତ ପ୍ରକାରର M.S., ଗୋଲ, ଅନିୟମିତ, ଚୌକୋଣିଆ, ଚେପ୍‌ଟା ତଥା କୋଣବିଶିଷ୍ଟ ଲୁହାରଡ଼୍‌ର ଗୁଣାତ୍ମକ ମାନ ରକ୍ଷା ପାଇଁ ତୀକ୍ଷ୍ଣ ଦୃଷ୍ଟି ରଖାଯାଇଛି । ଭାରତର ଏହା ଏକ ମାତ୍ର Public Sector, ରିରୋଲିଂ କାରଖାନା । କାରଖାନାର ଉତ୍ପାଦିତ ଦ୍ରବ୍ୟ ଯେପରି ଭାରତୀୟ ମାନ ନିର୍ଦ୍ଧାରଣ ସଂସ୍ଥାର ନିର୍ଦ୍ଦେଶିତ ମାର୍ଗରେ ହୁଏ, ସେଥିପ୍ରତି ଦୃଷ୍ଟି ଦିଆଯାଇଥାଏ । ଏହି କାରଖାନାଟି I.S.I. ଦ୍ୱାରା ପ୍ରଥମ ଶ୍ରେଣୀର ଲାଇସେନ୍‌ସ୍ ପାଇଛି । ବର୍ତ୍ତମାନ ଏହାର ବାର୍ଷିକ ଉତ୍ପାଦନ କ୍ଷମତା ୩୧,୭୦୦ ମେଟ୍ରିକ ଟନ୍ । ଏଥିରେ ୨୨୯ ଜଣ ଲୋକ କର୍ମ ନିଯୁକ୍ତି ପାଇଛନ୍ତି ।

### (୯) ସ୍ପନ୍ ପାଇପ୍ ପ୍ଲାଣ୍ଟ :

୧୯୮୨ ମସିହାରେ ୬ କୋଟି ୨ ଲକ୍ଷ ଟଙ୍କା ବ୍ୟୟରେ କଳିଙ୍ଗ ଲୌହ ଶିଳ୍ପ ନିକଟରେ ସ୍ପନ୍ ପାଇପ୍ କାରଖାନା ପ୍ରତିଷ୍ଠା କରାଯାଇଛି । ଏହାର ବାର୍ଷିକ ଉତ୍ପାଦନ କ୍ଷମତା ୩୧,୨୦୦ ଟନ୍ । ୧୯୮୨ ମସିହା ମାର୍ଚ୍ଚମାସଠାରୁ ଏହା ବ୍ୟବସାୟିକ ଭିତ୍ତିରେ ଉତ୍ପାଦନ ଆରମ୍ଭ କରିଥିଲା । ପରେ ଏହାର ଉତ୍ପାଦନ କ୍ଷମତାକୁ ୩୬,୦୦୦ ଟନ୍ ବାଷ୍ପ ଓ ଡ଼ଷ୍ଟାଇଲ୍ ଲୌହ ପାଇପ୍‌କୁ ବୃଦ୍ଧି କରାଯାଇଛି । ସମସ୍ତ ଆବଶ୍ୟକୀୟ ବିଧି ବ୍ୟବସ୍ଥା ମଧ୍ୟରେ ଏହି କାରଖାନାରୁ ୮୦ ମି:ମି: ଓ ୩୫୦ ମି:ମି:ର ଉନ୍ନତ ମାନର ପାଇପ୍ ଉତ୍ପାଦନ କରାଯାଉଛି । ଏଥିରେ ୩୦୨ ଜଣ ବ୍ୟକ୍ତି ପ୍ରତ୍ୟକ୍ଷ ଭାବରେ ନିଯୁକ୍ତ ହୋଇଛନ୍ତି ।

ମୋଟ ଉପରେ ଓଡ଼ିଶା ଶିଳ୍ପ ବିକାଶ ନିଗମ ଓଡ଼ିଶାର ଆର୍ଥିକ ଅଭିବୃଦ୍ଧିରେ ସହାୟକ ହୋଇପାରିଛି । ଏହା ଦିନେ ନା ଦିନେ ଓଡ଼ିଶାକୁ ଅଧିକ ବିକାଶଶୀଳ ଓ ଅନ୍ୟ ରାଜ୍ୟ ସହିତ ସମକକ୍ଷ କରିବାରେ ସହାୟକ ହୋଇପାରିବ, ଏଥିରେ ସନ୍ଦେହ ନାହିଁ ।

ମଧୁବନ ବାସଗୃହ ପ୍ରକଳ୍ପ, ବାରିପଦା ।

# ସମାଜର ପ୍ରଗତିରେ ନାରୀ

ଶ୍ରୀମତୀ ମନୋରମା ମିଶ୍ର

ସମାଜ ପରିବର୍ତ୍ତନଶୀଳ । ଏହି ପରିବର୍ତ୍ତନଶୀଳ ସମାଜରେ ବହୁ ବିଶେଷତ୍ୱ ପରିଲକ୍ଷିତ ହୁଏ । ସମାଜ ଭଳି ବିରାଟ ଅନୁଷ୍ଠାନର ସଂଗଠନରେ ପୁରୁଷ ଯେ ଏକ ମାତ୍ର ହର୍ତ୍ତା କର୍ତ୍ତା ତା' ନୁହେଁ; ସମାଜର ଉନ୍ନତି କ୍ଷେତ୍ରେ ନାରୀର ମଧ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କଥାରେ ଅଛି :

"ଗାଁଖି ପରିମଳ ଧୋବା ତୁଠରୁ,
ଦେଶ ଜଣାଯାଏ ଝିଅ ପାଠରୁ ।"

କାରଣ, ଦେଶର ଭାବୀ ବଂଶଧରଙ୍କର ମୂଳଦୁଆ ସ୍ଥାପନ କରେ ନାରୀ । ଶିଶୁର ଲାଳନପାଳନ ସହିତ ତାର ଶିକ୍ଷା, ସ୍ୱାସ୍ଥ୍ୟ, ଉନ୍ନତ ଚିନ୍ତାଧାରା, କର୍ତ୍ତବ୍ୟ, ସାମାଜିକ ଦାୟିତ୍ୱ ଓ ଚେତନା ସୃଷ୍ଟି କରିବାରେ ସେ ସହାୟକ ହୋଇଥାଏ । ଜନନୀ ରୂପେ ସେହି ଶିଶୁକୁ ପ୍ରଥମେ ଶିକ୍ଷାର ଆଲୋକ ପ୍ରଦାନ କରିଥାଏ । ତେଣୁ ଯେଉଁ ଦେଶର ନାରୀ ଯେତେ ଉନ୍ନତ, ଶିକ୍ଷିତ ଓ ସଭ୍ୟ, ସେ ଦେଶ ସେତେ ପ୍ରଗତିଶୀଳ । ଆଧୁନିକ ବିଜ୍ଞାନ ଯୁଗରେ ଯୁକ୍ତରାଷ୍ଟ୍ର, ଆମେରିକା, ରୁଷିଆ ଭଳି ଯେତେ ପ୍ରଗତିଶୀଳ ରାଷ୍ଟ୍ରମାନ ରହିଛି, ସେ ସବୁ ଦେଶର ନାରୀମାନେ ଉଚ୍ଚ ଶିକ୍ଷିତ, ସଭ୍ୟ ଓ କର୍ମ ସଚେତନ । ନାରୀ ଉଚ୍ଚ ଶିକ୍ଷିତ ହେବା ଫଳରେ ଉଭୟ ପୁରୁଷ ଓ ସ୍ତ୍ରୀ ପରସ୍ପରର ପରିପୂରକ ଭାବେ ସମାଜକୁ ଉନ୍ନତି ପଥରେ ଆଗେଇ ନିଅନ୍ତି ।

## ଶାସନ କ୍ଷେତ୍ରରେ ନାରୀ :

ଇତିହାସର ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ବୈଦିକ ଯୁଗରେ ନାରୀମାନେ ସମାଜରେ ଉଚ୍ଚ ଆସନ ଲାଭ କରିଥିଲେ । ସେମାନଙ୍କ ମଧ୍ୟରେ ପର୍ଦ୍ଦା ପ୍ରଥା ନ ଥିଲା । ସମାଜରେ ନାରୀର ଆଦର ଥିଲା । ସେ ସମୟର ଗାର୍ଗୀ, ମୈତ୍ରେୟୀ, ଘୋଷ୍ୟ, ଲୋପାମୁଦ୍ରା, ବିଶ୍ୱବରା, ନିଭାବରୀ ପ୍ରଭୃତି ବହୁ ବିଦୁଷୀ ରମଣୀ ଏହାର ଜ୍ୱଳନ୍ତ ଉଦାହରଣ । ପ୍ରାଚୀନ କାଳରେ ମନୁଙ୍କ ପୁତ୍ରୀ ଇଳା ନିଜ ପିତାଙ୍କ ପୁରୋହିତ ରୂପେ ଧର୍ମକ୍ଷେତ୍ରରେ ତାଙ୍କୁ ସହଯୋଗ କରାଇଥିଲେ । ବିଦ୍ୟାବତୀ ମଧ୍ୟ ନିଜର ପାଣ୍ଡିତ୍ୟର ଅସୀମ ପରାକାଷ୍ଠା ଦର୍ଶାଇଥିଲେ । ଆର୍ଯ୍ୟ ଯୁଗରେ ମଧ୍ୟ ନାରୀମାନେ ସମାଜରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ନାରୀ ... ପରିବାରର ମୁଖ୍ୟ, ସେଭଳି ପରିବାରକୁ "ମାତୃକେନ୍ଦ୍ରିକ ପରିବାର" କୁହାଯାଉଥିଲା । ମୋଗଲ ରାଜତ୍ୱ କାଳରେ ନୁରଜାହାନ ଜାହାଙ୍ଗିରଙ୍କ ସହିତ ଶାସନ କାର୍ଯ୍ୟ ତୁଲାଉଥିଲେ, ମୁଦ୍ରା ଉପରେ ତାଙ୍କର ପ୍ରତିଛବି ଅଙ୍କିତ ହୋଇଥିଲା । ଇଂରେଜ ଶାସନ କାଳରେ ରାଣୀ ଭିକ୍ଟୋରିଆ, ରାଣୀ ଏଲିଜାବେଥ୍ ମଧ୍ୟ ସୁଦକ୍ଷ ଭାବେ ଶାସନ କାର୍ଯ୍ୟ ତୁଲାଇ ପାରିଥିଲେ । ବିଂଶ ଶତାବ୍ଦୀର ପ୍ରଥମ ମହିଳା, ନୋବେଲ୍ ପୁରସ୍କାର ବିଜେତା ଇନ୍ଦିରା ଗାନ୍ଧୀଙ୍କର ଅବଦାନ ମଧ୍ୟ କମ୍ ନଥିଲା । ଏହାଛଡ଼ା ଇସ୍ରାଏଲ୍‌ର ଗୋଲଡ଼ା ମେୟର, ଇଂଲଣ୍ଡର ମାର୍ଗାରେଟ୍ ଥାଚର୍, ଶ୍ରୀଲଙ୍କାର ସିରିମାଭୋ ... ନାୟକ, ଫିଲିପାଇନ୍‌ସ୍‌ର ଏକ୍ୱିନୋ ମଧ୍ୟ ଶାସନ କ୍ଷେତ୍ରରେ ଦକ୍ଷତା ପ୍ରଦର୍ଶନ କରିଥିଲେ ।

## ସ୍ୱାଧୀନତା ସଂଗ୍ରାମରେ ନାରୀ :

ବିଂଶ ଶତାବ୍ଦୀରେ ବହୁ ବୀର ରମଣୀ ନିଜର ତ୍ୟାଗ, ... ଓ କର୍ତ୍ତବ୍ୟନିଷ୍ଠାର ପରିଚୟ ଦେଇଛନ୍ତି । ଶ୍ରୀମତୀ ... ଦେବୀ, ସୁଲୋଚନା ଦେବୀ, ଜାହ୍ନବୀ ଦେବୀ, ... ଦେବୀ, ସରୋଜ ମଣି ଦେବୀ, ନିର୍ମଳା ଦେବୀ, ... ସରଳା ଦେବୀ, ବିଷ୍ଣୁପ୍ରିୟା ଦେବୀ, ସୁପ୍ରଭା ଦେବୀ, ... ଝାନ୍‌ସୀ ରାଣୀ ବୀରାଙ୍ଗନା ଲକ୍ଷ୍ମୀବାଈ, ଦୁର୍ଗାବାଈ, ... ରାୟ, ଅଚମ୍ମା ମାଥାଇ, କମଳା ଚଟୋପାଧ୍ୟାୟ, ସୁମିତ୍ରା ... ହିଂସା ମେହେଟ୍ଟା, ମୃଦୁଲତା ସରାଭାଇ, ରାମେଶ୍ୱରୀ, ... ବାଈ, ରମା ଦେବୀ ପ୍ରମୁଖ ବହୁ ମହିଳା ସ୍ୱାଧୀନତା ... ଦେଶ, ଜାତି ଓ ସମାଜର ଉନ୍ନତିକଳ୍ପେ ଉତ୍ସର୍ଗୀକୃତ ... ସେମାନେ ସମାଜରୁ କୁସଂସ୍କାର, ଅନ୍ଧବିଶ୍ୱାସ, ... ଅସ୍ପୃଶ୍ୟତା, ପ୍ରଭୃତିର ନିରାକରଣ ନିମିତ୍ତ ପ୍ରାଣପଣେ ... କରିଥିଲେ । ସେହିପରି ଶ୍ରୀମତୀ ରାସମଣି ଦେବୀ, ... ଗୌରୀ ଦେବୀ, ଅହଲ୍ୟା ଦେବୀ, ଲକ୍ଷ୍ମୀ ଦେବୀ, ... ଦେବୀ, କିଶୋରୀମଣି ଦେବୀ, ସରୋଜ ସୁନ୍ଦରୀ ଦେବୀ ... ଦେଶପ୍ରେମୀ ନାରୀମାନେ ସେମାନଙ୍କର ନିଃସ୍ୱାର୍ଥପର ସେବା, ... ମନୋବଳ, କର୍ମ କୁଶଳତା, ଆତ୍ମୋତ୍ସର୍ଗ, ଦେଶପ୍ରୀତି ... ଜାତୀୟ ଆନ୍ଦୋଳନକୁ ନୂତନ ରୂପ ଦେବା ସଙ୍ଗେ ସଙ୍ଗେ ... ଜାତିର ଏକତା, ସଂହତି ଓ ଅଖଣ୍ଡତାକୁ ବଜାୟ ରଖିବାରେ ... ସହାୟକ ହୋଇପାରିଥିଲେ । ୧୯୧୭ ମସିହାରେ ଭାରତର ... ପ୍ରଥମ ନାରୀ ସଂଗଠନ ଶ୍ରୀମତୀ ଆନିବେସାନ୍ତଙ୍କ ପ୍ରଭାବରେ ... ନେତୃତ୍ୱରେ ତଥା ଶ୍ରୀମତୀ ମାର୍ଗାରେଟ୍ କଜିନ୍‌ସ୍‌ଙ୍କ ଦ୍ୱାରା ... ହୋଇଥିଲା । ଏହି ସଂଗଠନ ସାମ୍ପ୍ରଦାୟିକତା ବିରୁଦ୍ଧରେ ... ଉତ୍ତୋଳନ କରି ସ୍ୱାଧୀନତା ଆନ୍ଦୋଳନ ପାଇଁ ... ଯୋଗାଇଥିଲା । ଏହି ସଂଗଠନର ନାରୀ ନେତାମାନେ ... ସରୋଜିନୀ ନାଇଡୁ, ମାର୍ଗାରେଟ୍ କଜିନସ୍, ଆନି ... ବେଗମ୍ ହଜରତ୍ ମୋହାନୀ, ଜମ୍ବନୀ ଜାହାଙ୍ଗିର ... ହୀରାବାଈ ଟାଟା, ହନାନ୍ ଆଞ୍ଜେଲୋ ଓ ଶ୍ରୀମତୀ ... ଆସାର । ଏମାନେ ଗ୍ରାମଗ୍ରାମାନ୍ତରେ ... ସତ୍ୟାଗ୍ରହ ... ସେବା, ପାଣ୍ଠିସଂଗ୍ରହ, ଐତିହାସିକ ଦାଣ୍ଡି ... ଲବଣ ... ବିଦେଶୀ ଜିନିଷ ବର୍ଜନ, ଆଇନ ଅମାନ୍ୟ ଆନ୍ଦୋଳନ, ... ମଦ ବିରୋଧୀ ଅଭିଯାନ, ଅହିଂସା ଆନ୍ଦୋଳନ, ... ବସ୍ତ୍ରଗ୍ରହଣ ପ୍ରସ୍ତୁର ବାର୍ତ୍ତା, ଜଙ୍ଗଲ ବିରୋଧ ଆଇନ ...

ଭାଗ ନେଇଥିଲେ। ବହୁ ବିଦେଶୀ ମହିଳା ମଧ୍ୟ ଅନେକ ସ୍ୱାଧୀନ ଆନ୍ଦୋଳନରେ ଭାଗ ନେଇ ସଫଳତା ହାସଲ କରିଛନ୍ତି। ହେରିୟଟ୍ ଷ୍ଟୋ ଓ ମାର୍ଗାରେଟ ମେରଙ୍କୋପ୍ସ୍ ପ୍ରଭୃତି ନାରୀ ମୁକ୍ତି ଆନ୍ଦୋଳନରେ ଭାଗ ନେଇ ଓ କ୍ରୀତଦାସ ପ୍ରଥା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସୁଧନ୍ୟା ହୋଇପାରିଛନ୍ତି। ଅନ୍ୟ ଖ୍ରୀଷ୍ଟଧର୍ମ ପ୍ରଚାର କରି ଲୋକପ୍ରିୟ ହୋଇପାରିଛନ୍ତି। ପଣ୍ଡିଚେରୀ ଅରବିନ୍ଦ ଆଶ୍ରମର ଶ୍ରୀମା, ଗାନ୍ଧୀ ଆଶ୍ରମର ମୀରାବେନ୍, ସରଳା ବେନ୍, ଥିଓସୋଫିର ପ୍ରଭୃତି ବିଦେଶୀ ରମଣୀମାନେ ଭାରତର ସାଂସ୍କୃତିକ ଓ ସମାଜ ସେବା କ୍ଷେତ୍ରରେ ବହୁ ଉତ୍ସାହବର୍ଦ୍ଧକ କାର୍ଯ୍ୟ କରି ପ୍ରଶଂସିତ ହୋଇଛନ୍ତି।

### ସାହିତ୍ୟ ପ୍ରତି ଅବଦାନ :

ନାରୀ ମଧ୍ୟ ସାହିତ୍ୟ ମାଧ୍ୟମରେ ସାମାଜିକ ସଚେତନତା ସୃଷ୍ଟି କରିପାରେ, ଜନ ଜାଗରଣ ଆଣିପାରେ। ନାରୀ କବି କୁନ୍ତଳା କୁମାରୀ ସାବତଙ୍କ ଓଜଃସ୍ୱିନୀ ଯାତୀୟତାବାଦୀ କବିତା ସଂଗ୍ରାମକୁ ବଳିଷ୍ଠ ଇନ୍ଧନ ଯୋଗାଇବାରେ ସମର୍ଥ ହୋଇଥିଲା। ଓଡ଼ିଶାରେ ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକ, ପ୍ରତିଭା ରାୟ ପ୍ରଭୃତି ନାରୀମାନେ ମଧ୍ୟ ସାହିତ୍ୟ କ୍ଷେତ୍ରରେ ବିଶେଷ କୃତିତ୍ୱ ଅର୍ଜନ କରିଛନ୍ତି। ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ପୁତ୍ରୀ ମନୁବେନ ଅବିବାହିତା ରହି ରଚନାତ୍ମକ କାର୍ଯ୍ୟରେ ନିଜକୁ ଲିପ୍ତ ରଖି ସମାଜର ପ୍ରଗତିରେ ସାହାଯ୍ୟ କରିଥିଲେ। ଡ଼ଃ ମହାଦେବୀ ବର୍ମା, ଶ୍ରୀମତୀ ଆଶାପୂର୍ଣ୍ଣା ଦେବୀ, ପ୍ରତିଭା ବସୁ ମଧ୍ୟ ଲେଖିକା ରୂପେ ସୁଖ୍ୟାତି ଅର୍ଜନ କରିଛନ୍ତି।

### ରାଜନୀତି କ୍ଷେତ୍ରରେ ନାରୀ :

ରାଜନୀତି କ୍ଷେତ୍ରରେ ସରୋଜିନୀ ନାଇଡୁ, ମା' ସାରଦା ଦେବୀ, ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତ, ସୁଚେତା କୃପାଳିନୀ, ଡକ୍ଟର ଆନିବେସାନ୍ତ, କୁଜଙ୍ଗର ରାଣୀ ଭଗବତୀ ପାଟ ମହାଦେଈ, ଭଗିନୀ ନିବେଦିତା ପ୍ରଭୃତି ନାରୀମାନେ ସମାଜର ଉଜ୍ଜ୍ୱଳ ତାରକା ରୂପେ ଶୋଭା ପାଉଛନ୍ତି। ସେମାନେ ଦେଶର ରାଜନୀତିର ପଟ୍ଟ ପୁରୋଧା ଥିଲେ ଓ ଦେଶ ମାତୃକାକୁ ବିଦେଶୀ ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ପ୍ରଚ୍ଛନ୍ନରେ ସଂଗ୍ରାମ ଚଳାଇଥିଲେ।

### କ୍ରୀଡ଼ା ଜଗତରେ ନାରୀ :

ଖେଳ କ୍ଷେତ୍ରରେ ନାରୀମାନଙ୍କର ଅବଦାନ କମ୍ ନୁହେଁ। ଅନ୍ଜୁ ଡ଼ିଃ ଶାହା, ଗ୍ରାଭିଏନା ସାଲାଡ଼ିନ୍, ନିଶାସ୍କାଲିଆ, ପ୍ରତିମା ବ୍ରିଜ୍‌ଟେଡ, କୁମାରୀ ରୀମା ଦତ୍ତ, ଅର୍ଚ୍ଚନା, ଭରତ କୁମାରୀ ପଟେଲ, ଷ୍ଟେଫିଗ୍ରାଫ, ପିଃ ଟିଃ ଉଷା ପ୍ରଭୃତି ବିଶିଷ୍ଟ ଖେଳାଳୀମାନେ ସମାଜରେ ସୁଖ୍ୟାତି ଅର୍ଜନ କରି ବିଶ୍ୱ ରେକର୍ଡ ସୃଷ୍ଟି କରିପାରିଛନ୍ତି। ଭାରତର ପ୍ରଥମ ମହିଳା କମାଣ୍ଡର ଭାବେ କ୍ୟାପଟେନ୍ କୁମାରୀ ସୌଦାମିନୀ ଦେଶମୁଖଙ୍କ କୃତିତ୍ୱ ମଧ୍ୟ କମ୍ ନୁହେଁ।

### ମହାକାଶରେ ନାରୀ :

ମହାକାଶ ପରିକ୍ରମା କ୍ଷେତ୍ରରେ ମଧ୍ୟ ନାରୀ ଅଗ୍ରଗାମୀ ହୋଇପାରିଛି। ପୃଥିବୀର ପ୍ରଥମ ମହାକାଶଚାରିଣୀ ରୂପେ ଶ୍ୱେତଲାନା ସୁଖ୍ୟାତ ଅର୍ଜନ କରିଛନ୍ତି। ସେହିପରି ଭାଲେଣ୍ଟିନା ତେରେସ୍କୋଭା ମହାକାଶଚାରିଣୀ ରୂପେ, ଶ୍ରୀମତୀ ଜୁଙ୍କୋ ତାବେଇ ଓ ବାଚେନ୍ଦ୍ରୀ ପାଲ ଏଭରେଷ୍ଟ ଆରୋହଣକାରିଣୀ ରୂପେ ସୁଖ୍ୟାତି ଅର୍ଜନ କରିଛନ୍ତି। ବାଚେନ୍ଦ୍ରୀ ପାଲ ଏଭରେଷ୍ଟ ଶୃଙ୍ଗ ଆରୋହଣକରି ପଦ୍ମଶ୍ରୀ ଉପାଧିଲାଭ କରିପାରିଛନ୍ତି।

### ସେବା କ୍ଷେତ୍ରରେ ନାରୀ :

ସେବା ଓ ତ୍ୟାଗ ନାରୀର ସହଜାତ ଧର୍ମ। ସେ କ୍ଷେତ୍ରରେ ସେ ପୁରୁଷଠାରୁ ଶତ ଗୁଣରେ ବଳଶାଳିନୀ। "ଗୁଣ ଚିହ୍ନେ ଗୁଣିଆ" ଭଳି ସେ ରୋଗୀର ଦୁଃଖରେ ଦୁଃଖୀ ହୁଏ, ତା ଆଖିରୁ ଝରି ପଡେ଼ ଶ୍ରାବଣୀର ଧାର। ତାର ଦୁଃଖରେ ଦୁଃଖୀ ହୋଇ, ତାର ଅନ୍ତର ପ୍ରତି ସମ୍ବେଦନଶୀଳ ହୋଇ ସେ ତାର ସେବା କରିଥାଏ। ଶ୍ରୀ ମା' ଫ୍ଲୋରେନ୍ସ ନାଇଟି ଙ୍ଗେଲ, ମଦର ଟେରେସା, ସ୍ୱରୂପା ରାଣୀ, କମଳା ନେହେରୁ ପ୍ରଭୃତି ନାରୀମାନେ ସେବା କ୍ଷେତ୍ରରେ ଅପୂରଣୀୟ ତ୍ୟାଗ ସହିଛନ୍ତି। ଶ୍ରୀମତୀ ମାଳତୀ ଚୌଧୁରୀ ୧୯୮୮ ମସିହାରେ ଶିଶୁ ଓ ନାରୀ କଲ୍ୟାଣ ଦିଗରେ କୃତିତ୍ୱ ପାଇଁ ଯମୁନାଲାଲ ବଜାଜ୍ ପୁରସ୍କାର ଲାଭ କରିପାରିଛନ୍ତି। ଶ୍ରୀମତୀ ଆନ୍ନା ଗୁନ୍ଦୀ, ଗୋରିନା ଶୁକ୍ଳା ମଧ୍ୟ ସେବା ସୁବିଦିତା।

### ନାରୀ ଉତ୍ତମ ଗୃହିଣୀ :

ନାରୀ ଗୃହକର୍ମ, ସଙ୍ଗୀତ, ନୃତ୍ୟ, କୃଷି, ଶିକ୍ଷ ପ୍ରଭୃତି ସବୁ କ୍ଷେତ୍ରରେ ପାରଙ୍ଗମ। ଘରର ଯାବତୀୟ କାର୍ଯ୍ୟ, ସନ୍ତାନ ସନ୍ତତିଙ୍କର ଲାଳନ ପାଳନ, ସେବା ଓ ପରିବେଷଣ, ଅତିଥି ଚର୍ଚ୍ଚା ଇତ୍ୟାଦି କାମରେ ସେ ସିଦ୍ଧହସ୍ତା। ସେ ଘରର ପାଳନ କର୍ତ୍ତ୍ରୀ।

### କର୍ମଜୀବୀ ମହିଳା :

ସରକାରୀ କାର୍ଯ୍ୟ ତଥା ଦେଶର ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ବିଷୟରେ ବିଚାର କଲେ ଦେଖାଯାଏ ଯେ, ମହିଳାମାନେ ପୁରୁଷମାନଙ୍କ ଅପେକ୍ଷା ଅଧିକ ପରିଶ୍ରମ କରିଥାଆନ୍ତି, ଯଦ୍ୱାରା ଦେଶର ବହୁ ପୁଞ୍ଜି ସଞ୍ଚିତ ହୁଏ। ତାଛଡ଼ା ମହିଳାମାନେ ପୁରୁଷମାନଙ୍କଠାରୁ ଅଧିକ ଦାୟିତ୍ୱ ସଂପନ୍ନଭାବେ କାର୍ଯ୍ୟ ତୁଲାଇଥାଆନ୍ତି। ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଗୁଡ଼ିକ ପୁରୁଷମାନଙ୍କଠାରୁ ମହିଳାମାନେ ଅଧିକ ସତର୍କତାର ସହ ସମ୍ପନ୍ନ କରିଥାଆନ୍ତି। ଋଷ, ଯୁଗୋସ୍ଲୋଭିଆରେ ଶିକ୍ଷା, ସ୍ୱାସ୍ଥ୍ୟ ବିଭାଗ, ଶିଶୁ କଲ୍ୟାଣ ଭଳି ଅନେକ ବିଭାଗରେ ଶତକଡ଼ା ୯୦ ଭାଗ କାର୍ଯ୍ୟ ମହିଳାମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ। ଏହାଛଡ଼ା ବହୁ ମହିଳା କୃଷି, ବିଜ୍ଞାନ, ଇଞ୍ଜିନିୟରିଙ୍ଗ୍ ଓ କମ୍ପ୍ୟୁଟର ବିଭାଗରେ କାର୍ଯ୍ୟ କରି ଦକ୍ଷତାର ପରିଚୟ ଦେଉଛନ୍ତି। ବିଜ୍ଞାନ କ୍ଷେତ୍ରରେ ମ୍ୟାଡ଼ାମ କ୍ୟୁରି ରେଡ଼ିୟମ୍ ଉଦ୍ଭାବନ କରି ଜଗତକୁ ନୂତନ ଦିଗ୍ ଦର୍ଶନ ଦେଇଛନ୍ତି।

ଏହିପରି ବିଭିନ୍ନ ଦିଗରେ ନାରୀ ସମାଜର ଉନ୍ନତି ଓ ପ୍ରଗତିରେ ଯଥେଷ୍ଟ ସାହାଯ୍ୟ କରିଛି। ଜୀବନ ସଂଗ୍ରାମରେ ସେ ଯେପରି

ବଳିଷ୍ଠ ନେତୃତ୍ୱ ନେଇ ପୁରୁଷର ସମକକ୍ଷ ହୋଇପାରିଛି, ସମାଜର ପ୍ରତ୍ୟେକ ସ୍ତରରେ ମଧ୍ୟ ସେ ପଛୁଆ ନ ହୋଇ ପୁରୁଷ ସହିତ ତାଳ ଦେଇ ଚାଲିଛି। ସେ ଆଜି କୌଣସି ଗୁଣରେ ନ୍ୟୁନ ନୁହେଁ । ମହାକାଶଠାରୁ ଆରମ୍ଭ କରି ଭୂଗର୍ଭ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ସେ ତାର କାର୍ଯ୍ୟ ଦକ୍ଷତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ତାର ନ୍ୟାଯ୍ୟ ଦାବୀ ପାଇଁ ସେ ପଛଘୁଞ୍ଚା ଦେଉନାହିଁ ।

ଏହି ପରିପ୍ରେକ୍ଷୀରେ ସମାଜରେ ଉପୁଜୁଥିବା ବିଭିନ୍ନ ନାରୀ ସମସ୍ୟାର ସମାଧାନ କରାଯିବା ସଙ୍ଗେ ସଙ୍ଗେ ନାରୀ ଶିକ୍ଷାର ପ୍ର ପ୍ରଚାର କରାଗଲେ ସମାଜ ପ୍ରଗତି ପଥରେ ଆଗୁ ଆଗେଇଯିବ ।

*ସହକାରୀ ଶିକ୍ଷୟିତ୍ରୀ,*
*ରାଜଭବନ ଉପ୍ରା: ବିଦ୍ୟାଳୟ,*
*ୟୁନିଟ୍ ନଂ-୮, ଭୁବନେଶ୍ୱର-୧୨*




ଭୁବନେଶ୍ୱରଠାରେ ରାଜଧାନୀ ପ୍ରତିଷ୍ଠା ଦିବସ ଉପଲକ୍ଷେ ଆୟୋଜିତ ଓବ ବେସାମରିକ ପ୍ୟାରେଡ୍‌ରେ ମାନ୍ୟବର ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସ ଅଭିବାଦନ ଗ୍ରହଣ କରୁଛନ୍ତି ।

# ସ୍ୱତନ୍ତ୍ର ପ୍ରଦେଶର ପୃଷ୍ଠଭୂମି ଓ ପାଇକା ମହାଘାଟ

ଡକ୍ଟର ରାମଚନ୍ଦ୍ର ମିଶ୍ର

ଓଡ଼ିଶାର ପୂର୍ବତନ ଆୟତନ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲେ ମଧ କାଳକ୍ରମେ ଏହି ବିରାଟ ଭୂଖଣ୍ଡ ଐତିହାସିକ ବିପର୍ଯ୍ୟୟରେ ଖଣ୍ଡବିଖଣ୍ଡିତ ହୋଇ ୧୮୦୩ ମସିହା ବେଳକୁ କେବଳ ଉପକୂଳବର୍ତ୍ତୀ ପୁରୀ,କଟକ, ବାଲେଶ୍ୱର ଓ କେତେକ ଗଡ଼ଜାତ ଅଞ୍ଚଳ 'ଓଡ଼ିଶା' ନାମରେ ନାମିତ ହୋଇ ରହିଥା । ଫଳରେ ଆଜିର ପ୍ରାକୃତିକ ଓଡ଼ିଶାର ବହୁ ଅଂଶ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗ ଓ ବିହାର ସଙ୍ଗେ ମିଶିଯାଇଥିବାରୁ ସେ ସବୁ ପ୍ରକୃତ ଓଡ଼ିଶାଠାରୁ ବିଚ୍ଛିନ୍ନ ହୋଇ ରହିଥିଲା । ଭାରତର ମାନଚିତ୍ରରେ ଓଡ଼ିଶା ପ୍ରଦେଶର କୌଣସି ଚିହ୍ନ ନଥିଲା । ରାଜ୍ୟ ବାହାରର ଲୋକେ ଓଡ଼ିଶା କହିଲେ ପୁରୀର ଜଗନ୍ନାଥଙ୍କୁ ହିଁ ବୁଝୁଥିଲେ । ସେ ସମୟରେ ଓଡ଼ିଆ ଅଞ୍ଚଳଗୁଡ଼ିକ ବଡ଼ ବଡ଼ ପ୍ରଦେଶର କ୍ଷୁଦ୍ର ଅଂଶ ହୋଇ ରହିଥିବାରୁ ଓଡ଼ିଆମାନେ ସେହି ପ୍ରଦେଶର ଶାସନକୁ ପ୍ରଭାବିତ କରିପାରୁନଥିଲେ । ଓଡ଼ିଆ ଭାଷୀମାନେ ସଙ୍ଗଠିତ ଭାବରେ କୌଣସି ଦାବୀ ହାସଲ କରିବା ଭଳି ଅବସ୍ଥାରେ ନଥିଲେ । ତେଣୁ ସେମାନଙ୍କୁ ରାଜନୈତିକ, ସାଂସ୍କୃତିକ ତଥା ଅର୍ଥନୈତିକ ଦୁର୍ଦ୍ଦଶା ଭୋଗିବାକୁ ପଡୁଥିଲା । ଏହିପରି ଅବସ୍ଥାରେ ଓଡ଼ିଆ ଭାଷାଭାଷୀଙ୍କର ଶିକ୍ଷା, ସଂସ୍କୃତି, ବ୍ୟବସାୟ, ବାଣିଜ୍ୟ, ସ୍ଥାପତ୍ୟ, କଳା, ବିଜ୍ଞାନ ପ୍ରଭୃତି କାର୍ଯ୍ୟଗୁଡ଼ିକ ଦିନକୁ ଦିନ ବିଲୁପ୍ତ ହୋଇ ଯାଉଥିଲା । ଉତ୍କଳର ଏପରି ଦୁରାବସ୍ଥା ସମୟରେ ଅନ୍ୟାନ୍ୟ ପ୍ରଦେଶରୁ ଧନବାନ ବ୍ୟକ୍ତିମାନେ ଆସି ସ୍ୱଳ୍ପ ମୂଲ୍ୟରେ ବାଲେଶ୍ୱର, କଟକ, ପୁରୀ, ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ ବଡ଼ ବଡ଼ ବହୁ ଇଲାକା ଖରିଦ କରିନେଇ ନିଜ ଜମିଦାରୀ ଅନ୍ତର୍ଭୁକ୍ତ କରିନେଇ ଯାଉଥିଲେ । ବିଚ୍ଛିନ୍ନ ଓଡ଼ିଶା ଅଞ୍ଚଳଗୁଡ଼ିକରେ ସଂଲଗ୍ନ ରାଜ୍ୟର ଅଧିବାସୀମାନେ ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ଓଡ଼ିଆ ସଂସ୍କୃତି ଉପରେ ଅକଥନୀୟ ଅତ୍ୟାଚାର କରିବାକୁ ଲାଗିଲେ । ମାତ୍ର ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ କେନ୍ଦ୍ରୀକରଣ ହେଲେ ଓଡ଼ିଆମାନଙ୍କର ଦୁଃଖ ଦୂର ହେବ ଏ କଥା ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷ ପର୍ଯ୍ୟନ୍ତ ଓଡ଼ିଆମାନେ ଚିନ୍ତା କରିପାରି ନଥିଲେ ।(୧)

ଏହି ଦୁର୍ଭିକ୍ଷ ଓଡ଼ିଆ ଭାଷୀ ଅଞ୍ଚଳର ଲୋକଙ୍କ ଭିତରେ ଜାଗରଣ ଆଣି ଦେଇଥିଲା । ଓଡ଼ିଆ ଭାଷୀ ଲୋକ ସଙ୍ଗଠିତ ହୋଇ ନିଜର ଦାବୀ ପାଇଁ ଆନ୍ଦୋଳନ କରି ନଥିବାରୁ ଏପରି ଅବହେଳିତ ଓ ଦୁର୍ଦ୍ଦଶାଗ୍ରସ୍ତ ହୋଇ ରହିଛନ୍ତି ବୋଲି ସେମାନେ ଉପଲବ୍ଧି କରିଥିଲେ । ଏହି ସମୟରେ ୧୮୬୬ରେ 'ଉତ୍କଳ ଦୀପିକା' ନାମରେ ଏକ ସାପ୍ତାହିକ ପତ୍ରିକା ଗୌରୀଶଙ୍କର ରାଏ ପ୍ରକାଶ କଲେ । ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ଆଉ କେତେକ ସାମୟିକ ପତ୍ରିକା ମଧ ପ୍ରକାଶ ପାଇଲା । ସେଥିରେ ଓଡ଼ିଆ ଭାଷୀ ଲୋକଙ୍କ ପ୍ରତି ବ୍ରିଟିଶ୍ ସରକାରଙ୍କର ଚରମ ଅବହେଳା ପ୍ରତି ଦୃଷ୍ଟି ଆକର୍ଷଣ କରାଯାଇଥିଲା ।

ଓଡ଼ିଆ ଭାଷୀଙ୍କର ଏହିଭଳି ଆର୍ଥିକ ଦୁର୍ଗତି ବେଳେ ବଙ୍ଗଳା ସରକାର, ମାନ୍ଦ୍ରାଜ ସରକାର, ବିହାର ଓ ମଧ୍ୟପ୍ରଦେଶ ସରକାର ସେହି ସବୁ ପ୍ରଦେଶ ସହିତ ଯୋଡ଼ି ହୋଇ ରହିଥିବା ଓଡ଼ିଆ ଭାଷୀ ଅଞ୍ଚଳର ସ୍କୁଲ ଓ କଚେରୀରୁ ଓଡ଼ିଆ ଭାଷା ଉଠାଇ ଦେବା ପାଇଁ ଚକ୍ରାନ୍ତ ଚଳାଇଲେ । ସେହି ଚକ୍ରାନ୍ତକୁ ପଣ୍ଡ କରିବା ପାଇଁ ସେଠାରେ ସ୍ତମ୍ଭିତ ହୋଇ ରହିଥିବା ଓଡ଼ିଆ ଭାଷୀମାନେ ସଙ୍ଗଠିତ ହେଲେ । ଏହି ଅଭିଯାନରେ ଗୌରୀଶଙ୍କର ରାଏ, ରାମଶଙ୍କର ରାଏ, ଫକୀର ମୋହନ ସେନାପତି, ରାଧାନାଥ ରାଏ ଓ ମଧୁସୂଦନ ରାଓ ପ୍ରମୁଖ ନେତୃତ୍ୱ ନେଇ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ତଥା ଅନ୍ୟାନ୍ୟ ଗଦ୍ୟ ଓ ପଦ୍ୟ ପୁସ୍ତକମାନ ରଚନା କରି ଆଧୁନିକ ଓଡ଼ିଆ ଭାଷାର ଭିତ୍ତି ସ୍ଥାପନ କରିଥିଲେ । ୧୮୯୫ ମସିହାରେ ମଧ୍ୟପ୍ରଦେଶ ସରକାର ସମ୍ବଲପୁର ଜିଲ୍ଲାର ସ୍କୁଲ ଓ କଚେରୀରୁ ଓଡ଼ିଆ ଭାଷା ଉଠାଇ ଦେବାକୁ ଆଦେଶ ଦେଲେ । ଏହା ବିରୁଦ୍ଧରେ ସମଗ୍ର ଓଡ଼ିଆ ଭାଷୀମାନେ ସଙ୍ଗଠିତ ହୋଇ ଆନ୍ଦୋଳନ ଚଳେଇଥିଲେ ଏବଂ ଶେଷରେ ୧୯୦୫ ମସିହାରେ ମଧ୍ୟପ୍ରଦେଶ ସରକାର ବାଧ୍ୟ ହୋଇ ଏହି ଆଦେଶ ଉଠାଇ ନେଇଥିଲେ । ପରେ ପରେ ସମ୍ବଲପୁର ଜିଲ୍ଲାକୁ ଓଡ଼ିଶା ଡିଭିଜନ ସହିତ ମିଶାଇ ଦିଆଗଲା ।

ଓଡ଼ିଆ ଭାଷୀ ଅଞ୍ଚଳରେ ଓଡ଼ିଆ ଭାଷାକୁ ରକ୍ଷା କରିବା ପାଇଁ ଯେତେବେଳେ ଆନ୍ଦୋଳନ ଚାଲିଲା ସେହି ଅବସରରେ ଓଡ଼ିଆ ଭାଷୀମାନେ ସେମାନଙ୍କର ସମସ୍ୟା ସମାଧାନ ପାଇଁ ଏକ କେନ୍ଦ୍ରୀୟ ପ୍ରତିନିଧିମୂଳକ ଅନୁଷ୍ଠାନ ଗଠନର ଆବଶ୍ୟକତା ଉପଲବ୍ଧି କଲେ । କର୍ମବୀର ଗୌରୀଶଙ୍କର ରାଏ ପ୍ରଥମେ କଟକଠାରେ ୧୮୮୨ରେ ଉତ୍କଳ ସଭା ନାମରେ ଏକ ଅନୁଷ୍ଠାନ ଗଠନ କରି ଏ ଦିଗରେ ପ୍ରଥମ ଉଦ୍ୟମ କରିଥିଲେ । ଉତ୍କଳ ଗୌରବ ମଧୁସୂଦନ ଏହି ଅନୁଷ୍ଠାନରେ ଯୋଗଦେଲେ ଏବଂ ପରେ ତାଙ୍କ ନେତୃତ୍ୱରେ ଉତ୍କଳ ସଭା ପୁନର୍ଗଠିତ ହୋଇଥିଲା । ଏକ କେନ୍ଦ୍ର ଅନୁଷ୍ଠାନ ଗଠନରେ ଗଞ୍ଜାମ ଜିଲ୍ଲାବାସୀ ପ୍ରଥମେ ନେତୃତ୍ୱ ନେଇଥିଲେ । ସେ ସମୟରେ ଖଲ୍ଲିକୋଟ ରାଜା ବିଭିନ୍ନ ଓଡ଼ିଆ ଭାଷୀ ଅଞ୍ଚଳରେ ପ୍ରତିନିଧିଙ୍କୁ ଡକାଇ ରମ୍ଭାଠାରେ ଏ ସମ୍ପର୍କରେ ଆଲୋଚନା କରିଥିଲେ । ଶେଷରେ ଉତ୍କଳ ଗୌରବ ମଧୁସୂଦନ ଦାସ ୧୯୦୩ ମସିହାରେ କଟକଠାରେ ସମସ୍ତ ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଭାଷୀଙ୍କର ପ୍ରତିନିଧିଙ୍କୁ ନିମନ୍ତ୍ରଣ କରି ଏକ କେନ୍ଦ୍ରୀୟ ଅନୁଷ୍ଠାନ ଗଠନ କଲେ ଏବଂ ଏହିଠାରୁ ଉତ୍କଳ ସମ୍ମିଳନୀ ଜନ୍ମ ନେଲା । ସେ ବର୍ଷ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ସମଗ୍ର ଓଡ଼ିଆ ଭାଷୀ ଅଞ୍ଚଳକୁ ମିଶାଇ ଗୋଟିଏ ଉପ ପ୍ରଦେଶ (Division) ଗଠନ କରି ତାହା ଏକ ପ୍ରାଦେଶିକ ଶାସନର ଅନ୍ତର୍ଭୁକ୍ତ କରାଯିବା ପାଇଁ ପ୍ରସ୍ତାବ ଦିଆଯାଇଥିଲା ।

ତେଣୁ ଓଡ଼ିଆ ଭାଷା ଲୋପ ହେବାକୁ ଯିବାବେଳେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣ ଫଳରେ ଭାଷା ଆନ୍ଦୋଳନରୁ ହିଁ ଦେଶ ମିଶ୍ରଣ ଆନ୍ଦୋଳନ ଜନ୍ମ ଲାଭ କଲା ।(୨) ଏହି ଦେଶ ମିଶ୍ରଣ ଆନ୍ଦୋଳନ ହିଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନର ପ୍ରଥମ ବଳିଷ୍ଠ ପଦକ୍ଷେପ ।

ଉତ୍କଳ ଗୌରବ ମଧୁସୂଦନଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ଏକ ଗଣ ଆନ୍ଦୋଳନରେ ପରିଣତ ହେଲା । ବିଶେଷ ଭାବରେ ଓଡ଼ିଆ ଯୁବକ ଓ ବୁଦ୍ଧିଜୀବୀମାନେ ଏହି ଆନ୍ଦୋଳନ ପ୍ରତି ଅଧିକ ଆକୃଷ୍ଟ ହେଲେ । ସେତେବେଳେ ଉତ୍କଳ ସମ୍ମିଳନୀରେ ରାଜା ମହାରାଜା ଓ ଜମିଦାରଙ୍କ ଛଡ଼ା ଓଡ଼ିଶାର ବିଶିଷ୍ଟ ବୁଦ୍ଧିଜୀବୀମାନେ ଅଧକ୍ଷତା କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ବ୍ରଜସୁନ୍ଦର ଦାସ, ଚନ୍ଦ୍ରଶେଖର ବେହେରା, ଜଗବନ୍ଧୁ ସିଂହ, ଫକୀରମୋହନ ସେନାପତି ଏବଂ ମୟୂରଭଞ୍ଜ ମହାରାଜା, ପାରଳାଖେମୁଣ୍ଡି ମହାରାଜା, କନିକା, ବାମଣ୍ଡା, ତାଳଚେର ଏବଂ ମଞ୍ଜୁଷା ରାଜା ପ୍ରମୁଖ ଅଧକ୍ଷତା କରିଥିଲେ । ଉତ୍କଳ ସମ୍ମିଳନୀ ସମସ୍ତ ଓଡ଼ିଆ ଭାଷୀ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ, ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ତଥା ଓଡ଼ିଶାବାସୀଙ୍କ ଅର୍ଥନୈତିକ ଓ ସାଂସ୍କୃତିକ ଉନ୍ନତି ନିମନ୍ତେ ବ୍ରିଟିଶ୍ ସରକାରଙ୍କ ନିକଟରେ ବିଭିନ୍ନ ଦାବୀ ଉପସ୍ଥାପିତ କରିଥିଲେ ଓ ବିଭିନ୍ନ ସମୟରେ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କୁ ଏ ସମ୍ପର୍କରେ ସ୍ମାରକପତ୍ର ଦେଇଥିଲେ ।

୧୯୦୫ରେ ଲର୍ଡ଼ କର୍ଜନଙ୍କ ଦୟାରୁ ସମ୍ବଲପୁର ଓଡ଼ିଶାରେ ମିଶିଲା ସତ କିନ୍ତୁ ମାନ୍ଦ୍ରାଜର ଗଭର୍ଣ୍ଣର ଲର୍ଡ଼ ଆମ୍ପଥିଲଙ୍କ ଓଡ଼ିଆ ବିରୋଧୀ ମନୋଭାବ ଯୋଗୁଁ ଗଞ୍ଜାମ ଓ ଦକ୍ଷିଣର ଅନ୍ୟାନ୍ୟ ଓଡ଼ିଆ ଅଞ୍ଚଳ ମାନ୍ଦ୍ରାଜ ସହିତ ସାମିଲ ହୋଇ ରହିଲା । ୧୯୧୨ ମସିହାରେ ବ୍ରିଟିଶ୍ ସରକାର ବିହାର–ଓଡ଼ିଶା ପ୍ରଦେଶ ଗଠନ କଥା ଘୋଷଣା କଲେ, ମାତ୍ର ଏଥିରେ ଓଡ଼ିଆମାନେ କୌଣସିମତେ ସନ୍ତୁଷ୍ଟ ହୋଇନଥିଲେ କାରଣ ପ୍ରଥମତଃ ଏହି ନୂତନ ପ୍ରଦେଶ ସହିତ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ତଥା ଅନ୍ୟାନ୍ୟ ବହୁ ଖଣ୍ଡିତ ଓଡ଼ିଆ ଭାଷୀ ଅଞ୍ଚଳ ମିଶି ନଥିଲା । ଦ୍ୱିତୀୟରେ ବିହାର ସହିତ ଓଡ଼ିଶାର କୌଣସି ସାମଞ୍ଜସ୍ୟ ନଥିଲା ଏବଂ ବିହାର ସହିତ ରହିଲେ ଓଡ଼ିଶାର ସ୍ୱାର୍ଥ କୌଣସିମତେ ନିରାପଦ ରହିପାରିବ ନାହିଁ ବୋଲି ଓଡ଼ିଶାବାସୀ ଅନୁଭବ କରୁଥିଲେ ।

ଏହାର ତୀବ୍ର ବିରୋଧ କରି ଗଞ୍ଜାମର ଲୋକେ ଲର୍ଡ଼ ହାର୍ଡ଼ିଞ୍ଜଙ୍କୁ ଏକ ମାନପତ୍ର ଅର୍ପଣ କଲେ । କିନ୍ତୁ କୌଣସି ଫଳ ହେଲାନାହିଁ । ସେଥିରେ ନିରୁତ୍ସାହିତ ନହୋଇ ସେମାନେ ଗଞ୍ଜାମ ଓ କୋରାପୁଟ ଅଞ୍ଚଳକୁ 'ଦକ୍ଷିଣ ଓଡ଼ିଶା' ନାମରେ ନାମିତ କଲେ ଓ 'ଦକ୍ଷିଣ ଓଡ଼ିଶା ସାହିତ୍ୟ ସମାଜ' ନାମରେ ଗୋଟିଏ ଅନୁଷ୍ଠାନ ପ୍ରତିଷ୍ଠା କଲେ ।(୩)

୧୯୧୩ ମସିହାରେ ମାନ୍ଦ୍ରାଜ୍ ଗଭର୍ଣ୍ଣର ଲର୍ଡ଼ ପେଣ୍ଟଲ୍ୟାଣ୍ଡ ଗଞ୍ଜାମ ପରିଦର୍ଶନରେ ଆସିଥିଲା ବେଳେ ଗଞ୍ଜାମ ଓଡ଼ିଶାରେ ମିଶିବା ପାଇଁ 'ଗଞ୍ଜାମର ଲ୍ୟାଣ୍ଡ ହୋଲଡର୍ସ ଆସୋସିଏସନ୍' ଏ ଓଡ଼ିଆ ସମାଜ ପକ୍ଷରୁ ମାନପତ୍ର ବରହମ୍ପୁର ଓ ପାରଳାଖେମୁଣ୍ଡିଠାରେ ତାଙ୍କୁ ଅର୍ପଣ କରାଯାଇଥିଲା । ୧୯୧୪ ମସିହାରେ ଧରାକୋଟ ରାଜା ସାହେବ ଦେଶ ମିଶ୍ରଣ ପ୍ରସ୍ତାବ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲିରେ ଉତ୍ଥାପନ କରିଥିଲେ । ୧୯୧୬ ମସିହାରେ ଦ୍ୱିତୀୟ ଥର ପାଇଁ ମଧ୍ୟ ସେ ଅନୁରୂପ ପ୍ରସ୍ତାବ ଉତ୍ଥାପନ କରି ନିରାଶ ହୋଇଥିଲେ ।

ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ୧୯୧୪ ମସିହାରେ ପାରଳାଖେମୁଣ୍ଡିଠାରେ ପାରଳା ମହାରାଜାଙ୍କ ପୃଷ୍ଠପୋଷକତାରେ ଅନୁଷ୍ଠିତ ହେଲା । ସମ୍ମିଳନୀ ଆରମ୍ଭ ହେବା ଆଗରୁ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ପ୍ରସ୍ତାବ କଲେ ଯେ, ଦେଶ ମିଶ୍ରଣ ପାଇଁ ଆନ୍ଦୋଳନ ପରିବର୍ତ୍ତେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଦାବୀ ହେଉଛି ପ୍ରକୃଷ୍ଟ ପନ୍ଥା କିନ୍ତୁ ବୟୋଜ୍ୟେଷ୍ଠ ନେତା ମଧୁସୂଦନ ଦାସ ଏକ ସ୍ୱତନ୍ତ୍ର ପ୍ରଦେଶ ଗଢ଼ିବାକୁ ହେଲେ କେନ୍ଦ୍ର ସରକାର ସେଥିର ବ୍ୟୟବହୁଳ କାରଣ ଦର୍ଶାଇ ପ୍ରତ୍ୟାଖ୍ୟାନ କରିଦେବା ସମ୍ଭବ ହେବ ବୋଲି ଭାବି ଏ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ମାତ୍ର କୃଷ୍ଣଚନ୍ଦ୍ର ଗଜପତି ତାଙ୍କର ସନ୍ଦେହ ମୋଚନ କରିବାକୁ ଯାଇ କହିଲେ 'ବର୍ତ୍ତମାନ ବ୍ରିଟିଶ୍ ସରକାର ଜର୍ମାନ ଯୁଦ୍ଧ ହେତୁ ଆତୁର ଭାବେ ଆମମାନଙ୍କ ସହଯୋଗ ଓ ସହାନୁଭୂତି କାମନା କରୁଛନ୍ତି । ସୁ... ତାଡିଥିଲାବେଳେ ସେଥିରେ ପାହାର ଦେବା ଉଚିତ । ଏ... ଏତିକିବେଳେ ଆମେ ଯଦି ଏ ସୁଯୋଗଟି ହରାଇବା ତେବେ କଂଗ୍ରେସ୍ ପରି ଏକ ବିରାଟ ଅନୁଷ୍ଠାନର ବିରୋଧ ଭାବ ଯୋଗୁ ଓଡ଼ିଆ ଜାତି ଯେଉଁ ତିମିରେ ସେହି ତିମିରରେ ହିଁ ରହିଯିବେ' ।

ଯୁବକ ରାଜାଙ୍କ ଏ ଯୁକ୍ତି କାର୍ଯ୍ୟକାରୀ ସମିତିରେ ଅଧିକାଂଶ ସଭ୍ୟଙ୍କ ମନକୁ ପାଇଲା । ପଣ୍ଡିତ ଗୋପବନ୍ଧୁ ଦାସ, ଗୋଦାବରୀଶ ରଥ, ଧରାକୋଟ ଓ ମଞ୍ଜୁଷାର ରାଜାମାନେ, ଫକୀରମୋହନ ସେନାପତି, ସିଂହଭୂମ ଓ ସମ୍ବଲପୁରରୁ ସମାଗତ ପ୍ରତିନିଧିମାନେ, କଟକ ଓ ପୁରୀରୁ ଆସିଥିବା ବ୍ରଜସୁନ୍ଦର ଦାସ, ଜଗବନ୍ଧୁ ସିଂହ ପ୍ରଭୃତି ନେତାମାନଙ୍କ ସମର୍ଥନ ହେତୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସରକାରଙ୍କଠାରେ ଦାବୀ ଉପସ୍ଥାପନ କରିବା ନୀତି ଗୃହୀତ ହେଲା । ମଧୁବାବୁ ମଧ୍ୟ ଶେଷରେ ଏହି ନୀତିକୁ ସମର୍ଥନ କରିଥିଲେ ।

ବାସ୍ତବରେ, ଉତ୍କଳ ସମ୍ମିଳନୀର ସେହି ଅଧିବେଶନ (୧୯୧୪) ଓଡ଼ିଆଙ୍କ ପ୍ରାଣରେ ଦେଶ ମିଶ୍ରଣ ପାଇଁ କେବଳ ଯେ ନୂତନ ଆଶା ଓ ଆକାଂକ୍ଷା ସୃଷ୍ଟି କଲା ତାହା ନୁହେଁ, ବରଂ ତାହା ଏକ ନୂତନ ଜାତୀୟ ପ୍ରେରଣା ମଧ୍ୟ ସୃଷ୍ଟି କଲା ।(୪)

୧୯୧୭ ସାଲଠାରୁ ୧୯୨୮ ସାଲ ମଧ୍ୟରେ ଭାରତରେ ତଥା ଉତ୍କଳ ପ୍ରଦେଶ ଗଠନ ସମ୍ପର୍କରେ କେତେକ ନାଟକୀୟ ପରିବର୍ତ୍ତନ ଘଟିଥିଲା । ବିଶ୍ୱଯୁଦ୍ଧ ପରେ ବ୍ରିଟିଶ୍ ସରକାରଙ୍କ ପକ୍ଷରୁ ଭାରତରେ ଏକ ନୂତନ ସମ୍ବିଧାନ ଗଢ଼ିବା ଆବଶ୍ୟକ ବୋଧ ହେବାରୁ ସେ ବିଷୟରେ ଭାରତୀୟ ନେତା ଓ ଲୋକଙ୍କ ସଙ୍ଗେ ପରାମର୍ଶ କରି ଏକ ରିପୋର୍ଟ ଦେବା ପାଇଁ ୧୯୧୭ ମସିହାରେ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ଇ: ଏସ୍: ମଣ୍ଟେଗ୍‌ଙ୍କ ଅଧକ୍ଷତାରେ ଗୋଟିଏ କମିଟି ଗଠିତ ହେଲା । ସେହି କମିଟିକୁ ଉତ୍କଳ ସମ୍ମିଳନୀ ପକ୍ଷରୁ ଗୋଟିଏ ସ୍ମାରକପତ୍ର କଲିକତାଠାରେ ମଧୁସୂଦନ ଦାସଙ୍କ ଅଧକ୍ଷତାରେ ଓଡ଼ିଆ ଭାଷାଭାଷୀ ସମସ୍ତ ଅଞ୍ଚଳ, ଯାହାକି ମାନ୍ଦ୍ରାଜ, ବଙ୍ଗଳା,

ମଧ୍ୟପ୍ରଦେଶ ଓ ବିହାର ପ୍ରଦେଶମାନଙ୍କରେ ବିଚ୍ଛିନ୍ନ ହୋଇ ରହିଛି, ସେ ସମସ୍ତ ଏକତ୍ରିତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ସୁପାରିଶ କରାଯାଇଥିଲା । ଯଦି ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ସମ୍ଭବ ନହୁଏ, ତେବେ ସେ ଅଞ୍ଚଳଗୁଡ଼ିକ ଏକତ୍ରିତ କରି ତାହା ବିହାରର ଏକ ଉପ ପ୍ରଦେଶ ରୂପେ ସ୍ଥାପନ କରିବା ପାଇଁ ପ୍ରସ୍ତାବ ଦିଆଯାଇଥିଲା । ସ୍ମାରକପତ୍ରର ଦ୍ୱିତୀୟ ଅଂଶଟିର ବିରୋଧରେ ଗଜପତି କୃଷ୍ଣଚନ୍ଦ୍ର ଦେବ ସେଥିରୁ ଅଲଗା ହୋଇ ରହିଲେ ।

ମଣ୍ଟେଗୁ ଏବଂ ଲର୍ଡ ଚେମସ୍‌ଫୋର୍ଡ଼ଙ୍କଠାରେ ଏହି ପ୍ରସ୍ତାବଟି ଦିଆଗଲା ପରେ ତାଙ୍କ ସୁପାରିଶ ଅନୁସାରେ ଭାରତରେ ଭାଷା ଭିତ୍ତିକ ପ୍ରଦେଶଗୁଡ଼ିକର ପୁନର୍ଗଠନ କରିବା ଆବଶ୍ୟକ ବୋଲି ଉକ୍ତ କମିଟି ପକ୍ଷରୁ ଏକ ରିପୋର୍ଟ ବ୍ରିଟିଶ୍ ସରକାରଙ୍କୁ ଦିଆଗଲା । ଏଥି 'ଉତ୍କଳ ସମ୍ମିଳନୀ'ରେ ଆଶା ଓ ଆନନ୍ଦ ଖେଳିଗଲା । କିନ୍ତୁ ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକ ଏକତ୍ରିତ କରି ବିହାରକୁ ଛାଡ଼ିଦେବା ବିରୁଦ୍ଧରେ ଅନ୍ୟ ଭାଷାଭାଷୀମାନେ ଆନ୍ଦୋଳନ ସୃଷ୍ଟି କଲେ । ମାନ୍ଦ୍ରାଜ ସରକାର ତାଙ୍କ ଅଞ୍ଚଳକୁ କୌଣସି ଅଂଶ ଛାଡ଼ିବାକୁ ସ୍ୱୀକୃତି ଦେଲେନାହିଁ ।

୧୯୨୦ରୁ ବିଭିନ୍ନ ପ୍ରାଦେଶିକ ବିଧାନ ସଭାରେ ଓଡ଼ିଶା ସମସ୍ୟା ଆଲୋଚନା ହେବା ଫଳରେ ବିହାର ଓଡ଼ିଶା ପ୍ରାଦେଶିକ ସରକାରଙ୍କ ପକ୍ଷରୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ସପକ୍ଷରେ ମତ ପାଇଲେ ସୁଦ୍ଧା ମାନ୍ଦ୍ରାଜ ସରକାର ସେଥିରେ ଘୋର ପ୍ରତିବନ୍ଧକ ସୃଷ୍ଟି କରିବାକୁ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ମଧ୍ୟପ୍ରଦେଶ ସରକାର ଏ ବିଷୟରେ ଓଡ଼ିଆ ଭାଷା ଅଞ୍ଚଳ ଲୋକଙ୍କର ମତାମତ ଏବଂ ଅନ୍ୟ ଆନୁଷଙ୍ଗିକ ବିଷୟଗୁଡ଼ିକ ଅନୁସନ୍ଧାନ କରିବା ପାଇଁ ମତ ଦେଲାବେଳେ ବଙ୍ଗଳା ସରକାର ତାଙ୍କ ପ୍ରଦେଶରୁ କୌଣସି ଅଞ୍ଚଳ କାଟି ନେଇ ତାକୁ ଅଧିକ ଖର୍ବ କରିବା ବିରୁଦ୍ଧରେ ମତ ଦେଲେ ।

ପ୍ରାଦେଶିକ ସରକାରଙ୍କଠାରୁ ଏଭଳି ଭିନ୍ନଭିନ୍ନ ମତ ପ୍ରକାଶିତ ହେବା ଫଳରେ କେନ୍ଦ୍ର ସରକାର ୧୯୨୪ ସାଲରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ବିଷୟରେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିଲେ ନାହିଁ ।

ମାନ୍ଦ୍ରାଜରେ ଓଡ଼ିଆ ଲୋକଙ୍କଠାରୁ ମତାମତ ସଂଗ୍ରହ କରି ରିପୋର୍ଟ ଦେବା ପାଇଁ ଦୁଇଜଣ ଆଇ: ସି: ଏସ୍: (ଫିଲିପ୍-ଡଫ୍) ନିଯୁକ୍ତ କରି ଗୋଟିଏ ଅନୁସନ୍ଧାନ କମିଟି ଗଠିତ ହେଲା ଫିଲିପ୍-ଡଫ୍ କମିଟି ବିଶାଖାପାଟଣା ଓ ଗଞ୍ଜାମ ଉଭୟ ଜିଲ୍ଲାର ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳରେ ଗସ୍ତ କରି ସେଠାରେ ଜମିଦାର ଓ ଲୋକଙ୍କଠାରୁ ମତାମତ ସଂଗ୍ରହ କରିଥିଲେ । ସେ କମିଟି ପକ୍ଷରୁ କେନ୍ଦ୍ର ସରକାରଙ୍କ ପକ୍ଷରୁ ଯେଉଁ ରିପୋର୍ଟ ଦିଆଗଲା ତାହା ଓଡ଼ିଶା ପ୍ରଦେଶ ଗଠନ ପକ୍ଷରେ ଅନୁକୂଳ ହୋଇଥିବାରୁ ଓଡ଼ିଆଙ୍କ ମନରେ ଯଥେଷ୍ଟ ଆଶା ସଞ୍ଚାରିତ ହେଲା । ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ଅନୁସନ୍ଧାନ କମିଟି ସମ୍ମୁଖରେ ମିଶ୍ରଣ ସପକ୍ଷରେ ଯେଉଁ ଅନୁକୂଳ ମତ ଦେଇଥିଲେ ତାହା ଫିଲିପ୍‌ଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

୧୯୧୯ ମସିହାରେ ମଣ୍ଟେଗୁ-ଚେମସ୍‌ଫୋର୍ଡ଼ଙ୍କ ସୁପାରିଶକୁ ଭିତ୍ତିକରି ଭାରତରେ ଯେଉଁ ଶାସନ ସଂସ୍କାର କରାଯାଇଥିଲା, ତାହା ଜାତୀୟବାଦୀ କଂଗ୍ରେସ ଦ୍ୱାରା ପୁରାପୁରି ଭାବେ ପ୍ରତ୍ୟାଖ୍ୟାନ ହେବାରୁ ବ୍ରିଟିଶ୍ ସରକାର ତାହା ପ୍ରବର୍ତ୍ତନ ହେବା ସମ୍ଭବ ନୁହେଁ ଭାବି ଶାସନ ପଦ୍ଧତିର ପୁନଃ ସଂଶୋଧନ ପାଇଁ ୧୯୨୭ ସାଲ ନଭେମ୍ବର ମାସରେ ସାଇମନ୍ କମିଶନ୍‌ଙ୍କୁ ନିଯୁକ୍ତ କଲେ । ସେଥିରେ କୌଣସି ଭାରତୀୟଙ୍କୁ ଗ୍ରହଣ କରାଯାଇ ନଥିବାରୁ କଂଗ୍ରେସ ପକ୍ଷରୁ ତାହା ମଧ୍ୟ ବର୍ଜିତ ହେଲା । ଭାରତର ପ୍ରାୟ ପ୍ରତ୍ୟେକ ପ୍ରଦେଶରେ ସାଇମନ୍ ଫେରିଯାଅ ବୋଲି ଧ୍ୱନୀ ସଙ୍ଗେ କଳା ପତାକା ପ୍ରଦର୍ଶିତ ହେଲା ମାତ୍ର ଓଡ଼ିଆମାନେ କମିଶନ୍‌ଙ୍କୁ ସମ୍ପୂର୍ଣ୍ଣ ରୂପେ ବର୍ଜନ କରିବା ନୀତି ଗ୍ରହଣ କଲେ ନାହିଁ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓ ବ୍ରହ୍ମପୁରର ଓକିଲ ଭୁବନେଶ୍ୱର ରଥ ମାନ୍ଦ୍ରାଜଠାରେ ପ୍ରଥମେ ସାଇମନ୍‌ଙ୍କୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ସ୍ମାରକପତ୍ର ଦେଇ ଓଡ଼ିଆଙ୍କ ଦୁଃଖ ବୁଝାଇଥିଲେ । ମହାରାଜାଙ୍କ ନିର୍ଦ୍ଦେଶ ଅନୁସାରେ ଓଡ଼ିଆଙ୍କ ପକ୍ଷରୁ ଏକ ପ୍ରତିନିଧି ଦଳ ସାଇମନ୍‌ଙ୍କୁ ପାଟଣାଠାରେ ସ୍ମାରକପତ୍ର ଦେଇ ବ୍ରିଟିଶ୍ ସରକାରଙ୍କଠାରୁ ଓଡ଼ିଆଙ୍କ ଦାବୀର ସମର୍ଥନ ପାଇଁ ଅନୁରୋଧ କଲେ । ଏହି ସ୍ମାରକପତ୍ର କମିଶନ୍‌ଙ୍କ ପକ୍ଷରେ ଏକ ବିଚାର୍ଯ୍ୟ ବିଷୟ ଭାବରେ ଗୃହୀତ ହେଲା । ୧୯୩୦ ମସିହାରେ ସାଇମନ୍ କମିଶନ୍‌ଙ୍କ ଦ୍ୱାରା ପ୍ରକାଶିତ ରିପୋର୍ଟରେ ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ତୁରନ୍ତ ଧ୍ୟାନ ଦେବାର ଆବଶ୍ୟକତା ଅଛି ବୋଲି ସୁପାରିଶ କରାଗଲା ।

ସେ ବର୍ଷ ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ମାନ୍ଦ୍ରାଜର ବିଧାନ ସଭାକୁ ବହୁ ସଂଖ୍ୟକ ଭୋଟରେ ଗଞ୍ଜାମରୁ ନିର୍ବାଚିତ ହେଲେ । ସାଇମନ୍ ରିପୋର୍ଟ ବ୍ରିଟିଶ୍ ସରକାରଙ୍କଠାରେ ପେଶ୍ କରାଯିବା ପରେ ସରକାର ପରବର୍ତ୍ତୀ ପଦକ୍ଷେପ ନେବା ନିମନ୍ତେ ଭାରତର ଶାସନ ସଂସ୍କାରର ଚିକିନିଖି ବିଚାର ପାଇଁ ୧୯୩୦ ସାଲରେ ବିଶିଷ୍ଟ ହିନ୍ଦୁ ଓ ମୁସଲମାନ ସଭ୍ୟମାନଙ୍କୁ ନେଇ ଲଣ୍ଡନଠାରେ ଗୋଲ୍‌ଟେବୁଲ୍ ବୈଠକ ଡାକିଲେ । ବିହାର-ଓଡ଼ିଶା ସରକାରଙ୍କ ସୁପାରିଶକୁ ଭିତ୍ତିକରି ଓଡ଼ିଆଙ୍କ ପ୍ରତିନିଧି ରୂପେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସେଥିରେ ସଭ୍ୟ ରୂପେ ମନୋନୀତ କରାଗଲା । ମହାରାଜା ସେହି ବୈଠକରେ ସମସ୍ତ ଓଡ଼ିଆ ଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବୀକୁ ଦୃଢ଼ ଓ ଯୁକ୍ତିଯୁକ୍ତ ଭାବରେ ଉପସ୍ଥାପନ କରିଥିଲେ । ଗଜପତିଙ୍କର ଦାବୀକୁ ବ୍ରିଟିଶ୍ ସରକାର ସହାନୁଭୂତି ସହିତ ବିଚାର କରି ପ୍ରସ୍ତାବିତ ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ସାର୍ ସାମୁଏଲ୍ ଓଡନେଲ୍‌ଙ୍କ ଅଧ୍ୟକ୍ଷତାରେ ଏକ ସୀମା କମିଶନ୍ ନିଯୁକ୍ତ କଲେ । ଏହି କମିଶନ୍‌ରେ ପାରଳା ମହାରାଜା ଜଣେ ସଭ୍ୟ ଭାବରେ ନିଯୁକ୍ତି ପାଇଲେ ।

କମିଟି ଗଠନ ହେବାର ୪ ମାସ ପୂର୍ବରୁ ମହାରାଜା ଲଣ୍ଡନରୁ ସୀମା କମିଟି ବିଷୟ ସୂଚନା ଦେଇ ତଦନୁସାରେ ସ୍ମାରକପତ୍ର ପ୍ରସ୍ତୁତ କରିବା ପାଇଁ ନିର୍ଦ୍ଦେଶ ଦେବା ଫଳରେ ବିଭିନ୍ନ ପ୍ରଦେଶରେ ଥିବା ବିଚ୍ଛିନ୍ନାଞ୍ଚଳଗୁଡ଼ିକର ବିଷୟରେ ତଥ୍ୟ ସଂଗ୍ରହ କରାଯାଇ ସ୍ମାରକପତ୍ର ପ୍ରସ୍ତୁତ କରିବା ସମ୍ଭବ ହୋଇଥିଲା ଓ କମିଟି ଆଗରେ ଏ ସମସ୍ତ ତଥ୍ୟ ପ୍ରକାଶ କରିବା ସହଜ ହୋଇଥିଲା ।(୬) ମାତ୍ର ଏ ସମସ୍ତ ତଥ୍ୟ ପ୍ରକାଶ ଓ କମିଟିର ଦୁଇଜଣ ସଦସ୍ୟ (ଭାରତୀୟ

ସଦସ୍ୟ ଓ ସୁପାରିଶ ସତ୍ତ୍ୱେ କମିଟିର ଚେୟାରମ୍ୟାନ୍ ମାନ୍ଦ୍ରାଜ ସରକାରଙ୍କ ଆଇ: ସି: ଏସ୍: ଅଫିସର ଇଟସ୍ ସାହେବଙ୍କ ସାକ୍ଷ୍ୟ ଗ୍ରହଣ କରି ଓଡ଼ିଆଙ୍କ ସପକ୍ଷରେ ମତ ପ୍ରକାଶ କଲେ ନାହିଁ । ତେଣୁ ଚିକିଟିର ଦକ୍ଷିଣାଞ୍ଚଳରେ ଥିବା ମଞ୍ଜୁଷା, ତରଳା, ବୁଡ଼ାଗିସିଙ୍ଗି, ଟିକାବାଲି, ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀଗୁଡ଼ିକ ବିବାଦୀୟ ସ୍ତରରେ ରହିଗଲା ।(୭) ଗଞ୍ଜାମରୁ ସାକ୍ଷ୍ୟ ଗ୍ରହଣ ପରେ ସୀମା କମିଟି ବଙ୍ଗ ସହ ବିହାର ତଥା ମଧ୍ୟପ୍ରଦେଶରେ ରହିଥିବା ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକର ଓଡ଼ିଶାରେ ମିଶ୍ରଣ ପାଇଁ ଅନୁକୂଳ ମତ ଦେଲେ ନାହିଁ । ସୁତରାଂ ସରକାରଙ୍କ ତରଫରୁ ଶ୍ୱେତପତ୍ର ପ୍ରକାଶ ପାଇଲା ପରେ ଓଡ଼ିଆମାନେ ହତାଶ ହେଲେ ।

କମିଟିର ଅଧକ୍ଷଙ୍କ ଅବିଗ୍ଭର ହେତୁ ଓଡ଼ିଶା ପ୍ରଦେଶ ଏକ ତୃତୀୟାଂଶ ମାନ୍ଦ୍ରାଜରେ ଏବଂ ଏକ ଚତୁର୍ଥାଂଶ ବିହାରରେ, ମଧ୍ୟପ୍ରଦେଶରେ ଓ ବଙ୍ଗରେ ଛାଡ଼ିବାକୁ ପଡ଼ିବ ଏହା ଓଡ଼ିଆମାନଙ୍କ ପ୍ରାଣରେ ଘୋର ଆଘାତ ସୃଷ୍ଟି କଲା ।

ଅଗଷ୍ଟ ୧୯୩୨ରେ ବ୍ରହ୍ମପୁରରେ ଉତ୍କଳ ସମ୍ମିଳନୀରେ ଏକ ସ୍ୱତନ୍ତ୍ର ଅଧିବେଶନରେ ଓଡ଼ିଶାର ସୀମା ସମ୍ପର୍କରେ ଯେଉଁ ଅନ୍ୟାୟ ହୋଇଛି ତାହାର ଆଶୁ ସମାଧାନ ଦାବୀ କରିବା ପାଇଁ ଭାଇସ୍‌ରାଏ ଲର୍ଡ଼ ୱିଲିଂଡନ୍‌ଙ୍କୁ ପାରଳା ମହାରାଜାଙ୍କ ନେତୃତ୍ୱରେ ଏକ ଡେପୁଟେସନ୍ ପଠାଯିବାକୁ ଅନୁରୋଧ କରାଗଲା । ତା ୧୬-୯-୧୯୩୨ ରିଖ ଦିନ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଉତ୍କଳ ସମ୍ମିଳନୀ ପକ୍ଷରୁ ୧୪ ଜଣ ସଭ୍ୟ ଯାଇ ଶିମିଳାଠାରେ ଭାଇସ୍‌ରାଏ ଲର୍ଡ଼ ୱିଲିଂଡନ୍‌ଙ୍କୁ ସ୍ମାରକପତ୍ର ଦେଇ ଓଡ଼ିଆମାନଙ୍କ ଜାତୀୟତା ଓ ଏକତା ସୁରକ୍ଷା କରିବା ସକାଶେ ଅନୁରୋଧ କରିଥିଲେ । ଏହା ଫଳରେ ୱିଲିଂଡନ୍ ବ୍ରିଟିଶ୍ ସରକାରଙ୍କୁ ଏକ ଅନୁକୂଳ ଓ ସହାନୁଭୂତିପୂର୍ଣ୍ଣ ରିପୋର୍ଟ ଦେଇ ମାନ୍ଦ୍ରାଜର ଓଡ଼ିଆ ତେଲୁଗୁ ସୀମାସନ୍ଧି ସମ୍ବନ୍ଧରେ ପୁନର୍ବିଗ୍ଭର କରିବାକୁ ସୁପାରିଶ କରିଥିଲେ ।

ତା ୧୬-୩-୧୯୩୩ ରିଖରେ ସରକାରଙ୍କ ପକ୍ଷରୁ ପ୍ରକାଶିତ ଶ୍ୱେତପତ୍ରରେ ସ୍ୱତନ୍ତ୍ର 'ଓଡ଼ିଶାରୁ ଜୟପୁର ଓ ପାରଳାଖେମୁଣ୍ଡିକୁ ବାଦ ଦେଇ ଓଡୋନେଲ୍‌ଙ୍କ ସୁପାରିଶ ଅନୁସାରେ ସୀମା ନିରୂପଣ କରାଯାଇଥିବାରୁ ଓଡ଼ିଆମାନଙ୍କ ପକ୍ଷରୁ ସୀମା ଆନ୍ଦୋଳନ ଚରମ ସୀମାରେ ପହଞ୍ଚିଲା । ତା ୧୭-୨-୧୯୩୩ ରିଖ ଦିନ କଟକଠାରେ ଉତ୍କଳ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନରେ ମଧୁସୂଦନ ଦାସ ପାରଳା ମହାରାଜାଙ୍କ ବ୍ୟକ୍ତିଗତ ଉଦ୍ୟମରେ ଯାହା କିଛି ହୋଇଛି ତାହାକୁ ପ୍ରଶଂସା କରି ଯାହା ନହୋଇଛି ତାହା ତାଙ୍କରି ଉଦ୍ୟମରେ ହୋଇପାରିବ ବୋଲି ମତ ଦେବାରୁ, ମିଷ୍ଟର ଦାସଙ୍କଠାରୁ ପ୍ରେରଣା ପାଇ ମହାରାଜା ଦ୍ୱିତୀୟଥର ୧୯୩୩ ଏପ୍ରିଲ୍ ଶେଷରେ ଇଂଲଣ୍ଡ ଯାତ୍ରା କଲେ ।

ଲଣ୍ଡନରେ ଭାରତର ଶାସନ ସଂସ୍କାର ପାଇଁ ଯେଉଁ ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟି ଗଠିତ ହୋଇଥିଲା, ସେଥିରେ କେତେକ ସଂଶୋଧିତ ବିଷୟ ବିଗ୍ଭର କରିବାକୁ କେତୋଟି ସବ୍ କମିଟି ଗଢ଼ାଯାଇଥିଲା । ତନ୍ମଧ୍ୟରୁ ଓଡ଼ିଶାର ସୀମା ସମ୍ବ... ବିଗ୍ଭର କରିବାକୁ ଯେଉଁ ସବ୍ କମିଟି ଗଢ଼ାହେଲା ତା'ର ଅଧକ୍ଷ... ନିର୍ଦ୍ଦେଶ ଅନୁସାରେ ପାରଳା ମହାରାଜାଙ୍କ ଅଧ୍ୟକ୍ଷତାରେ ସେପ୍... ଜୁଲାଇ ମାସର ପ୍ରଥମ ସୋମବାର ଦିନ ସ୍ମାରକପତ୍ର ଦିଆଯାଇ... ପରବର୍ତ୍ତୀ ସୋମବାରରେ ତେଲୁଗୁମାନଙ୍କଠାରୁ ସ୍ମାରକପତ୍ର ଗ୍ରହଣ କରାଯାଇ ଏବଂ ଉଭୟଙ୍କଠାରୁ ଯୁକ୍ତି ଶୁଣି ତାପରେ ସୀମା ବିବାଦର ଏକ ପ୍ରକାର ମୀମାଂସା କରାଗଲା । ଓଡ଼ିଶାର ସୀମା ବିବାଦର ଏକ ପ୍ରକାର ମୀମାଂସା ହୋଇଗଲା ପରେ ଅକ୍ଟୋବର ମାସ ୧୯୩୩ରେ ସାର୍ ଜନ୍ ହବବ୍ୟାକଙ୍କ ନେତୃତ୍ୱରେ Orissa Administrative Committee ଗଠିତ ହେଲା । ନୂତନ ପ୍ରଦେଶର ପ୍ରଶାସନିକ ସମସ୍ୟାଗୁଡ଼ିକର ସିଦ୍ଧାନ୍ତ ଗୃହୀତ ହେଲା । ୧୯୩୬ ଏପ୍ରିଲ୍ ପହିଲା ଦିନ ଓଡ଼ିଶାର ପ୍ରଥମ ରାଜ୍ୟପାଳ ସାର୍ ଜନ୍ ହବ୍‌ବାକ କଟକ ରେଭେନ୍‌ସା କଲେଜ ହଲ୍‌ରେ ଶପଥ ଗ୍ରହଣ କରିଥିଲେ । ଓଡ଼ିଶା ପ୍ରଦେଶଟି ଛ'ଗୋଟି ଜିଲ୍ଲା ଯଥା—କୋରାପୁଟ, ଗଞ୍ଜାମ, ପୁରୀ, କଟକ, ବାଲେଶ୍ୱର ଓ ସମ୍ବଲପୁରକୁ ନେଇ ଗଠିତ ହେଲା । ସେଠାରେ ପ୍ରଥମ ରାଜଧାନୀ ହେଲା କଟକ । ସେହି ସମୟରେ ନୂତନ ଓଡ଼ିଶା ପ୍ରଦେଶର ଆକାର ୩୨,୬୯୫ ବର୍ଗ ମାଇଲ ହେବ ବୋଲି ସ୍ଥିର କରାଯାଇଥିଲା ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ପରେ ଗଭର୍ଣ୍ଣମେଣ୍ଟ୍ ଅଫ୍ ଇଣ୍ଡିଆ ଆକ୍ଟ, ୧୯୩୫ ଅନୁସାରେ ୧୯୩୭ ମସିହା ରେ ପ୍ରାଦେଶିକ ସ୍ତରରେ ବିଧାନ ସଭା ପାଇଁ ନିର୍ବାଚନ କରାଗଲା । ଓଡ଼ିଶାରେ ତଦନୁସାରେ ୧୯୩୭ ମସିହା ଜାନୁଆରୀ ୧୮ ତାରିଖରେ ନିର୍ବାଚନ ହେଲା । ସେହି ମାସ ୨୩ ତାରିଖ ଦିନ କଂଗ୍ରେସ ୬୦ ଆସନରୁ ୩୬ଟି ଆସନ ଲାଭ କରି ନିରଙ୍କୁଶ ସଂଖ୍ୟା ଗରିଷ୍ଠ ଦଳ ଭାବରେ ଶାସନ କରିବାକୁ କ୍ଷମତାହାସଲ କଲା । ଏହି ଦଳର ଶ୍ରୀ ବିଶ୍ୱନାଥ ଦାସ ନେତା ଭାବରେ ନିର୍ବାଚିତ ହେଲେ । ମାତ୍ର କଂଗ୍ରେସ ଦଳ ଇଂରେଜ ଶାସକମାନଙ୍କଠାରୁ କୌଣସି ହସ୍ତକ୍ଷେପ ନଥାଇ ଶାସନ କରିବାର ପ୍ରତିଶ୍ରୁତି ମାଗିଲା । ଏଭଳି ପ୍ରତିଶ୍ରୁତି ନମିଳିବାରୁ କଂଗ୍ରେସ ଦଳ ଶାସନ କରିବାକୁ ମନା କରିଦେଲା । କଂଗ୍ରେସ ସହିତ ଏହି ରାଜିନାମାରେ ସଫଳ ନହୋଇ ଗଭର୍ଣ୍ଣର ମହୋଦୟ କୌଣସିମତେ ଲୋକ ପ୍ରତିନିଧିମୂଳକ ଶାସନ ପ୍ରତିଷ୍ଠା କରିବା ପାଇଁ ପାରଳା ମହାରାଜାଙ୍କୁ ମନ୍ତ୍ରୀମଣ୍ଡଳ ଗଠନ କରିବା ପାଇଁ ପ୍ରବର୍ତ୍ତାଇ ପାରିଥିଲେ । ଫଳରେ ୧୯୩୭ ମସିହା ଏପ୍ରିଲ ପହିଲା ଦିନ ପାରଳା ମହାରାଜାଙ୍କ ଅଧ୍ୟକ୍ଷତାରେ ଏକ ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଏହି ମନ୍ତ୍ରୀମଣ୍ଡଳରେ ଅନ୍ୟ ଦୁଇଜଣ ମନ୍ତ୍ରୀ ଥିଲେ । ଏହି ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରୀମଣ୍ଡଳ ଜୁଲାଇ ୧୩ ତାରିଖ ପର୍ଯ୍ୟନ୍ତ କାର୍ଯ୍ୟ କଲା । ଇତିମଧ୍ୟରେ ବ୍ରିଟିଶ୍ ସରକାରଙ୍କଠାରୁ ଶାସନରେ ହସ୍ତକ୍ଷେପ ନକରିବାକୁ ପ୍ରତିଶ୍ରୁତି ମିଳିବାରୁ ୧୯୩୭ ମସିହା ଜୁଲାଇ ୧୯ ତାରିଖରେ ବିଶ୍ୱନାଥ ଦାସଙ୍କ ଅଧ୍ୟକ୍ଷତାରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଏହି ମନ୍ତ୍ରୀମଣ୍ଡଳରେ ୩ ଜଣ ସଦସ୍ୟ ଥିଲେ । ଏହି ମନ୍ତ୍ରୀମଣ୍ଡଳ ୨୮ ମାସ କାର୍ଯ୍ୟ କରିବା ପରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ନୀତିରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ ନକରିବାରୁ ତା'ର ପ୍ରତିବାଦରେ ୧୯୩୯ ମସିହା ନଭେମ୍ବର ୪ ତାରିଖରେ ଇସ୍ତଫା ଦେଲେ । ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବାରୁ

ଗଭର୍ଣ୍ଣର ନିଜ ହାତକୁ ଶାସନ ନେଲେ । ଯୁଦ୍ଧ ଯୋଗୁଁ ଗଭର୍ଣ୍ଣର ଏବଂ ତାଙ୍କୁ ସାହାଯ୍ୟ କରିବାକୁ କର୍ମଚାରୀମାନଙ୍କର ଦାୟିତ୍ୱ ବଢ଼ିଯିବାରୁ ସେମାନେ ପୁନର୍ବାର ପ୍ରତିନିଧିମାନଙ୍କ ଦ୍ୱାରା ଶାସନ ଚଳିବା ପାଇଁ ସାହାଯ୍ୟ ଲୋଡ଼ିଲେ । ଏହି ସମୟରେ ଅସନ୍ତୋଷ ଦଳ ରହିଥିବା ପଣ୍ଡିତ ଗୋଦାବରୀଶଙ୍କ ଉଦ୍ୟମରେ ବିରୋଧୀ ଦଳଙ୍କ ସହାୟତାରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କରିବା ପାଇଁ ଚେଷ୍ଟା ଚାଲିଲା । ଏ ବାବଦରେ ପଣ୍ଡିତ ଗୋଦାବରୀଶ ଖଲ୍ଲିକୋଟ ରାଜାଙ୍କ ସହିତ ମିଶି ଗଭର୍ଣ୍ଣରଙ୍କ ସହିତ ମନ୍ତ୍ରଣା କରି ମନ୍ତ୍ରୀମଣ୍ଡଳ ଗଠନ କରିବାରେ ସମର୍ଥ ହେଲେ । ଫଳରେ ଏକ ମିଳିତ ମନ୍ତ୍ରୀମଣ୍ଡଳ ପୁନର୍ବାର ପାରଳା ଗଜପତିଙ୍କ ଅଧକ୍ଷତାରେ ପଣ୍ଡିତ ଗୋଦାବରୀଶ ଓ ମୌଲବୀ ଅବ୍ଦୁସ୍ ଶୋଭବନ ଖାଁ ମନ୍ତ୍ରୀ ଭାବେ ଗଠିତ ହେଲା । ଏହି ମିଳିତ ମନ୍ତ୍ରୀମଣ୍ଡଳ ସଂଖ୍ୟା ଗରିଷ୍ଠତା ହାସଲ କରିନଥିଲେ ମଧ୍ୟ ସେ ସମୟରେ କଂଗ୍ରେସର ଅନେକ ସଦସ୍ୟ ଜେଲ୍‌ରେ ଥିବାରୁ କୌଣସି ଅନାସ୍ଥା ପ୍ରସ୍ତାବ ଅଣାନଯାଇ ଦେଢ଼ ବର୍ଷ କାଳ ଶାସନ କରିପାରିଥିଲା । ଏହି ମନ୍ତ୍ରୀମଣ୍ଡଳ ସେ ସମୟରେ ୧୯୪୩ ମସିହା ନଭେମ୍ବର ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା ।(୮) ବର୍ତ୍ତମାନ ଶ୍ରୀରାମଚନ୍ଦ୍ର ଭଞ୍ଜ ଭେଷଜ ମହାବିଦ୍ୟାଳୟ ରୂପେ ଓଡ଼ିଶା ମେଡ଼ିକାଲ କଲେଜ ସମେତ କେତୋଟି ସରକାରୀ କଲେଜ ମଧ୍ୟ ପ୍ରତିଷ୍ଠା ହୋଇଥିଲା । ଏହି ମିଳିତ ମନ୍ତ୍ରୀମଣ୍ଡଳ ୧୯୪୪ ମସିହା ଜୁନ୍ ୨୯ ତାରିଖ ପର୍ଯ୍ୟନ୍ତ ଚାଲିବା ପରେ ଭାରତର ଜାତୀୟ ଆନ୍ଦୋଳନ ପରିପ୍ରେକ୍ଷୀରେ ସେ ତାଙ୍କର କାର୍ଯ୍ୟକାରିତାକୁ ଚାଲୁ ରଖିବାକୁ ସମର୍ଥ ନହେବାରୁ ୧୯୪୪ ମସିହା ଜୁନ୍ ୩୦ ତାରିଖରେ ପୁନର୍ବାର ଶାସନ ଗଭର୍ଣ୍ଣରଙ୍କ ହାତକୁ ଚାଲିଗଲା । ମନ୍ତ୍ରୀ ପଦରୁ ଇସ୍ତଫା ଦେବା ପୂର୍ବରୁ କଟକର ବିଦ୍ୟାଧରପୁର ଫାର୍ମକୁ କେନ୍ଦ୍ର ସରକାରଙ୍କୁ ଦେଇ ସେଥିରେ ଏକ କୃଷି ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରାଇଥିଲେ । କୃଷିର ଉନ୍ନତିରେ ହିଁ ଓଡ଼ିଶାର ଉନ୍ନତି, ଏହି ଧାରଣାରେ ୧୯୨୬ ମସିହାରେ ଗଠିତ ହୋଇଥିବା Royal Agricultural Commissionର ସଭ୍ୟ ରୂପେ ଥାଇ ବିଭିନ୍ନ ସ୍ଥାନ ଭ୍ରମଣ କରି ବୁଝିବାରୁ ଓଡ଼ିଶାରେ କୃଷି ଓ ପଶୁ ପାଳନର ଉନ୍ନତି ପାଇଁ ଯଥାସାଧ୍ୟ ଚେଷ୍ଟା କରିଥିଲେ । କୃଷି ବିଜ୍ଞାନରେ ଉଚ୍ଚ ଶିକ୍ଷା ପାଇବା ପାଇଁ ସେ କେତେକ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ ଦେଇ ବିଦେଶକୁ ପଠାଇଥିଲେ ।(୯)

ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଧନ କିମ୍ବା ପ୍ରଭୁତ୍ୱ ଆଶାରେ ଓଡ଼ିଶାର ମନ୍ତ୍ରୀତ୍ୱ ଗ୍ରହଣ କରିନଥିଲେ । ସେ ତାଙ୍କ ନିଜ ଇଷ୍ଟେଟ୍‌ରୁ ଓଡ଼ିଶା ଓ ଓଡ଼ିଆଙ୍କ ମଙ୍ଗଳ ପାଇଁ ଯେପରି ଅକାତର ଭାବେ ଧନ ବ୍ୟୟ କରୁଥିଲେ ସେପରି ନିଜର ଓ ନିଜ ପରିବାରର ମଧ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଧ୍ୟାନ ମଧ୍ୟ ଦେଉନଥିଲେ । ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ, ପୁନର୍ବାର ତୃତୀୟ ମନ୍ତ୍ରୀ ମଣ୍ଡଳର ପୁନର୍ବାର ପ୍ରଧାନମନ୍ତ୍ରୀ ରୂପେ ଯୋଗଦେଇ ଦକ୍ଷତାର ସହିତ ଓଡ଼ିଆ ଜାତି, ଭାଷା, ସାହିତ୍ୟ ଓ ସଂସ୍କୃତି ତଥା ଇତିହାସର ସମୃଦ୍ଧି ନିମନ୍ତେ ପ୍ରାଣୋତ୍ସର୍ଗ କରି ଅମର ଓ ଅବିସ୍ମରଣୀୟ ହୋଇ ରହିଛନ୍ତି । ବିଭିନ୍ନ ପ୍ରକାର ପ୍ରତିବନ୍ଧକ ସତ୍ତ୍ୱେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କ ବ୍ୟକ୍ତିତ୍ୱ, ସାଙ୍ଗଠନିକ ନେତୃତ୍ୱ, ପରାକାଷ୍ଠା ଓ ଜାତୀୟ ମମତା ତଥା ଜାତୀୟତାର ସୁରକ୍ଷା ବାସ୍ତବିକ୍ ଏ କ୍ଷେତ୍ରରେ ଉଲ୍ଲେଖନୀୟ ଓ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ୧୯୪୪ ମସିହା ପରେ ସେ ଓଡ଼ିଶା ରାଜନୀତିରେ ଆଉ କୌଣସି ଭୂମିକା ଗ୍ରହଣ କରିନଥିଲେ । ୧୯୩୭ରୁ ୧୯୩୯ ଡିସେମ୍ବର ପର୍ଯ୍ୟନ୍ତ ସେ ବିଧାନ ସଭାରେ ବିରୋଧୀ ଦଳର ନେତା ଥିଲେ ମଧ୍ୟ ବିଧାନ ସଭାକୁ ଆସୁନଥିଲେ । ସେ ଜଣେ ଦେଶପ୍ରେମୀ ଏବଂ ଉତ୍କଳ ପ୍ରେମୀ ହିସାବରେ ତାଙ୍କର ଦେଶ ଗଠନରେ ଉତ୍କଳତର ଭୂମିକା ପ୍ରଦର୍ଶନ କରିଅଛନ୍ତି । ଏଥିପାଇଁ ତାଙ୍କର ସ୍ୱାର୍ଥତ୍ୟାଗ ଏହି ଅବସରରେ ଓଡ଼ିଆ ଜାତି ମନେ ପକାଇ ପାରିଲେ ତାଙ୍କ ପାଇଁ ଶ୍ରେଷ୍ଠ ସମ୍ମାନ ହେବ । ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଓଡ଼ିଆ ଜାତି ପୁଣି ମଧୁବାବୁଙ୍କର ସେହି ଉକ୍ତିକୁ ମନେ ପକାଇ ଦେଶ ଓ ଦଶର ଉନ୍ନତିରେ ବ୍ରତୀ ହେଲେ ଏହା ହିଁ ଜଗନ୍ନାଥଙ୍କ ନିକଟରେ କାମନା ଯଥା–

ଜାତି ନନ୍ଦିଘୋଷ ଚଳିବକି ଭାଇ
ସ୍ୱାର୍ଥକୁ ସାରଥି କଲେ,
ଟାଣେ କିରେ ଘୋଡ଼ା ଦାନାର ଥୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ।
"ବନ୍ଦେ ଉତ୍କଳ ଜନନୀ"

---

*ଅଧ୍ୟାପକ, ଅର୍ଥନୀତି, ପୁରୀ ।*

(୨) ଡକ୍ଟର ଶରତ ଚନ୍ଦ୍ର ପାଢ଼ୀ–ଉତ୍କଳ ପ୍ରସଙ୍ଗ, ସ୍ୱତନ୍ତ୍ର ଉତ୍କଳ ବିଶେଷାଙ୍କ, ୧୯୮୩, ପୃ: ୫୬ ।
(୩) ଗଜପତି ପତ୍ରିକା, ୧୯୮୯, ପୃ: ୪, ଡକ୍ଟର ଶରତ ଚନ୍ଦ୍ର ପାଢ଼ୀ, ପୃ: ୫୬ ।
(୪) Ibid, ପୃ: ୫୭ ।
(୫) ଗଜପତି ପତ୍ରିକା, ଓଡ଼ିଶା ପୂଜ୍ୟ ପୂଜା ସଂସଦ, ୧୯୮୯, ପୃ: ୨୫ ।
(୬) ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଉତ୍କଳ ପ୍ରସଙ୍ଗ, ସ୍ୱତନ୍ତ୍ର ଉତ୍କଳ ଦିବସ ବିଶେଷାଙ୍କ, ୧୯୮୩, ପୃ: ୯ ।
(୭) Opcit, ପୃ: ୧୧ ।
(୮) Opcit. 17
(୯) ଡକ୍ଟର ସତ୍ୟନାରାୟଣ ରାଜଗୁରୁ, Opcit. P. 72

# ସାକ୍ଷରତା

ହିମାଞ୍ଚଳ ସାହୁ

ଜ୍ଞାନର ମଶାଲ ଜାଳି
ତମସାର ବୁକୁ ଚିରି
ବୋହିଯିବ ସାକ୍ଷରତାର ବୈତରଣୀ
ନମାନି କୂଳ କିନାରା
ମିଶିବାକୁ ସତ୍ୟ ସଂଗମ ପୁଣ୍ୟ ତୀର୍ଥେ ।

ଆଗାମୀ ଯୁଗର ବୁଦ୍ଧିଜୀବି, ଶିକ୍ଷାବିତ୍
ସମାଜର ବଡ଼ପଣ୍ଡା ବୋଲାଉଥିବା
ସଜ୍ଜନ ମଣ୍ଡଳୀ ହାତେ
ସମର୍ପି ଦେଲି ସାକ୍ଷରତାର ଇସ୍ତାହାର ।

ଜନଶିକ୍ଷା ନିଳୟମ ଶିକ୍ଷାମନ୍ଦିର
ପ୍ରୟାସରେ ଗାଁଆଁରୁ ଗାଁଆଁକୁ
ପ୍ରସାରିଲାଣି ସାକ୍ଷରତାର ଲସ୍ପାହାତ
ଗାଁ ଗୁଟଶାଳୀ ବାରଣ୍ଡାରେ
ଶୁଭୁଥାଏ ପ୍ରୌଢ଼, ବୃଦ୍ଧ, ଯୁବା,
ଯୁବତୀର ବିଦ୍ୟାର ସ୍ୱରଲହରୀ ।

ସେମାନେତ ଏବେ ପାଠ ଶିଖିଲେଣି
ଅବଧାନଙ୍କର ହେଇ ଅସଲ ଗୁଟ
ହିସାବ ନିକାଶ, କିଲଟରୀ କଚେରୀ ମାମଲା,
ଗାଁ ମଜଲିସ,
ଭାଗବତ ଟୁଙ୍ଗି, ଗ୍ରାମ ଅଦାଲତ,
ସବୁଠି ତାଙ୍କର ମହିମା ପ୍ରଖର ।

ନାରୀର ମହତ ପଣିଆ କହିଲେ ନସରେ
ନାରୀଟିଏ ଶିକ୍ଷିତ ହେଲେ
ତା'ହାତରେ ଗଢ଼ି ହୋଲେ ଛୋଟ ପରିବାର-
ସୁଖି ପରିବାର ।

ସଭାପତି,
ଓଡ଼ିଶା ଗ୍ରାମାଞ୍ଚଳ ଲେଖକ ସଂସଦ,
କାଣ୍ଡେ , କାଣ୍ଡେଇ,–୭୬୬୦୨୫ ।

# ଶ୍ରମିକ

ଡାଃ ରାଜାରାମ ଷଡ଼ଙ୍ଗୀ

ଶ୍ରମିକରେ
ଦୁଃଖରେ ଭାଙ୍ଗି ପଡ଼ନାହିଁ
ଲୁହାର ମେରୁଦଣ୍ଡ ଧରି ।
ତୁମେ ସବୁ ଅଧୈର୍ଯ୍ୟ ହୁଅ ନାହିଁ
ମୋ ରାଜ୍ୟ କଳିଙ୍ଗ ରାଜା
ମହା ପ୍ରତାପି
ଲୌହ ମାନବ ସେ
ପ୍ରଗାଢ଼ ବିଶ୍ୱାସୀ
ବୁଢ଼ା ହେଲେବି
ମନରେ ଜବାନର ବଳ ।

ସର୍ବନିମ୍ନ ମଜୁରି ୨୫ ଟଙ୍କା
ମୋ ରାଜା ଦେଇଛି ତେବେ
କୃଷି ଋଣ ଛାଡ଼
ଚାଷ ପାଇଁ ସବୁତ ସୁବିଧା
ଚାଷୀ ଋଣ ସହ
ପୁଣି ମୋ ରାଜା
ସଂକଳ୍ପ ନେଇଛି
ତା' ଶ୍ରମିକ ଭାଇର ଗୁଜୁରାଣ ପାଇଁ
କଳିଙ୍ଗକୁ ସମୃଦ୍ଧି ଆଣିବାକୁ
ଗଢ଼ିଦେବ ମୋ ରାଜା
ମୋ ପରି ସବୁ ପ୍ରଜା ଓ ଶ୍ରମିକ ପାଇଁ
ଦ୍ୱିତୀୟ ଲୁହା କାରଖାନା
ମହା ଶ୍ରମିକ ହୋଇ ।

ପ୍ରାକୃତିକ ସମ୍ପଦରେ ଭରପୁର
ମୋ କଳିଙ୍ଗ ରାଜ୍ୟ
ରାଜାପରି ରାଜାଟିଏ ପାଇଛି
ରାଜାର ଆଦର୍ଶ ଦୃଢ଼ ସଂକଳ୍ପ
ଧୈର୍ଯ୍ୟ ଆଉ ସଂଗ୍ରାମର ସ୍ୱର
ତା' ପ୍ରଜା ମା', ମାଉସୀ ଓ ଶ୍ରମିକ ପାଇଁ
ଆଣିଦେବ ନୂତନ ସଂକଳ୍ପ
ନୂଆ ସମ୍ଭାବନା
ପ୍ରତିଟି ଆସନ୍ତାକାଲିରେ ।

---

*ମାର୍ଫତ : ପ୍ରମୋଦ କୁମାର ପଣ୍ଡା,*
*ସମ୍ପାଦକ :ଦୈନିକ ଆଶା, ବ୍ରହ୍ମପୁର ।*

# ଆମ ଜଙ୍ଗଲ

ପ୍ରଭାକର ନାୟକ

ବଇଶାଖ ମାସ ଧୂଧୂ ଖରା ଝିଡ଼ି ପଡ଼ୁଛି
ଦିହରୁ ବହୁଛି ଝାଳ ଗମ ଗମ
ବେଳକୁ ବେଳ ତାତି ବଢୁଛି ।

ଶନିଆ ପଧାନ ପାନ ଖାଉଥିଲେ ଦାଣ୍ଡ ଦୁଆରେ
ଦେଖିଲେ କିଏ ସେ ଛତାଟାଏ ଧରି
ଗଲିଛି ଏଇ ତହକ ନିଆଁରେ

ପଚାରିଲେ–ଆରେ ମହିଆ କିରେ !
ନୂଆଲୁଗା ପିନ୍ଧି କୁଆଡ଼େ ଯାଉଛୁ ଖରାବେଳରେ ?
ଏଠିକି ଆ
ଭଙ୍ଗାପାନ ଖଣ୍ଡେ ନେଇଯିବି ଯା
କ'ଣ ଏମିତି ଅଡ଼ୁଆ ପଡ଼ିଲା ମତେ ଟିକିଏ କହିକି ଯା ॥

ମହିଆ କହିଲା–ଜାଣିନୁ କି ତୁ ଶନିଆ ଦାଦି
ଏତେଦିନେ ଆମ ଆଖି ଖୋଲିଲା ଶିଖିଲୁ ବୁଦ୍ଧି
କଥାଟାଏ ଆମେ ଜାଣିଲୁ ଭଲ
ନିଜ ପାଇଁ ଆମ ଗାଁରେ କରିବୁ ଗୋଟେ ଜଙ୍ଗଲ ॥

–ହଉରେ ମହିଆ ! ହେଲୁକି ବୋକା
ତୁ କିସ ଜାଣିବୁ କାଲିର ଟୋକା
ଜଙ୍ଗଲଟା ନୁହେଁ ଆମ ହାତ କଥା
ଭଗବାନଙ୍କର ସୃଷ୍ଟି ଜାଣିଥା

କହିଲା ସେ– କ'ଣ ଜଙ୍ଗଲ କରିବୁ ଖରା ବେଳରେ ?
ମହିଆ କହିଲା–ନାଇଁମ ଦାଦି ମିଟିଙ୍ଗ ହବ ଇସ୍କୁଲ ଘରେ
ଆସିଛନ୍ତି ଆମ ଫରେଷ୍ଟ-ବାବୁ
ନିଜେ କେମିତି ଜଙ୍ଗଲ କରିବା ବୁଝେଇ ଆମକୁ କହିବେ ସବୁ
ଚାଲୁନୁ ଯିବା
କ'ଣ କ'ଣ କହିବେ ଟିକିଏ ଶୁଣି ଆସିବା ॥

ନାଇଁରେ ମହିଆ, ଫରେଷ୍ଟର ନାଁ ଧ'ନା ଆଉ
ସେଦିନର କଥା ମନେ ପଡ଼ିଗଲେ
ଛାତିଟା ମୋର ଉଠୁଚି ପଡୁଚି ଦାଉଁଦାଉଁ
ଯାଇଥିଲି ଦିନେ କାଠ ଆଣିବାକୁ ଜଙ୍ଗଲ ଆଡ଼େ
ଯୋଗକୁ ସେଦିନ ପଡ଼ିଗଲି ଫରେଷ୍ଟର ବାବୁଙ୍କ ହାତେ
ଛଡ଼େଇ ନେଲା ମୋ ନୂଆ କୁରାଢ଼ି
ପିଠିରେ ମୋର ବସେଇଲା ତା'ର ରୁଲ୍ ବାଡ଼ି ,
ବାପରେ ବାପ !
ମାଟିଆ ଡେସ୍କକୁ କଳିଆ ନିଶ
ଦେଖିଲେ ଛାତିରେ ପକାଏ ଛେପ ॥

–ବୁଝିଲୁ ଦାଦି
ତୁ ବୁଢ଼ା ହେଲୁ, ମୁଣ୍ଡଟା ବି ତୋ'ର ହେଲାଣି ଜଡ଼
କାଠ କରୁଥିଲୁ ଚୋରି ବୋଲି ସିଏ ପିଟିଲା ତତେ
ଯେତେ ଫରେଷ୍ଟର ବାବୁରୁ କ'ଣ ଏକା ସମତେ ?
ଚାଲ ଆଲେ ଯିବା
କ'ଣ କ'ଣ କହିବେ ଟିକିଏ ଶୁଣି ଆସିବା ।
କରିବା ଭଲ
ନିଜ ପାଇଁ ଆମ ନିଜ ଗାଁରେ ଗୋଟେ ଜଙ୍ଗଲ ॥

–ହଉ ଚାଲ ଆଲେ ।
ଦାଦି ପୁତୁରା ସାଙ୍ଗ ହୋଇକରି ସଭାକୁ ଗଲେ ॥

XXX XXX XXX

ବାବୁ ବୁଝେଇଲେ–ଗଛ ଆମର ଧନ ଜୀବନ
ଆମେ ଗଛକୁ ପାଳନ କରିଲେ
ଆମକୁ କରିବ ସିଏ ପାଳନ
ଶୁଣହେ ଭାଇ !
ଗଛଠାରୁ ବଡ ସମ୍ପଦ ନାହିଁ
ଗଛର ସୁରକ୍ଷା କରିବା ଆମର ମଙ୍ଗଳ ପାଇଁ ॥

–ଏରେ ମହିଆ !
କେଉଁରେ ଏଇ ବାବୁର ନାଁ ?
ମନରେ ଟିକିଏ ଗରବ ନାହିଁ
ଏତେ ବଡ଼ ବାବୁ ଆମପରିକା ମଳି ମୁଣ୍ଡିଆକୁ କହନ୍ତି
ଭାଇ ॥

"ମୁଁ ଜାଣିନି", ମହିଆ କହିଲା, "ସବୁ ଶୁଣୁଥା
କ'ଣ କ'ଣ କହୁ ସନ୍ତି ସବୁ ମନେ ରଖୁଥା ।"

–ଗଛ ଆମକୁ ଦିଏ କେତେ କେତେ ସୁସ୍ୱାଦୁ ଫଳ
ହେଲେ ଆମର ଉଗଇ ବଳ
ଗଛ ଦିଏ ବରଷା
ଗଛବିନା ବରଷାରେ ଜମା ନାହିଁ ଭରସା ॥

–ହଁରେ ମହିଆ ! ଯାହା କହୁସନ୍ତି ସତ କଥା
ଜଙ୍ଗଲରେ ଯେବେ ଭରପୁର ଥିଲା ଗଛଲତା,
ଖରାଦିନେ ଖରା ଥିଲା
ବର୍ଷାଦିନେ ବର୍ଷା ଥିଲା
ଯଥା ସମୟରେ ହେଉଥିଲା ସବୁ ଯଥା ଯଥା ।
ଏବେ ତ ସବୁ ଜଙ୍ଗଲକୁ କାଟି ସଫାକଲେ
ବରଷା ଦିନରେ ଜମି ଶୁଖିଲା
ଖରାଦିନରେ ବନ୍ୟା ହେଲା
ବନ୍ୟା ବାତ୍ୟା ମରୁଡ଼ିରେ ସବୁ ଲୋକ ମଲେ
ନିଜେ ନିଜର କାଳ ହେଲେ ॥

–

ବକ୍ତା କହିଲେ–ଭାଇହେ ଶୁଣ
ନିଶ୍ୱାସ ପ୍ରଶ୍ୱାସେ ନେବା ସବାଶେ ଜୀବ ପାଇଁ ଲୋଡ଼ା ଅମ୍ଳଜାନ
ଗଛଠାରୁ ଆମେ ପାଉଛେ ତାହା
ତା ଯୋଗୁ ରହିଛି ଆମ ପ୍ରାଣ ।

ଗଛ ପ୍ରକୃତିର ଶୋଭା ବଢ଼ାଏ
ତା'ରି ପାଇଁ ପରିବେଶ ସିନା ସୁସ୍ଥ ରହେ ।
ଗଛ ଆମକୁ ନ ଦିଏ କିସ ?
ଦିଏ ଖାଦ୍ୟ ଜଳ
ଚୁଲି ପାଇଁ କାଳ
ଗୋରୁ ପାଇଁ ଖାଦ୍ୟ
ସ୍ୱାସ୍ଥ୍ୟକୁ ଔଷଧ
ରହିବା ପାଇଁକି ଦିଅଇ ବାସ
ଗଛ ଆମକୁ ନ ଦିଏ କିସ ?
ଭୁଲ ହେ ଭୁଲ
ମିଳି ମିଶି ଆମେ ସୃଷ୍ଟି କରିବା ଆମରି ପାଇଁ ଆମ ଜଙ୍ଗଲ ॥

ଗଛ ବଞ୍ଚାଇବା ଆମ ପାଇଁ ହେଉ ବଡ଼ ଧରମ
ଗଛ ଲଗେଇବା ଆମ ପାଇଁ ହେଉ ବଡ଼ କରମ
ନଷ୍ଟ ଜଙ୍ଗଲ ଜଗିରଖି ଆମେ କରିବା ଘନ
ଲଙ୍ଗଳା ପାହାଡ଼ରେ ସଜାଇବା ଆମେ ସବୁଜବନ
ଗଛ ଲଗେଇବା ରାସ୍ତା କଡ଼ରେ
ଜମି ହୁଡ଼ାରେ
ହେବ ଫସଲ
ଖାଦ୍ୟ ସାଥୀରେ ପାଇବା ଜାଳ ॥

ଦୁଆରେ ଲଗେଇ ଗଛ ଧାଡ଼ି ଧାଡ଼ି ସଜେଇବା ଆମ ଘରକୁ
ନାନା ରକମର ଫଳଗଛ ରୋଇ ସଜାଇବା ଆମ ବାଡ଼ିକୁ
ଫଳ ହେଲେ ହେଉ ନ ହେଲେ ନାହିଁ
କିଛି ନ ହେଲେ ତ ପାଇବା ଛାଇ ?
ଗାଁ ମୁଣ୍ଡରେ ସେ ପଡ଼ିଆ ଜମିରେ ଲଗେଇବା ଗଛ ଅନେକ
ଗରିବମାନଙ୍କ ଦୁଃଖ ଭୁଲିଯିବ
ଘୁଞ୍ଚିବ କାଠର ଅଭାବ ଦୁଃଖ ॥

ପଧାନେ କହିଲେ–ହଇରେ ମହିଆ ଶୁଣୁଛୁ ?
ଯାହା ବୁଝେଇଲେ ବୁଝୁଛୁ
ନାଁ ଖାଲି ଆଁଟାଏ କରିଚୁ
ମଝିରେ ମଝିରେ ଚୁଙ୍ଗା ଢୁଁଟାଏ ମାରୁଛୁ ??
କହିଲୁ ବା'
ଏତେ ଜମି ପାଇଁ ଏତେ ଗ୍ୱରାଗଛ କାହୁଁ ପାଇବା ?

ମହିଆ କହିଲା–ହଇଲୋ ଦାଦି ।
ତୋ'ର ତ ବଡ଼ ପାକଳ ବୁଦ୍ଧି
ସତ କଥା ତ
ଏତେ ଜମି ପାଇଁ ଗ୍ୱରା ପାଇବାଟା ବଡ଼କଥା ତ ।
ଠିଆ ହୋଇ ପଡ଼ି କହିଲା–ବାବୁ
ଏତେ ଗୁଡ଼ାଏ ଗ୍ୱରା ଗଛ କହ
ଆମେ କୁଆଡୁ ପାଇବୁ ସବୁ ?

ବକ୍ତା କହିଲେ – ଧନ୍ୟବାଦ ! ବସ ବସ
ସବୁ ବିଷୟ ବୁଝାଇ କହୁଛି କେଉଁପରି ହେବ କିସ କିସ
ସାମାଜିକ ବନ ପ୍ରକଳ୍ପ ଯୋଜନା କରିଛନ୍ତି ଆମ ସରକାର
ଜଙ୍ଗଲ ପାଇଁ ଦିଅନ୍ତି ସାହାଯ୍ୟ ଗ୍ୱରା ଯେତେ ଯେତେ ଦରକାର

ଶିଶୁ ଶାଗୁଆନ ଗମ୍ଭାରୀ ଶିରୀଷ
ଆକାଶିଆ ନିମ୍ବ ୟୁକାଲି ପଟାସ
ଗୁକୁଣ୍ଡା ଚନ୍ଦନ ଝାଉଁ ମହାନିମ୍ବ
ଫଳଗଛ ଦେବ ପଣସ ଓ ଆମ୍ବ
ବାଡ଼ି ବଗିଚାରେ ଆମେ ଲଗେଇବା ନେଇ ତାହାକୁ
ନିଜ ପାଇଁ ନିଜେ ଗଛ ଲଗେଇଲେ
ହାତ ପତେଇବା କିଆଁ କାହାକୁ ?

ସରକାରଙ୍କର ଆମପାଇଁ ସତେ ମହତ ଦାନ ।
ବାଡ଼ି ବଗିଚ୍ଛରେ, ଗାଁ ମୁଣ୍ଡରେ
ରାସ୍ତାକଡ଼ରେ ଜମି ଜୁଡ଼ାରେ
କରିଯିବା ଆମେ ବୃକ୍ଷ ରୋପଣ ॥

"ହଇରେ ମହିଆ", କହିଲେ ପଧାନେ,
"ବଞ୍ଚିବି ବରଷ ଯୋଡ଼େ କି ଗୋଟେ
କାହିଁ କି ଏତେ କଷ୍ଟକରି ମୁଁ
ଗଛ ଲଗେଇବି କହତ ମତେ
ଫଳଗଛ କହ କିଆଁ ରୋଇବି
ଗଛ ବଡ଼ ହୋଇ ଫଳିଲା ବେଳକୁ
ବଞ୍ଚିଥିବି କି ଯେ, ସେ ଫଳକୁ ଆଉ ଖାଇପାରିବି ?"

ମହିଆ କହିଲା–ହଇଲୋ ଦାଦି
ଏଇ କଥା ତୁ କହିଲୁ ଯଦି
ମୋ କଥାର ଉତ୍ତର ଦେଲୁ
ଯେତେ ଫଳ ଆଜି ତୁ ଖାଉଛୁ
ସେ ଗଛ ସବୁ ତୁ ଲଗେଇ ଥିଲୁ ?

–ନାହିଁରେ ନାହିଁ
ସେ ଗଛ ମୁଁ ଜମା ଲଗେଇ ନାହିଁ
ଆରେ ମହିଆ !
ଭାବି ଥିଲି ତୁ ଜାଣିନାହିଁ କିଛି, ଆଡ଼ବାଇଆ
ସତରେ ତୁ କେଡ଼େ ଶିକ୍ଷିତ ହେଲୁ
ଅନ୍ଧ ଆଖିକୁ ମୋ ଫିଟେଇ ଦେଲୁ ।

ଠିଆ ହୋଇପଡ଼ି କହିଲେ–ବାବୁ
ତମ ଆଗରେ ପ୍ରତିଜ୍ଞା କରୁଛୁ
ନିଶ୍ଚେ ଗାଁରେ ଜଙ୍ଗଲ କରିବୁ ।
ବୋଲରେ ବୋଲ
ଆନନ୍ଦେ ଏକବାର ହରିବୋଲ
ଆମରି ଗାଁରେ ଆମ ଜଙ୍ଗଲ ॥
ବାଜିଲା ତାଳି
ଦେଲେ ସ୍ଲୋଗାନ ସମସ୍ତେ ମିଳି
ଆମ ଜଙ୍ଗଲ–ଜିନ୍ଦାବାଦ୍
ଆମ ସରକାର–ଜିନ୍ଦାବାଦ୍
ସାମାଜିକ ବନପ୍ରକଳ୍ପ–ଜିନ୍ଦାବାଦ୍
ଜିନ୍ଦାବାଦ୍– ଜିନ୍ଦାବାଦ୍

*ସମ୍ପାଦକ, ଅଭିନନ୍ଦନ ଭବି,*
*ଫୁଲବାଣୀ–୭୬୨୦୦୧ ।*




*ନୂଆଦିଲ୍ଲୀଠାରେ ଓଡ଼ିଶା ଦିବସ ଉପଲକ୍ଷେ ଆୟୋଜିତ ଉତ୍ସବରେ କେନ୍ଦ୍ର ସୂଚନା ଓ ପ୍ରସାରଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଅଜିତ୍ କୁମାର ପାଞ୍ଜା ଉଦ୍‌ବୋଧନ ଦେଉଛନ୍ତି । ଏହି ଉତ୍ସବରେ କେନ୍ଦ୍ର ମନ୍ତ୍ରୀ ଶ୍ରୀ ଗିରିଧର ଗମାଙ୍ଗ, ଶ୍ରୀ କାହ୍ନୁଚରଣ ଲେଙ୍କା, ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଏବଂ ଓଡ଼ିଶା ସାହିତ୍ୟ ଏକାଡେମୀ ସଭାପତି ଶ୍ରୀମତୀ ମନୋରମା ମହାପାତ୍ର ମଞ୍ଚାସୀନ ଅଛନ୍ତି (ଓ/ଠ) ।*

# ନବ ମଞ୍ଜିରିକି ମୁକୁଳି ଉଠିଲା......

ଡକ୍ଟର କାର୍ତ୍ତିକଚନ୍ଦ୍ର ଦାସ

ମଧୁମାସ (ଚୈତ୍ରମାସ) ଶୁକ୍ଳପକ୍ଷ ଶୁଭନବମୀ ତିଥି ପୁନର୍ବସୁଯୁକ୍ତ କର୍କଟ ଚନ୍ଦ୍ରରେ ପଞ୍ଚଗ୍ରହ ଉଚ୍ଚସ୍ଥ ଓ ସୂର୍ଯ୍ୟ ମେଷରାଶିସ୍ଥ ଥିବା ସମୟରେ ମଧ୍ୟାହ୍ନ କାଳରେ ସନାତନ ପରମାତ୍ମା ଜଗନ୍ନାଥ (ଶ୍ରୀରାମ) ଆବିର୍ଭୂତ ହେଲେ । ଏହି ସମୟରେ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ଅଧ୍ୟାତ୍ମ ରାମାୟଣକାର ବ୍ୟାସଙ୍କ ଭାଷାରେ,

ମଧୁମାସେ ସିତେ ପକ୍ଷେ ନବମ୍ୟାଂ କର୍କଟେ ଶୁଭେ ।
ପୁନର୍ବସୁଋକ୍ଷ ସହିତେ ଉଚ୍ଚସ୍ଥେ ଗ୍ରହପଞ୍ଚକେ ॥
ମେଷଂ ପୂଷଣି ସଂପ୍ରାପ୍ତେ ପୁଷ୍ପବୃଷ୍ଟି ସମାକୁଳେ ।
ଆବିରାସୀ ଜଗନ୍ନାଥଃ ପରମାତ୍ମା ସନାତନଃ ॥

ଓଡ଼ିଆ କବି ଉପେନ୍ଦ୍ରଭଞ୍ଜ ମଧ୍ୟ ବସନ୍ତ ଋତୁ ମଧୁମାସର ନବମୀ ତିଥିରେ ଶ୍ରୀରାମଙ୍କ ଜନ୍ମ ହୋଇଥିଲା ବୋଲି "ବୈଦେହୀଶ ବିଳାସ"ରେ ବର୍ଣ୍ଣନା କରିଛନ୍ତି :

ବସନ୍ତ ମଧୁମାସରେ ନବମୀ ଖ୍ୟାତି ।
ଶିପିବିଷ୍ଟ ବହିଲେ ଚତୁର୍ଭୁଜ ମୂର୍ତ୍ତି ॥

ହିନ୍ଦୀ ସାହିତ୍ୟର ବିଶିଷ୍ଟ ସନ୍ଥକବି ତୁଳସୀଦାସ ଶ୍ରୀରାମଙ୍କ ଆବିର୍ଭାବ କାଳକୁ ଚୈତ୍ର ଶୁକ୍ଳ ନବମୀ ବୋଲି କହିଛନ୍ତି,

ନୌମିତିଥି ମଧୁମାସ ପୁନୀତା ।
ଶୁକ୍ଳ ପକ୍ଷ ଅଭିଜିତ ହରିପ୍ରୀତା ॥
ମଧ୍ୟ ଦିବସ ଅତି ଶୀତ ନ ଘାମା ।
ପାବନ କାଲ ଲୋକ ବିଶ୍ରାମା ॥

ତେଣୁ ସର୍ବ ସମ୍ମତିକ୍ରମେ ଏହା ସ୍ୱୀକୃତ ଯେ ଚୈତ୍ର ଶୁକ୍ଳ ନବମୀତିଥିରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କର ଆବିର୍ଭାବ ହୋଇଥିଲା । ସେହି ସ୍ମରଣାତୀତ କାଳରୁ ଏ ଦେଶର ମଣିଷ ଭକ୍ତିର ସହିତ ଏହି ତିଥିରେ ପ୍ରଭୁଙ୍କର ଆରାଧନା କରି ଆସୁଛନ୍ତି । ସମଗ୍ର ଭାରତବର୍ଷର ବିଭିନ୍ନ ସ୍ଥାନରେ ନବଦିନ ବ୍ୟାପୀ ପାରାୟଣ ଓ ପ୍ରବଚନ କାର୍ଯ୍ୟକ୍ରମ ଚାଲିଛି । ଏହି ତିଥି ଅନୁସାରେ ରାମଙ୍କ ଜନ୍ମକୁ ସ୍ମରଣ କରାଯାଉଛି । ପ୍ରତିବର୍ଷ ସେଥି ପାଇଁ ରାମ ନବମୀ ଉତ୍ସବ ପାଳିତ ହେଉଛି ।

ଈଶ୍ୱରଙ୍କ ଉପଲବ୍ଧି ପାଇଁ ଭକ୍ତି ସାଧନାର ନଅଟି ପର୍ଯ୍ୟାୟ ରହିଛି । ଏହାକୁ ନବଧା ଭକ୍ତି କୁହାଯାଏ । ଏହି ଶରୀର ନବଦ୍ୱାର ବିଶିଷ୍ଟ । ରାମାୟଣ କଥାକୁ ନବଦିନ-ପ୍ରବଚନ ଓ ପାରାୟଣ କରାଯାଏ । 'ନଅ' ଅଙ୍କ ପୂର୍ଣ୍ଣତାର ପ୍ରତୀକ । ଏହା ପୂର୍ଣ୍ଣ ବ୍ରହ୍ମର ପ୍ରତୀକ । 'ନଅ' ଏକ ସର୍ବବୃହତ୍ ସଂଖ୍ୟା । ଏକ ଅଙ୍କ ହେଲେ 'ନଅ' (N) ଦୁଇ ଅଙ୍କ ହେଲେ 'ଅନେଶତ' (NN) ଏହି ପରି । 'ଶୂନ୍ୟ' (O) ନିରାକାର ନିର୍ବାଣ ବ୍ରହ୍ମର ପ୍ରତୀକ । ନିରାକାର ନିର୍ଗୁଣ ବ୍ରହ୍ମ ସଗୁଣ ସାକାର ହୋଇ ନବମୀ ତିଥିରେ ପ୍ରକଟିତ ହୋଇଥିଲେ । ଏହି ନବ ଦ୍ୱାର ବିଶିଷ୍ଟ ଶରୀରକୁ ପବିତ୍ର କରିବା ପାଇଁ ତାଙ୍କର ଆବିର୍ଭାବ । ଜଗତରେ, ଭକ୍ତସମାଜରେ ନବଧା ଭକ୍ତିର ପ୍ରଚାର କରିବା ପାଇଁ ତାଙ୍କର ଲୀଳା । ଜ୍ୟୋତିଷ ଶାସ୍ତ୍ର ଅନୁସାରେ ନବମୀ ଏକ ରିକ୍ତା ତିଥି । ରିକ୍ତତାର ଅନୁଭୂତି ନ ଆସିବା ପର୍ଯ୍ୟନ୍ତ କେହି ଈଶ୍ୱରଙ୍କୁ ପାଏ ନାହିଁ । ମନୁଙ୍କ ହୃଦୟରେ ରିକ୍ତତାର ଅନୁଭୂତି ଆସିବାରୁ ସେ ତପସ୍ୟା ପାଇଁ ବଣକୁ ଗଲେ । ରିକ୍ତତା ଏକ ଦୋଷ ହେଲେ ମଧ୍ୟ ଏହା ଈଶ୍ୱର ଉପଲବ୍ଧି ମାର୍ଗରେ ଏକ ଗୁଣ ବୋଲି ବିବେଚିତ ହୁଏ । ଏହା ହିଁ ନବମୀତିଥିରେ ପ୍ରଭୁଙ୍କ ଧରାବତରଣର ତାତ୍ପର୍ଯ୍ୟ ।

ବସନ୍ତ ଋତୁରାଜ । ଋତୁରାଜ ବସନ୍ତର ସେନାପତି କାମ । ବସନ୍ତ ଋତୁରେ ମଧୁମାସ ବା ଚୈତ୍ରମାସ ଶ୍ରେଷ୍ଠ । ବସନ୍ତ ଆଗମନରେ ବଣଜଙ୍ଗଲ ନବପଲ୍ଲବ ଓ ପୁଷ୍ପରେ ସୁସଜ୍ଜିତ ହୋଇ ଉଠେ । ପୁଷ୍ପର ସୌରଭରେ ଆକୃଷ୍ଟ ଭ୍ରମରାବଳୀର ମୃଦୁଗୁଞ୍ଜନ ଓ କୋକିଳର କୁହୁତାନ ଅନ୍ତଃକରଣକୁ ବସନ୍ତର ମାଦକତାରେ ଭରିଦିଏ । ଏହି ସମୟ କାମ ଉଦ୍ରେକର ସମୟ । କାମକୁ ପ୍ରଭୁଙ୍କ ଚରଣରେ ନିବେଦିତ କରି ଦେଲେ ଜୀବନ ସୁଖମୟ ହେବ, ଧନୀ ହେବ । ରାମଙ୍କ ଆବିର୍ଭାବରେ କାମର ବିନାଶ ଘଟିବ । କାମ ଅପେକ୍ଷା ରାମ ଅଧିକ ସୁଖ ଦାୟକ । ଚୈତ୍ରମାସ ମଧୁମୟ ହେବ ଯେତେବେଳେ ରାମଙ୍କ ଆବିର୍ଭାବରେ କାମର ବିନାଶ ହେବ । ତେଣୁ ମଧୁମାସରେ ଶ୍ରୀରାମଙ୍କ ମର୍ତ୍ତ୍ୟଲୀଳା ଯୁକ୍ତି ସଂଗତ । ଏହା ହିଁ ମଧୁମାସରେ ଭଗବାନଙ୍କ ଆବିର୍ଭାବର ତାତ୍ପର୍ଯ୍ୟ ।

ପ୍ରତ୍ୟେକ ମାସର ଦୁଇଟି ପକ୍ଷ । ଗୋଟିଏ କୃଷ୍ଣପକ୍ଷ ଓ ଅନ୍ୟଟି ଶୁକ୍ଳପକ୍ଷ । ଶୁକ୍ଳପକ୍ଷ ପ୍ରକାଶର ପକ୍ଷ । କୃଷ୍ଣପକ୍ଷ ଅନ୍ଧକାରର ପକ୍ଷ । ପୂର୍ଣ୍ଣିମାରେ ଉଜ୍ଜ୍ୱଳତାର ପ୍ରକାଶ ଓ ଅମାବାସ୍ୟାରେ ଅନ୍ଧକାରର ପ୍ରକାଶ । ଅନ୍ଧକାର ମଧ୍ୟ ସୃଷ୍ଟିର ଏକ ପାର୍ଶ୍ୱ । ପୂର୍ଣ୍ଣିମା ମଧୁମୟୀ ରାତ୍ରିପରି ଜୀବନରେ ପୂର୍ଣ୍ଣ ପ୍ରକାଶ ପ୍ରକଟିତ କରିଥାଏ । ଆତ୍ମତତ୍ତ୍ୱର ପୂର୍ଣ୍ଣତା ଏହି ପୂର୍ଣ୍ଣମୀ । ପୂର୍ଣ୍ଣିମା ବାସନାର ଘନୀଭୂତ ଅନ୍ଧକାରକୁ ନଷ୍ଟ କରିଦିଏ । ଶୁକ୍ଳପକ୍ଷରେ ରାମଙ୍କର ଜନ୍ମ ଅନ୍ଧକାରରେ "ପ୍ରକାଶ"କୁ ଉନ୍ମୀଳିତ ହେବାରେ ପ୍ରେରଣା ଦେଇଥାଏ ।

ଦିନ—ରାତି ଜୀବନର ଦୁଇଟି ଭାଗ । ଗୋଟିଏ ଦୃଶ୍ୟ ଅନ୍ୟଟି ଅଦୃଶ୍ୟ । ମଣିଷର ଅନ୍ତରଙ୍ଗ ଜୀବନ ଶୀତଳତା ଓ ଆହ୍ଲାଦରେ ପୂର୍ଣ୍ଣ । ରାତ୍ରିରେ କାମ, ମୋହ, ମଦ, ମାତ୍ସର୍ଯ୍ୟ ଆଦି ସକ୍ରିୟ । ଶୁକ୍ଳପକ୍ଷର ଦିନ ଯେପରି ପୂର୍ଣ୍ଣତାର ପ୍ରତୀକ ରାତ୍ରିମଧ୍ୟ ସେହିପରି ପୂର୍ଣ୍ଣତାର ପ୍ରତୀକ । ଦୃଶ୍ୟ ଜୀବନରେ ଉଜ୍ଜ୍ୱଳତାର ପ୍ରକାଶ ଘଟେ । ଅନ୍ତଃ ଜୀବନରେ ଚାନ୍ଦ୍ରବନ୍ଦ୍ର କିରଣର ସ୍ନିଗ୍ଧତା ସୃଷ୍ଟି

କରେ । ଭଗବାନ ଶ୍ରୀରାମ ନିଜ ଚରିତ୍ର ମାଧ୍ୟମରେ ଯେଉଁ ଆଦର୍ଶ ପ୍ରସ୍ତୁତ କରିଛନ୍ତି ସେଥିରେ ଚନ୍ଦ୍ର ସୂର୍ଯ୍ୟର ସମନ୍ୱୟ ବିଦ୍ୟମାନ । ପ୍ରତ୍ୟେକ ବ୍ୟକ୍ତିର ଜୀବନରେ ଚନ୍ଦ୍ରର ଶୀତଳତା ଓ ସୂର୍ଯ୍ୟର ପ୍ରଖରତାର ସମନ୍ୱୟ ନ ଘଟିଲେ ତା'ର ଜୀବନ ଧନ୍ୟ ହେବ ନାହିଁ ।

ଅଭିଜିତ୍ ନକ୍ଷତ୍ରରେ ଶ୍ରୀରାମଙ୍କ ଆବିର୍ଭାବ ହୋଇଥିଲା । ଏହି ନକ୍ଷତ୍ର ପ୍ରତିଦିନ କିଛି ସମୟ ପାଇଁ ଆସି ପ୍ରଭୁଙ୍କ ପରିପ୍ରକାଶର ସୂଚନା ଦେଇଥାଏ । ଏହି ନକ୍ଷତ୍ର ମଧ୍ୟାହ୍ନ ସମୟରେ ଆସେ । ପ୍ରାତଃକାଳ ଓ ସାଂଧ୍ୟକାଳକୁ ସନ୍ଧିକ୍ଷଣ କୁହାଯାଏ । ଏହାକୁ ଚିହ୍ନିବା ଅଧିକ ସରଳ । କିନ୍ତୁ ମଧ୍ୟଦିବସ ବା ମଧ୍ୟାହ୍ନକୁ ଚିହ୍ନିବା କଷ୍ଟ । ପ୍ରାତଃକାଳରେ ସୂର୍ଯ୍ୟଙ୍କୁ ଆଦର ପୂର୍ବକ ସ୍ୱାଗତ ଓ ସାନ୍ଧ୍ୟକାଳରେ ସୂର୍ଯ୍ୟଙ୍କୁ ଆଦର ପୂର୍ବକ ବିଦାୟ ଜ୍ଞାପନ କରାଯାଇଥାଏ । ସୂର୍ଯ୍ୟ ଜୀବନର କେନ୍ଦ୍ରବିନ୍ଦୁ ଓ ଏହାଙ୍କ ଅଭାବରେ ଜୀବନର ପରିପ୍ରକାଶ ଅସମ୍ଭବ । ତେଣୁ ଏହି ପ୍ରକାଶ ପ୍ରତି କୃତଜ୍ଞତା ଜ୍ଞାପନ କରିବା ଆମର ପରମ କର୍ତ୍ତବ୍ୟ । ପ୍ରାତଃ କାଳରେ ଉଦିତ ହେଉଥିବା ସୂର୍ଯ୍ୟ ମଧ୍ୟାହ୍ନରେ ପୂର୍ଣ୍ଣ ଯୌବନ ପ୍ରାପ୍ତ ହୁଏ । ଅଭିଜିତ୍ ନକ୍ଷତ୍ର ପ୍ରତିଦିନ ଏହି ସୂର୍ଯ୍ୟ ବେଳାରେ ଆସିଥାଏ । ଜ୍ୟୋତିଷ ଶାସ୍ତ୍ରରେ ଅଛି ଯେ ପ୍ରତ୍ୟେକ ନକ୍ଷତ୍ର ଗୋଟିଏ ଗୋଟିଏ ସ୍ୱତନ୍ତ୍ର କାର୍ଯ୍ୟ ପାଇଁ ଶୁଭ । ଅଭିଜିତ୍ ନକ୍ଷତ୍ର କେବଳ ଈଶ୍ୱରଙ୍କ ଉପଲବ୍ଧି ପାଇଁ ଶୁଭ । ଭୌତିକ ସୁଖ, ସମୃଦ୍ଧି ପ୍ରଦାନକାରୀ କୌଣସି ନକ୍ଷତ୍ର ଅଭିଜିତ୍ (ଅପରାଜେୟ) ନୁହେଁ । ଈଶ୍ୱରପ୍ରାପ୍ତି ବ୍ୟକ୍ତିକୁ ସର୍ବଦା ଅପରାଜିତ କରିଥାଏ । ଏହି ଅଭିଜିତ୍ ସେଥି ପାଇଁ ଅତିପ୍ରିୟ ।

ଅତି ସର୍ବତ୍ର ବର୍ଜୟେତ୍ ଅର୍ଥାତ୍ 'ଅତି' କୁ ସବୁବେଳେ ତ୍ୟାଗ କରିବା ଉଚିତ । କୌଣସି କ୍ଷେତ୍ରରେ 'ଅତି' ହିଁ କ୍ଷତିକାରକ । ଗ୍ରୀଷ୍ମଋତୁରେ ବ୍ୟକ୍ତି ଶୀତଳତା ଖୋଜେ ଓ ଶୀତ ଋତୁରେ ବ୍ୟକ୍ତି ଉଷ୍ଣତା ଖୋଜେ । ଅତ୍ୟାଧିକ ଭୋଜନ, ଅତ୍ୟଳ୍ପ ଭୋଜନ ଶରୀର ପକ୍ଷରେ ମଧ୍ୟ କ୍ଷତିକାରକ । ସାଧନାର ମୂଳମନ୍ତ୍ର ମଧ୍ୟମ ପଥ ଅବଲମ୍ବନ । ଋଷଭଦେବ ଅହିଂସାର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ସେ ଶୀତଳତାର ପ୍ରତୀକ । ପରଶୁରାମ ହିଂସାର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଶ୍ରୀରାମ କୋମଳତା ଓ ଦୃଢ଼ତାର ଏକ ଅଦ୍ଭୁତ ସମନ୍ୱୟ । ଭଗବାନ ରାମ ସ୍ୱାର୍ଥ ଓ ପରମାର୍ଥ ଦୁଇଟିର ସମନ୍ୱୟ । ଏହାହିଁ ଭଗବାନଙ୍କର ମଧ୍ୟାହ୍ନରେ ଅତିଶୀତ ଓ ଅତିଉଷ୍ଣ ସମନ୍ୱୟ[...] ତାତ୍ପର୍ଯ୍ୟ ।

ଭଗବାନ ପବିତ୍ରକାଳରେ ଜନ୍ମଗ୍ରହଣ କରିଥିଲେ । ପବିତ୍ରତା[...] ଅହଂକାରରେ ବଶବର୍ତ୍ତୀ ହୋଇ କାହାରିକୁ ଘୃଣା କରିବା ଉଚି[...] ନୁହେଁ । ନିଜକୁ ପବିତ୍ର କରିବା ସହିତ ଅନ୍ୟର ଅପବିତ୍ରତା[...] ଦୂରକର । ପବିତ୍ରତାର ଅଭିମାନ ସମାଜରେ ଘୃଣା ଓ ଅପ[...] ସୃଷ୍ଟିକରିଥାଏ । ଭଗବାନ ଶ୍ରୀରାମ ନିଜର ଚରିତ୍ର ଦ୍ୱାରା[...] ପବିତ୍ରତାର ଏକ ଆଦର୍ଶ ସୃଷ୍ଟି କରିଥିଲେ । ତାଙ୍କ ପାଦ[...] ଲୋକପାବନୀ ଗଙ୍ଗା ହୋଇଥିଲା ନିସୃତ । ପତିତମାନଙ୍କୁ ଉଦ୍ଧା[...] କରିବା ପାଇଁ ଗଙ୍ଗା ହିମାଳୟର ଉତ୍ତୁଙ୍ଗ ଶିଖରରୁ ଓହ୍ଲାଇ ଆ[...] ଧରାଧାମରେ ପ୍ରବାହିତ ହୋଇଥିଲେ । ଭଗବାନ ସେହି[...] ଅଯୋଧ୍ୟାରୁ ଲଙ୍କା ଯାତ୍ରାକରି ଯାତ୍ରା ପଥରେ ସେହିମା[...] ଅପାବନମାନଙ୍କୁ ପାବନ କରିଥିଲେ ।

ବ୍ୟକ୍ତି ସହିତ କର୍ମ ଓ କର୍ମ ସହିତ ଶ୍ରମ ଦୃଢ଼ ସଂଯୁକ୍ତ । ଶ୍ରମ[...] ଅଭାବରେ ରୋଗର ସୃଷ୍ଟି ଓ ଅତ୍ୟଧିକ ଶ୍ରମରେ ମଧ୍ୟ ରୋଗ[...] ସୃଷ୍ଟି । ତେଣୁ ଜୀବନରେ ବିଶ୍ରାମର ଆବଶ୍ୟକତା ରହି[...] ଶ୍ରୀରାମଙ୍କ ଜୀବନରେ ଶ୍ରମ ଓ ବିଶ୍ରାମର ସମନ୍ୱୟ ରହି[...] ଶ୍ରୀରାମଙ୍କ କୃପାରୁ ହିଁ ପ୍ରକୃତ ବିଶ୍ରାମ ମିଳିଥାଏ ।

ଶ୍ରୀରାମଙ୍କ ଆବିର୍ଭାବ କାଳରେ ଶୀତଳ, ମନ୍ଦ ସୁରଭିତ ବାୟୁ[...] ସଂଚରିତ ହେଉଥିଲା । କାରଣ ପବନ ଦେବତା ନିଜ ପ୍ରଭୁ[...] ଆରାଧ୍ୟଙ୍କ ଶୁଭାଗମନରେ ନିଜ ସେବାକୁ ଅର୍ପିତକରି ନିଜକୁ ଧନ୍ୟ କରିବା ପାଇଁ ଚାହିଁଥିଲେ । ରାମନବମୀର ପୁଣ୍ୟ ଅବସରରେ ଆସମାନଙ୍କ ଜୀବନରେ ମୃଦୁତାର ସ୍ପର୍ଶ, ଆଧ୍ୟାତ୍ମିକ ଅନୁଭୂତି ଅଙ୍କୁରିତ ହେଉ ।

ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ
ରଘୁନାଥାୟ ନାଥାୟ ସୀତାୟାଃ ପତୟେ ନମଃ

**ପ୍ରାମାଣିକତା**

ନକ୍ଷତ୍ରେ ଽଦିତିଦୈବତ୍ୟେ ସ୍ୱୋଚ୍ଚସଂସ୍ଥେଷୁ ପଞ୍ଚସୁ
ଗ୍ରହେଷୁ କର୍କଟେ ଲଗ୍ନେ ବାକ୍ପତୀ ବିନ୍ଦୁନା ସହ ।

---

*କଲେକ୍ଟୋରେଟ୍, ପୁରୀ ।*

# କେନ୍ଦୁଝରରେ ଶ୍ରୀ ଶ୍ରୀ ବଳଦେବ ଜୀଉଙ୍କର ଚନ୍ଦନ ଯାତ୍ରା

ଶ୍ରୀ ହରିହର ନନ୍ଦ

କେନ୍ଦୁଝରଗଡ଼ରେ ଶ୍ରୀ ଶ୍ରୀ ବଳଦେବ ଜୀଉଙ୍କର ମନ୍ଦିର ଅବସ୍ଥିତ। ଏହି ମନ୍ଦିରରେ କେନ୍ଦୁଝରର ଇଷ୍ଟ ଦେବତା ଶ୍ରୀବଳଦେବ ଜୀଉ, ମା ସୁଭଦ୍ରା ଓ ପ୍ରଭୁ ଶ୍ରୀ ଜଗନ୍ନାଥ ଅଧିଷ୍ଠିତ। ଏହି ଦିଅଁମାନଙ୍କର ବାର ମାସରେ ତେର ପର୍ବ ମଧ୍ୟରୁ ଚନ୍ଦନ ଯାତ୍ରା ଅନ୍ୟତମ। ଏହି ଉତ୍ସବ ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇ ୨୧ ଦିନ ବ୍ୟାପୀ ପାଳିତ ହୋଇଥାଏ। ଶ୍ରୀବଳଦେବ ଜୀଉଙ୍କର ମନ୍ଦିରଠାରୁ ପ୍ରାୟ ୧ କିଲୋ ମିଟର ଦୂରରେ କେନ୍ଦୁଝରର ରାଜପ୍ରାସାଦ। ରାଜବାଟୀର ଦକ୍ଷିଣ ଦିଗରେ ଚନ୍ଦନ ପୋଖରୀ ଅବସ୍ଥିତ। ଏହି ଚନ୍ଦନ ପୋଖରୀକୁ ନରସିଂହବନ୍ଧ ମଧ୍ୟ କହନ୍ତି। ଏହି ସ୍ଥାନଟି ଅତ୍ୟନ୍ତ ମନୋରମ। କାରଣ ଏହାର ଚତୁଃପାର୍ଶ୍ୱରେ କେତେକ ବସ୍ତି ରହିଥିଲେ ମଧ୍ୟ ପଶ୍ଚିମ ଓ ଦକ୍ଷିଣ ଦିଗର ଅନତିଦୂରରେ କେତେକ ପର୍ବତ ରହି ଏହାର ଶୋଭାବର୍ଦ୍ଧନ କରୁଅଛି। ଏହି ପୋଖରୀର ନିକଟରେ ଆମ୍ବ, ତାଳ, ଜାମୁ, ବର, ଜଡ଼ି ନିମ ଓ ଶିମୁଳି ବୃକ୍ଷମାନ ଦେଖିବାକୁ ମିଳିଥାଏ। ଏହି ପୋଖରୀର ଜଳ ନିର୍ମଳ ଓ ଏଥିରେ ବଡ଼ ବଡ଼ ମାଛ ସବୁ ରହିଛନ୍ତି। ପୋଖରୀ ଭିତରକୁ ଯିବାପାଇଁ ଗୋଟିଏ ପଟରେ ପାହାଚ ନିର୍ମାଣ କରାଯାଇଛି। ଏହି ପୋଖରୀର ମଝିରେ ଗୋଟିଏ ମନ୍ଦିର ବିଦ୍ୟମାନ। ଏହି ମନ୍ଦିରର ଚାରିପାଖରେ ଖୋଲା ବେଢ଼ା ରହିଅଛି। ମନ୍ଦିରର ଦ୍ୱାର ଦେଶରେ ଦୁଇଟି ସିଂହ ରହିଛନ୍ତି। ମନ୍ଦିରର ଉଚ୍ଚତା ପ୍ରାୟ ୪୦ ଫୁଟ ହେବ। ମନ୍ଦିରର ଉପରିଭାଗରେ ସୁଦର୍ଶନ ଚକ୍ର ଶୋଭା ପାଉଅଛି। ଏଠାରେ ଚନ୍ଦନ ଯାତ୍ରା ହେଉଥିବାରୁ ବିଭିନ୍ନ ସ୍ଥାନରୁ ବହୁ ଲୋକ ଏଠାକୁ ଆସି ଏହି ଉତ୍ସବକୁ ଉପଭୋଗ କରିଥାନ୍ତି।

ପାରମ୍ପରିକ ନୀତିରେ ଅକ୍ଷୟ ତୃତୀୟା ଦିନ ସନ୍ଧ୍ୟା ସମୟରେ ମନ୍ଦିରରେ ଦିଅଁମାନଙ୍କର ପହଡ଼ ଭାଙ୍ଗିଲା ପରେ ସେମାନଙ୍କର ପୂଜାବିଧି ସମାପନ ହେବାପରେ ସେମାନଙ୍କର ଚଳନ୍ତି ପ୍ରତିମା (ବିଜେ ପ୍ରତିମା) ଯଥା :- ଶ୍ରୀଜଗନ୍ନାଥଙ୍କର ନାରାୟଣ, ଶ୍ରୀ ବଳଦେବ ଜୀଉଙ୍କର ବାସୁଦେବ, ଶ୍ରୀକୃଷ୍ଣଙ୍କର ମଦନମୋହନ ଓ ମାଁ ଲକ୍ଷ୍ମୀ ଠାକୁରାଣୀଙ୍କର ଲକ୍ଷ୍ମୀ ଠାକୁରାଣୀ ପ୍ରଭୃତିଙ୍କୁ ସେବକମାନେ ପୁଷ୍ପଶାଳା ନିକଟରେ ସଜ୍ଜିତ ହୋଇଥିବା ପାଲିଙ୍କିରେ ବିଜେ କରାନ୍ତି। ସେଠାରେ ଫୁଲମାଳ ଓ ଧୂପଦୀପ ପ୍ରଭୃତି ଲାଗି ହେବା ପରେ ବାହୁକମାନେ ସଜ ହୋଇଥିବା ପାଲିଙ୍କିକୁ ସିଂହଦ୍ୱାର ନିକଟସ୍ଥ ଯେଉଁ ସ୍ଥାନରେ ରଥକାର୍ଯ୍ୟ ନିର୍ମାଣ ହୋଇଥାଏ ସେଠାକୁ ପଟୁଆରରେ ଆଣିଥାନ୍ତି। ଦିଅଁମାନେ ଶୋଭାଯାତ୍ରାରେ ଯାଉଥିବା ବେଳେ ବେଣ୍ଡ ପାର୍ଟି, ଘଣ୍ଟ, ଗିନି ପ୍ରଭୃତି ବାଜା ବଜାଯାଇଥାଏ ଓ ହରିବୋଲ ତଥା ହୁଳହୁଳି ନାଦରେ ଗଗନ ପବନ ମୁଖରିତ ହୋଇଉଠେ। କେତେକ ବ୍ୟକ୍ତି ଛତ୍ର, ବୈରାଖ ଓ ପତାକା ପ୍ରଭୃତି ଧରି ପଟୁଆରରେ ଯାଇଥାନ୍ତି। ଏହି ଦିନ ରଥଗଢ଼ା କାର୍ଯ୍ୟର ଅନୁକୂଳ ଉତ୍ସବ ଆରମ୍ଭ ହୋଇଥାଏ। ଏଣୁ ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହେବା ସ୍ଥାନରେ ରଥରେ ବ୍ୟବହାର ହେବା ପାଇଁ ଗୋଟିଏ କାଠ ସେଠାରେ ରଖାଯାଇଥାଏ, ସେ ସ୍ଥାନ ଲିପାପୋଛା ହୋଇଥାଏ। ସେଠାରେ କଳସ ପୂଜା ପ୍ରଭୃତି କରାଯାଇଥାଏ। ତା'ପରେ ମହାରଣା ଯିଏକି ରଥ ନିର୍ମାଣ କାର୍ଯ୍ୟର ଦାୟିତ୍ୱ ବହନ କରିଥାନ୍ତି ତାଙ୍କୁ ସେଠାରେ ବିଧି ଅନୁଯାୟୀ ପୂଜାପାଠ କରାଯାଇ ନବବସ୍ତ୍ର ପ୍ରଦାନ କରାଯାଇଥାଏ। ସେ ତାହା ପରିଧାନ କରି ବାରିସି ଦ୍ୱାରା ସେହି କାଠଟିକୁ କାଟି ରଥ ନିର୍ମାଣ କାର୍ଯ୍ୟର ଅନୁକୂଳ ଉତ୍ସବ ଆରମ୍ଭ କରିଥାନ୍ତି। ଏହି ପୂଜାକାର୍ଯ୍ୟ ସଂପନ୍ନ ହେଲା ସମୟରେ ସେଠାରେ ବ୍ରହ୍ମା ଓ ପୂଜାପଣ୍ଡାମାନେ ଉପସ୍ଥିତଥାନ୍ତି। ପରିଛା ସୁନାବାଡ଼ି ଧରିଥାନ୍ତି।

ତା'ପରେ ଦିଅଁମାନଙ୍କର ଶୋଭାଯାତ୍ରା ଚନ୍ଦନପୋଖରୀ ଅଭିମୁଖେ ଯାତ୍ରା କରିଥାଏ। ପୁରୁଣା ଉଆସରୁ ଦିଅଁ ଜୟଗୋପାଳଙ୍କୁ ମଧ୍ୟ ଏହି ଚନ୍ଦନ ପୋଖରୀକୁ ଅନ୍ୟ ଦିଅଁମାନଙ୍କ ସହ ଅଣା ଯାଇଥାଏ। ସେଠାରେ ବିଧି ଅନୁଯାୟୀ ପୂଜାପାଠ କରାଯାଇଥାଏ। ଏହି ଚନ୍ଦନ ପୋଖରୀରେ ୨ଟି ନୌକା ଯୋଡ଼ା ହୋଇ ସଜ୍ଜିତ ହୋଇ ରହିଥାଏ। ତା'ପରେ ଦିଅଁମାନଙ୍କୁ ନେଇ ନୌକାରେ ଉପସ୍ଥାପନ କରାଯାଇଥାଏ। ଏହା ସନ୍ଧ୍ୟା ସମୟରେ ହେଉଥିବାରୁ ଆଲୋକ ସଜ୍ଜା କରାଯାଇଥାଏ। ତାପରେ ଦିଅଁମାନଙ୍କୁ ନୌକାରେ ନୌକା ବିହାର, ଝୁପ ଖେଳ ଓ ଜଳ କ୍ରୀଡ଼ା ପ୍ରଭୃତି କରାଯାଇଥାଏ ଓ ଚନ୍ଦନ ପୋଖରୀସ୍ଥ ମନ୍ଦିର ମଧ୍ୟ ପରିକ୍ରମା କରାଯାଇଥାଏ। ଏହି କାର୍ଯ୍ୟ ସମାପନ ହେବା ପରେ ସବୁ ଦିଅଁମାନଙ୍କୁ ରାଜବାଟୀର ଦଶଅବତାର ମେଳାକୁ ଅଣାଯାଇଥାଏ। ସେଠାର ପୂଜାକାର୍ଯ୍ୟ ସମାପନ ହେବା ପରେ ପୁରୁଣା ଉଆସରେ ଜୟଗୋପାଳ ଅବସ୍ଥାନ କରନ୍ତି ଓ ଅନ୍ୟ ଦିଅଁମାନେ ବଡ଼ ଦେଉଳକୁ ଫେରି ଆସିଥାନ୍ତି। ଏହି ଦଶଅବତାର ମେଳାର କାନ୍ଥରେ ଦଶ ଅବତାର, ଶ୍ରୀଗଣେଶ, ଶ୍ରୀକୃଷ୍ଣ ପ୍ରଭୃତିଙ୍କର ମୂର୍ତ୍ତି ସବୁ ସ୍ଥାପନ କରାଯାଇଅଛି। ଅକ୍ଷୟ ତୃତୀୟାଦିନ କେବଳ ରଥଗଢ଼ା ନିର୍ମାଣ କାର୍ଯ୍ୟର ଅନୁକୂଳ ଉତ୍ସବ ଓ ଚନ୍ଦନ ଯାତ୍ରା ଉତ୍ସବ ପାଳିତ ହୋଇଥାଏ। ଅନ୍ୟ ଦିନମାନଙ୍କରେ କେବଳ ଚନ୍ଦନ ଯାତ୍ରା ପାଳିତ ହୋଇଥାଏ। ଦିଅଁମାନେ ମନ୍ଦିରରେ ପହଞ୍ଚିବା ପରେ ଦେଉଳରେ ପାରମ୍ପରିକ କାର୍ଯ୍ୟ ସମାପନ କରାଯାଇଥାଏ। ଓଡ଼ିଶାରେ ଦେବତା ମଣିଷର ଅତି ଅନ୍ତରଙ୍ଗ ତେଣୁ ଋତୁ ବିଶ୍ୱରେ ଏଠାରେ ବିଭିନ୍ନ ପର୍ବ ପର୍ବାଣୀ ନିର୍ଦ୍ଧାରଣ କରା ଯାଇଛି। ଗ୍ରୀଷ୍ମ ଋତୁର ପ୍ରଚଣ୍ଡ ଉତ୍ତାପ ଫଳରେ ସନ୍ଧ୍ୟାରେ ଜଳକ୍ରୀଡ଼ା ଓ ନୌ ବିହାର ନିଶ୍ଚିତରୂପେ ଆନନ୍ଦ ଦାୟକ। ତେଣୁ ଦେବତାମାନଙ୍କ ନିମନ୍ତେ ଚନ୍ଦନ ଯାତ୍ରାରେ ଅନୁରୂପ ବ୍ୟବସ୍ଥା କରାଯାଇଛି।

ଶ୍ରୀକ୍ଷେତ୍ରରେ ମଦନମୋହନଙ୍କ ଚନ୍ଦନ ଯାତ୍ରାର ଏକ ସଂସ୍କରଣ ହେଉଛି, କେନ୍ଦୁଝରର ଶ୍ରୀବଳଦେବ ଜୀଉଙ୍କର ଚନ୍ଦନ ଯାତ୍ରା।

---

*ସଭାପତି ଜୀବନ ସାହିତ୍ୟ ମଞ୍ଚ, କେନ୍ଦୁଝର।*

# ଓଡ଼ିଶାରେ ନାରୀ ସାକ୍ଷରତା ଅଭିଯାନ

ବିଭୂତି ଭୂଷଣ ଆଚାର୍ଯ୍ୟ

'ମା ହେଲେ ପାଠୋଇ, ଦେଶ ଯିବ ଆଗେଇ'-ଏହାହିଁ ସାକ୍ଷରତା ଅଭିଯାନ ଶ୍ରେଷ୍ଠ ସ୍ଲୋଗାନ। ନାରୀ ସାକ୍ଷର ହେଲେ ଏକ ଜାତି ସାକ୍ଷର ହୋଇ ପାରିବ। ଏଥି ପାଇଁ ୧୯୯୫ ମସିହା ସୁଦ୍ଧା ଓଡ଼ିଶାରୁ ନିରକ୍ଷରତା ମୂଳପୋଛ କରି ସମ୍ପୂର୍ଣ୍ଣ ସାକ୍ଷର ରାଜ୍ୟ କରିବାକୁ ପ୍ରୟାସ ଜାରି ରହିଛି। କେରଳ ରାଜ୍ୟ ଭଳି ଓଡ଼ିଶା ଏକ ଅଗ୍ରଣୀ ରାଜ୍ୟ ହେବାର ପରିକଳ୍ପନା ହୋଇଛି। ଅଧୁନା ଗଞ୍ଜାମ, ସୁନ୍ଦରଗଡ଼, କେଉଁଝର, ଢେଙ୍କାନାଳ, ଆଦି ଜିଲ୍ଲାମାନଙ୍କରେ ସାକ୍ଷରତା ଅଭିଯାନ ପୁରା ଦମରେ ଆଗେଇ ଚାଲିଛି। ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡି ଏନ୍.ଏ.ସି. ପଦ୍ମନାଭପୁର ଓ ଗୋବରା ବ୍ଲକ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଫେବ୍ରୁଆରୀ ୧୧, ୧୯୯୨ରୁ ସମ୍ପୂର୍ଣ୍ଣ ସାକ୍ଷର ଭାବେ ଘୋଷିତ ହୋଇସାରିଛି। ସାକ୍ଷରତା ଅଭିଯାନରେ ସ୍ୱେଚ୍ଛାସେବୀ ସଂଗଠନର ଭୂମିକାଠାରୁ ନାରୀର ଭୂମିକା ଅନସ୍ୱୀକାର୍ଯ୍ୟ।

ଆମ ଭାରତ ବର୍ଷର ଜନସଂଖ୍ୟାକୁ ଲକ୍ଷ୍ୟ କଲେ ଜଣାଯାଏ, ୧୯୫୧ ଜନଗଣନାରେ ଶତକଡ଼ା ୮·୮୬ ଭାଗ, ୧୯୬୧ରେ ୨୧·୯୭ ଭାଗ, ୧୯୮୧ରେ ୨୮·୪୫ ଭାଗ, ୧୯୯୧ରେ ୩୯·୪୨ ଭାଗ ମହିଳା ସାକ୍ଷର ଥିଲେ। ଓଡ଼ିଶାରେ ୧୯୯୧ ଜନଗଣନାରେ ୩୧,୬୬୨,୦୭୦ ଜଣ ବ୍ୟକ୍ତିଙ୍କ ମଧ୍ୟରୁ ୧୫,୬୩୨,୧୬୬ ଜଣ ମହିଳା। ଏହାଛଡ଼ା ୧୯୯୧ ମସିହା ଜନଗଣନା ଅନୁଯାୟୀ ଓଡ଼ିଶାରେ ଶତକଡ଼ା ୪୦·୯୭ ଭାଗ ସାକ୍ଷରଙ୍କ ଭିତରୁ ୨୯·୦୯ ଭାଗ ମହିଳା। ଅର୍ଥାତ୍ ୪,୫୧୯,୫୮୫ ଜଣ ମହିଳା ସାକ୍ଷର। ଆମ ପ୍ରଦେଶର ୧୩ଟି ଜିଲ୍ଲାର ତଥ୍ୟକୁ ଲକ୍ଷ୍ୟ କଲେ ଜଣାଯାଏ, ପୁରୀ ଜିଲ୍ଲାରେ ସର୍ବାଧିକ ୭୫୦,୦୨୯ ଜଣ [୪୨·୭୮%] ମହିଳା, କଟକ ଜିଲ୍ଲାରେ ୧,୧୪୧,୮୫୦ ଜଣ [୪୨·୬୩%] ମହିଳା, ସୁନ୍ଦରଗଡ଼ ଜିଲ୍ଲାରେ ୨୫୧,୯୧୮ ଜଣ [୩୩·୧୮%] ମହିଳା, ବାଲେଶ୍ୱର ଜିଲ୍ଲାରେ ୫୧୦,୦୫୩ [୩୬·୦୭%] ମହିଳା, ଢେଙ୍କାନାଳ ଜିଲ୍ଲାରେ ୨୮୮,୯୦୪ ଜଣ [୩୧·୧୮%] ମହିଳା, ସମ୍ବଲପୁର ଜିଲ୍ଲାରେ ୩୭୨-୭୬୭ ଜଣ [୨୮·୦୨%] ମହିଳା, କେଉଁଝର ଜିଲ୍ଲାରେ ୧୭୨,୧୧୫ ଜଣ [୨୫·୦୯%] ମହିଳା, ଗଞ୍ଜାମ ଜିଲ୍ଲାରେ ୩୭୧,୮୬୨ ଜଣ [୨୩·୬୨%] ମହିଳା, ମୟୁରଭଞ୍ଜ ଜିଲ୍ଲାରେ ୧୮୧,୫୩୦ ଜଣ [୧୯·୫୨%] ମହିଳା, ବଲାଙ୍ଗୀର ଜିଲ୍ଲାରେ ୧୫୩,୪୭୬ ଜଣ [୧୮·୧୮%] ମହିଳା, ଫୁଲବାଣୀ ଜିଲ୍ଲାରେ ୬୨,୩୮୪ ଜଣ [୧୬·୮୮%] ମହିଳା, କଳାହାଣ୍ଡି ଜିଲ୍ଲାରେ ୯୮,୬୫୭ ଜଣ [୧୨·୩୯%] ମହିଳା, କୋରାପୁଟ ଜିଲ୍ଲାରେ ୧୬୩,୮୧୯ ଜଣ [୧୦·୬୬%] ମହିଳା ସାକ୍ଷର ଅଛନ୍ତି। ପୁରୁଷ ତୁଳନାରେ ନାରୀର ସାକ୍ଷରତା ଆଶାଜନକ ସଫଳତା ହାସଲ କରି ପାରିନାହିଁ। ଏଥିପାଇଁ ନାରୀ ମଧ୍ୟରେ ସଚେତନତା ସୃଷ୍ଟି ହେବା ଆବଶ୍ୟକ। ଏହି ଅଭିଯାନକୁ ଏକ ଚ୍ୟାଲେଞ୍ଜ ରୂପେ ମାନି ନେଇ ଶିକ୍ଷିତା ନାରୀ ସମାଜ ନିରକ୍ଷର ମା ମାଉସୀଙ୍କୁ ପ୍ରଥମେ ସାକ୍ଷର କରିବାକୁ ହେବ।

କେରଳ ରାଜ୍ୟରେ ୯୦-୫୯% ଅର୍ଥାତ ୧୦୦% ସାକ୍ଷର ହୋଇପାରିଛନ୍ତି। ତାମିଲନାଡୁର ୬୩·୭୨% ସାକ୍ଷର ଅଛନ୍ତି। ନାରୀ ସାକ୍ଷରତା ହାର ରାଜସ୍ଥାନ, ବିହାର ଓ ଉତ୍ତର ପ୍ରଦେଶରେ ସବୁଠାରୁ କମ୍ ରହିଛି। ଯଥା—ରାଜସ୍ଥାନରେ ୨୦·୮୪%, ବିହାରରେ ୨୩·୧୦% ଓ ଉତ୍ତର ପ୍ରଦେଶରେ ୨୬·୦୨% ନାରୀ ସାକ୍ଷର। ଦିଲ୍ଲୀ ଓ ଚଣ୍ଡିଗଡ଼ରେ ସାକ୍ଷରତାର ହାର ଯଥାକ୍ରମେ ୭୬·୦୯% ଓ ୭୮·୭୩%।

୧୯୯୧ ମସିହା ସର୍ଭେ ଅନୁଯାୟୀ ବିଶ୍ୱର ସମଗ୍ର ଜନସଂଖ୍ୟାରେ ଚୀନ୍ ୨୧·୭% , ଭାରତ ୧୬% , ଆଫ୍ରିକା ୧୨·୧% , ୟୁରୋପ ୯·୪% , ଯୁକ୍ତରାଷ୍ଟ୍ର ଆମେରିକା ୪·୭% , ସୋଭିଏତ୍ ରୁଷ ୫% ଓ ଅନ୍ୟମାନେ ୩୦·୭% ଜନସଂଖ୍ୟା ଅଧିକାରୀ ଅଟନ୍ତି। ସାକ୍ଷରତା ଅଭିଯାନକୁ ସାକାର ରୂପ ଦେବା ପାଇଁ ଭାରତର ୧୫୦ଟି ବିଶ୍ୱ ବିଦ୍ୟାଳୟ ଓ ସ୍କୁଲ ମାନଙ୍କରେ ଜାତୀୟ ସେବା ଯୋଜନା (N.S.S) ଖୋଲାଯାଇଛି। ଏହା ଭାରତ ସରକାରଙ୍କ ଏକ ପ୍ରମୁଖ ସ୍ୱେଚ୍ଛାସେବୀ ସଂସ୍ଥା। ଏହା ମାଧ୍ୟମରେ ୧୧ ଲକ୍ଷ ସ୍ୱେଚ୍ଛାସେବୀ ସେବାମୂଳକ, ଜନକଲ୍ୟାଣମୂଳକ କାର୍ଯ୍ୟକାରୀ ହାତକୁ ନେଇ ବେଶ୍ ସୁସ୍ଥୁରୂପେ କର୍ତ୍ତବ୍ୟ ସମ୍ପାଦନ କରି ଆସୁଛନ୍ତି। ୧୯୯୦ରେ ୧୦କୋଟି ଟଙ୍କା ଏହି N.S.S. ବାବଦରେ ବ୍ୟୟ ହେଉଥିବା ବେଳେ ୧୯୯୧ରେ ୧୨କୋଟି ଟଙ୍କା ବ୍ୟୟ ହୋଇଛି। ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟର ଛାତ୍ରୀମାନେ ମଧ୍ୟ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରି ସାକ୍ଷରତା ଅଭିଯାନକୁ ସୁଦୂର ପ୍ରସାରୀ ଗଣାଭିମୁଖୀ କରି ପାରୁଛନ୍ତି। ନାରୀ ଶିକ୍ଷାର ପ୍ରଗତି ଅଭାବରୁ ପ୍ରଦେଶ, ଦେଶ ଓ ଜାତି ଚିରଦିନ ଅବହେଳିତ, ଉପେକ୍ଷିତ ରହିଆସିଛି। ଦେଶରେ ନାରୀର ଭୂମିକା ଅନବଦ୍ୟ। ଇତିହାସର ପୃଷ୍ଠା ଅବଲୋକନ କଲେ ବହୁ ମହିୟସୀ ନାରୀଙ୍କ ବୀରତ୍ୱ ବ୍ୟଞ୍ଜନ କାହାଣୀ ଆମେ ଦେଖୁ। ଗତ ୧୯୯୨ରେ ଓଡ଼ିଶା ପୌର ପରିଷଦ ନିର୍ବାଚନରେ ଶତକଡ଼ା ୩୦ଜଣ ମହିଳାଙ୍କ ଅଂଶଗ୍ରହଣ ଓ ଅନେକେ ବିଜୟୀ ହୋଇ ନିଜ ନିଜର କର୍ମନୈପୁଣ୍ୟ, ପରାକାଷ୍ଠା ଓ ନିଷ୍ଠା ପ୍ରଦର୍ଶନ କରିଥିବାରୁ ସମସ୍ତେ ଧନ୍ୟବାଦାର୍ହ। ଖୋଦ୍ ରାଜଧାନୀ ଭୁବନେଶ୍ୱରରୁ ଶ୍ରୀମତୀ କିରଣବାଳା ମଙ୍ଗରାଜ ପୌରସଂସ୍ଥା ଅଧ୍ୟକ୍ଷା ନିର୍ବାଚିତ ହୋଇଥିବାରୁ ସମସ୍ତଙ୍କର ଏକ ଆଦର୍ଶ ହୋଇ ପାରିଛନ୍ତି। ପ୍ରଥମେ ଆମ ରାଜଧାନୀର ବସ୍ତି ଅଞ୍ଚଳରୁ ନିରକ୍ଷରତା ଦୂର କରିବାକୁ ପଡ଼ିବ। ୱାର୍ଡ ୱାର୍ଡ ବୁଲି ସାକ୍ଷରତା ଅଭିଯାନରେ ବାସୀନ୍ଦାଙ୍କୁ ସାମିଲ କରିବାକୁ ହେବ। ଏତଦ୍ ବ୍ୟତୀତ ହାଇସ୍କୁଲ

...ରେ S. U. P. W ରେ ୩ ଜଣଙ୍କୁ ସାକ୍ଷର କରିବାକୁ ଛାତ୍ରଛାତ୍ରୀଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ଏଥିରୁ ମିଳିଥିବା ମାର୍କ ସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାରେ ମିଶାଯାଇ ଫଳାଫଳ ପ୍ରକାଶ ହେବାର ବ୍ୟବସ୍ଥା ହୋଇଛି । ନିଜେ ପାଠ ପଢ଼ି ଅବା ଅନ୍ୟଠୁ ଜ୍ଞାନ ଅର୍ଜନ କରି ଶିକ୍ଷିତ ହୋଇଗଲେ ଦେଶର ମଙ୍ଗଳ ହୋଇ ପାରିବନି । ନିଜ ଅର୍ଜିତ ଜ୍ଞାନର ବିତରଣ କରିବାଠୁ ବଳି ବଡ଼ କର୍ତ୍ତବ୍ୟ ଆଉ କିଛି ନାହିଁ ।

ନାରୀ ଶିକ୍ଷାର ପ୍ରସାର ସକାଶେ ଗାଁ ଗହଳିକୁ ଯିବାକୁ ହେବ । ପରିବାରରେ ନାରୀ ସାକ୍ଷର ହେଲେ ସନ୍ତାନର ଲାଳନ ପାଳନ, ଶିଶୁର ସ୍ୱାସ୍ଥ୍ୟରକ୍ଷା, ଗର୍ଭବତୀ ଅବସ୍ଥାରେ ନିଜର ଯତ୍ନ, ନିଜର ସ୍ୱାସ୍ଥ୍ୟ ପାଳନ, ନୀତି ଯୁକ୍ତଥିବା ସମସ୍ୟାର ସମାଧାନର ପନ୍ଥା ଶିଶୁର ହିସାବ ବିକାଶ, ଆୟ ବ୍ୟୟର ହିସାବ, ଜମିବାଡ଼ି, ଘରର ରକ୍ଷଣାବେକ୍ଷଣ ଆଦି ନିର୍ଦ୍ଦ୍ୱନ୍ଦ୍ୱରେ ବୁଝିପାରିବ ଓ ଅନ୍ୟକୁ ମଧ୍ୟ ବୁଝାଇ ପାରିବ । ସତୀଦାହ, ବାଲ୍ୟ ବିବାହ ଭଳି ଅନ୍ୟାନ୍ୟ ସମସ୍ୟାକୁ ଏଡ଼ାଇ ପାରିବ । ବିଧବା ବିବାହକୁ ଘୃଣା ଦୃଷ୍ଟିରେ ଦେଖିବେନି । କୁସଂସ୍କାର, ଅଶିକ୍ଷା, ଅଜ୍ଞତା ପରି ହନ୍ତସନ୍ତ ହେବନି । ନିଜ ତେଲଲୁଣ ସଂସାରକୁ ସୁନା ସଂସାରରେ ପରିଣତ କରିପାରିବ । ଜାତି, ଧର୍ମ, ବର୍ଣ୍ଣ, ବୟସ ନିର୍ବିଶେଷରେ ସମସ୍ତେ ସାକ୍ଷର ହୋଇ ଶିକ୍ଷା ଗ୍ରହଣ କରିବା ଉଚିତ୍ । ଆଜି ଆଉ ନିଶ ଉଠା ପାଠ, ଛତୁ ଫୁଟା କାଠ ବଳୁ ନାହିଁ । ପ୍ରୌଢ଼ ଶିକ୍ଷାକୁ ଘୃଣା ନକରି ଆଦରି ନେବାକୁ ହେବ । ନିଜେ ଶିକ୍ଷିତ ହୋଇ ପିଲାଙ୍କୁ ଶିକ୍ଷିତ କଲେ ସେମାନେ ମଣିଷ ହୋଇ ସମାଜରେ ଓ ଜଣରେ ଗଣା ହେବେ । ନିରକ୍ଷରତା ଭଳି ସାମାଜିକ ବ୍ୟାଧିକୁ ଏଡ଼ାଇ ଦେବାକୁ ପଡ଼ିବ । ତେବେ ଯାଇ ଦେଶରୁ ବେକାରୀ, ଭିକାରୀ, ଜନସଂଖ୍ୟା ବୃଦ୍ଧି, ଦାରିଦ୍ର୍ୟ, ଅର୍ଥନୈତିକ ଅସନ୍ତୁଳନ, ସାମାଜିକ ଓ ପାରିବାରିକ ସମସ୍ୟାକୁ ଯୌତୁକ ସମସ୍ୟା ଦୂରେଇ ଦେଇ ପାରିବା ।

ଆଜି ଆମ ଦେଶରେ ସାକ୍ଷରତା ହାର ୬୨.୧୧ । ସ୍ୱାଧୀନତାର ୪୫ ବର୍ଷ ମଧ୍ୟରେ ମଧ୍ୟ ଆମେ ଆଜି ସମ୍ପୂର୍ଣ୍ଣ ସାକ୍ଷର ହୋଇପାରି ନାହୁଁ । ଆଜି ସମୟ ଆସିଛି ସାମ୍ପ୍ରଦାୟିକତା, ଜାତିଆଣ ଭାବ ଆଦି ଦୂର କରି ଭାବର ଆଦାନ ପ୍ରଦାନ ସହ ଜାତୀୟ ସଂହତି ପ୍ରତିଷ୍ଠା କରିପାରିବା । ନାରୀ ସାକ୍ଷରତା ଆଜି ଏକ ପବିତ୍ର ଶପଥରେ ପରିଣତ ହେଉ ।



ବ୍ରହ୍ମପୁରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମହିଳା ସମବାୟ ବ୍ୟାଙ୍କ ପରିଦର୍ଶନ କରୁଛନ୍ତି ।

# ଅଷ୍ଟମ ଯୋଜନାରେ ପଶୁ ସମ୍ପଦ ବିକାଶର ଆଭିମୁଖ୍ୟ

ଗୋକୁଳ ଚନ୍ଦ୍ର ପତି

ଓଡ଼ିଶାର ଅର୍ଥନୈତିକ ଅଭିବୃଦ୍ଧି ତଥା ଦାରିଦ୍ର୍ୟ ଦୂରୀକରଣରେ ପଶୁ ସମ୍ପଦର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ବିଭିନ୍ନ ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ଅଧିକ ଉତ୍ପାଦନକ୍ଷମ ପଶୁପକ୍ଷୀ ସୃଷ୍ଟି କରିବା ପାଇଁ ପଦକ୍ଷେପମାନ ଗ୍ରହଣ କରାଯାଇଛି । ଏହା ଫଳରେ ସପ୍ତମ ଯୋଜନା ସୁଦ୍ଧା ରାଜ୍ୟରେ ସଙ୍କର ପଶୁ ସମ୍ପଦର ଅଭିବୃଦ୍ଧି ଘଟିଥିଲେ ମଧ୍ୟ ସର୍ବଭାରତୀୟ ସ୍ତରରେ ଦୁଗ୍ଧ ଓ ଅଣ୍ଡା ଉତ୍ପାଦନ କ୍ଷେତ୍ରରେ ଓଡ଼ିଶା ବହୁ ପଛରେ ଅଛି । ଏହାର ପ୍ରଧାନ କାରଣ ହେଲା ଅଧିକ ଉତ୍ପାଦନକ୍ଷମ ଗାଈ ଓ କୁକୁଡ଼ା ସଂଖ୍ୟା ପ୍ରଥମରୁ ଖୁବ୍ କମ୍ ଥିଲା । ଏହାର ଯଥେଷ୍ଟ ଅଭିବୃଦ୍ଧି ପାଇଁ ଅଧିକ ପୁଞ୍ଜି ବିନିଯୋଗର ଆବଶ୍ୟକତା ରହିଅଛି । ଅଷ୍ଟମ ଯୋଜନା କାଳରେ ପଶୁପକ୍ଷୀମାନଙ୍କ ଗୁଣାତ୍ମକ ମାନ ବୃଦ୍ଧିକରି ସେମାନଙ୍କୁ ଅଧିକ ଉତ୍ପାଦନକ୍ଷମ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ବଂଶ ବୃଦ୍ଧି କରିବା ପାଇଁ ବିଭିନ୍ନ ସୂତ୍ରରୁ ଆବଶ୍ୟକ ପୁଞ୍ଜି ବିନିଯୋଗର ବ୍ୟବସ୍ଥା କରାଯାଉଛି ।

ଅଷ୍ଟମ ଯୋଜନା କାଳରେ ଏହି ଆଭିମୁଖ୍ୟର ପୂରଣ ପାଇଁ ନିମ୍ନଲିଖିତ କାର୍ଯ୍ୟକ୍ରମଗୁଡ଼ିକ ଉପରେ ଗୁରୁତ୍ୱ ଦିଆଯିବ :—

## ସଙ୍କର ପ୍ରଜନନ କାର୍ଯ୍ୟକ୍ରମ ଓ ଗବ୍ୟଶାଳା ଉନ୍ନୟନ

୧୯୯୧–୯୨ ସୁଦ୍ଧା ରାଜ୍ୟରେ ୫୦୦ ହଜାର ମେଟ୍ରିକ୍‌ଟନ୍ ଦୁଗ୍ଧ ଉତ୍ପାଦିତ ହେବାର ଅଟକଳ କରାଯାଇଛି, ଯାହାର ବାର୍ଷିକ ଅଭିବୃଦ୍ଧି ହାର ଶତକଡ଼ା ୩ ଅଟେ । ଅଷ୍ଟମ ଯୋଜନା କାଳରେ ଦୁଗ୍ଧ ଉତ୍ପାଦନର ବାର୍ଷିକ ଅଭିବୃଦ୍ଧି ହାର ଶତକଡ଼ା ୭କୁ ବୃଦ୍ଧି କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହି ଲକ୍ଷ୍ୟ ହାସଲ କରିବା ପାଇଁ ସଙ୍କର ପ୍ରଜନନ କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ କରାଯାଇ ପ୍ରାୟ ଡ ଲକ୍ଷ ପ୍ରଜନନକ୍ଷମ ସଙ୍କର ଗାଈ ସୃଷ୍ଟି କରିବାର ଯୋଜନା ରହିଛି । ଏହା ବ୍ୟତୀତ ଏହି ଯୋଜନା କାଳ ମଧ୍ୟରେ ଏକଲକ୍ଷ ଉନ୍ନୋନ୍ନତ ମଇଁଷି ଉତ୍ପାଦନ କରାଯିବାର ଲକ୍ଷ୍ୟ ରଖାଯାଇଛି । ଏଥିପାଇଁ ବର୍ଷକୁ ଅଧିକତଃ ପାଞ୍ଚ ଲକ୍ଷ ପ୍ରଜନନକ୍ଷମ ଗାଈ ଏବଂ ମଇଁଷିଙ୍କୁ ହିମୀକୃତ ଶୁକ୍ର ଦ୍ୱାରା କୃତ୍ରିମ ପ୍ରଜନନ ପରିସରଭୁକ୍ତ କରାଯିବ ।

ଦୁଗ୍ଧ ବନ୍ୟା ଜିଲ୍ଲାମାନଙ୍କରେ ସଘନ ଗୋ ଉନ୍ନୟନ କାର୍ଯ୍ୟକ୍ରମ ପୁନର୍ବିନ୍ୟାସ କରାଯାଇ ପ୍ରାୟ ୫୦୦ ନୂତନ କୃତ୍ରିମ ପ୍ରଜନନ କେନ୍ଦ୍ର ପ୍ରତିଷ୍ଠା କରାଯିବାର ବନ୍ଦୋବସ୍ତ କରାଯିବ । ସେଥିପାଇଁ ଆବଶ୍ୟକ ସର୍ଭେ ଆରମ୍ଭ କରାଯାଇଅଛି । ଆବଶ୍ୟକ ଯେଉଁ କୃତ୍ରିମ ପ୍ରଜନନ କେନ୍ଦ୍ରରେ ଏ କାର୍ଯ୍ୟକ୍ରମ ... ସ୍ଥଳନାହିଁ ସେଗୁଡ଼ିକ ବନ୍ଦ କରି ଉପରୋକ୍ତ ସ୍ଥାନରେ ନୂତନ କେନ୍ଦ୍ର ଖୋଲାଯିବ ଏବଂ ବିଭିନ୍ନ ଦୁଗ୍ଧ ଉତ୍ପାଦନ ସୋସାଇଟିରେ ... ପ୍ରଜନନ କେନ୍ଦ୍ର ସ୍ଥାପନ କରାଯିବ । ଘୁମୁସରୀ ଏବଂ ବିଞ୍ଝାରପୁରୀ ଗାଈ ପାରଳାଖେମୁଣ୍ଡି ମଇଁଷି ଭଳି ଗାଈମାନଙ୍କର ଗୁଣାତ୍ମକ ମାନ ବୃଦ୍ଧି କରି ଅଧିକ ଉତ୍ପାଦନକ୍ଷମ କରାଯିବ ।

ଗାଈମାନଙ୍କର ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ ରାଜ୍ୟସାରା ଦୁଗ୍ଧ ଉତ୍ପାଦକ ସମବାୟ ସମିତି ଏବଂ ବିଭାଗୀୟ ସଂସ୍ଥାମାନଙ୍କ ଜରିଆରେ ତୃଣ ଉନ୍ନୟନ କାର୍ଯ୍ୟକ୍ରମକୁ ପ୍ରୋତ୍ସାହନ ଦିଆଯିବା ସଙ୍ଗେ ସଙ୍ଗେ ପଶୁପାଳକମାନଙ୍କୁ ଅଧିକ ଉତ୍ପାଦନ ପାଇଁ ଉପଯୁକ୍ତ ତାଲିମ ଦିଆଯିବାର ବ୍ୟବସ୍ଥା ୮ମ ଯୋଜନାରେ କରାଯାଉଅଛି । ତୃଣ ଉତ୍ପାଦନ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଜଙ୍ଗଲ, କୃଷି, ଉଦ୍ୟାନ, ମୃତ୍ତିକା ସଂରକ୍ଷଣ ବିଭାଗ ଇତ୍ୟାଦିମାନଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରାଯିବ । ବର୍ତ୍ତମାନ କୃଷକମାନଙ୍କୁ ଘାସ ମଞ୍ଜି ଓ ମୂଳ ଯୋଗାଇବା ପାଇଁ ରାଜ୍ୟରେ ୭ ଗୋଟି ଘାସ ମଞ୍ଜି ଉତ୍ପାଦନ ଫାର୍ମ ଅଛି । ଅଷ୍ଟମ ଯୋଜନାର ଶେଷ ସୁଦ୍ଧା ୫ ଲକ୍ଷ ସଙ୍କର ଜାତୀୟ ଗାଈଙ୍କୁ ଅତିରିକ୍ତ ଘାସ ଯୋଗାଇବା ପାଇଁ ଘାସ ମଞ୍ଜି ଉତ୍ପାଦନର ପରିମାଣ ଏକ ହଜାର କ୍ୱିଣ୍ଟାଲକୁ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଶହେ ଲକ୍ଷ୍ୟ ମୂଳ ଏବଂ ଗଛ ଉତ୍ପାଦନର ଲକ୍ଷ୍ୟ ରହିଛି । ନଡ଼ାକୁଟା ଏବଂ ନଷ୍ଟ କୃଷି ସାମଗ୍ରୀକୁ ଉନ୍ନତ ମାନର ଗୋ ଖାଦ୍ୟ ରୂପେ ବ୍ୟବହାର କରିବା ପାଇଁ ଏକ କାର୍ଯ୍ୟକ୍ରମ ଆରମ୍ଭ କରାଯିବାର ପ୍ରସ୍ତାବ ରହିଛି । ଏହା ଫଳରେ ଦୁଗ୍ଧ ଉତ୍ପାଦନ ବୃଦ୍ଧି ଘଟି ଅଷ୍ଟମ ଯୋଜନା ଶେଷ ବେଳକୁ ବାର୍ଷିକ ଉତ୍ପାଦନ ସ୍ଥାୟୀ ୭୦୦ ହଜାର ମେଟ୍ରିକ୍ ଟନ୍ ହେବ ବୋଲି ଅଟକଳ କରାଯାଇଛି ।

କୃତ୍ରିମ ପ୍ରଜନନ କାର୍ଯ୍ୟକ୍ରମର ସଫଳ ରୂପାୟନ ପାଇଁ ଉନ୍ନତ ଷଣ୍ଢ ଉତ୍ପାଦନ ଆବଶ୍ୟକ, ଏଥିପାଇଁ Embryo Transfer Technology ଏହି ବର୍ଷଠାରୁ ରାଜ୍ୟରେ ଗ୍ରହଣ କରାଯାଇଛି ।

## କୁକ୍କୁଟ ଉନ୍ନୟନ

ଓଡ଼ିଶାରେ କୁକ୍କୁଟ ଉନ୍ନୟନ ପାଇଁ ବ୍ୟାପକ କ୍ଷେତ୍ର ରହିଛି । ସପ୍ତମ ଯୋଜନା ସୁଦ୍ଧା ସମଗ୍ର ଦେଶରେ ମୁଣ୍ଡ ପିଛା ବର୍ଷକୁ ୨୮ଟି ଅଣ୍ଡା ଉତ୍ପାଦନ ହେଉଥିବା ବେଳେ ଆମ ରାଜ୍ୟରେ ମୁଣ୍ଡ ପିଛା ମାତ୍ର ୧୪ଟି ଅଣ୍ଡା ଉତ୍ପାଦନ ହୋଇଛି । ଅଷ୍ଟମ ଯୋଜନା କାଳରେ ଅଣ୍ଡା ଉତ୍ପାଦନ ବର୍ଷକୁ ବାର ପ୍ରତିଶତକୁ ବୃଦ୍ଧି କରିବା ପାଇଁ ଯୋଜନା ପ୍ରସ୍ତୁତ କରାଯାଇଛି । ଓପୋଲଫେଡ୍ ଏବଂ ଚେକ ଫାର୍ମକୁ ଦୃଢ଼ୀଭୂତ କରାଯାଇ ଅଷ୍ଟମ ଯୋଜନା କାଳରେ ବର୍ଷକୁ ୯୦୦ ଲକ୍ଷ ଅଣ୍ଡା ଉତ୍ପାଦନ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ଯାହା ଫଳରେ ଅଷ୍ଟମ ଯୋଜନା ଶେଷ ସୁଦ୍ଧା ବର୍ଷକୁ ... ମୁଣ୍ଡପିଛା ୨୭ଟି ଲେଖାଏଁ ଉତ୍ପାଦନ ହୋଇପାରିବ । ତତ୍ସହ ଓ

କୁକୁଡ଼ା ପାଳନ କାର୍ଯ୍ୟକ୍ରମର ବିକାଶ ପାଇଁ ଅଷ୍ଟମ ଯୋଜନା କାଳରେ ରାଜ୍ୟରେ କୃଷକମାନଙ୍କୁ ଏକଲକ୍ଷ ବତକ ଚିଆଁ ଏବଂ ୨ ଲକ୍ଷ ୫୦ ହଜାର ଅଣ୍ଡା ଦିଆ କୁକୁଡ଼ା ଚିଆଁ ଯୋଗାଇ ଦିଆଯିବା ବ୍ୟବସ୍ଥା କରାଯାଇଛି ।

## କ୍ଷୁଦ୍ର ପଶୁ ଉନ୍ନୟନ

ରାଜ୍ୟରେ ଥିବା ଘୁଷୁରୀ, ମେଣ୍ଢା, ଛେଳି ଓ ଠେକୁଆ ପାଳଗୁଡ଼ିକୁ ଦୃଢ଼ୀଭୂତ ଓ ସମ୍ପ୍ରସାରଣ କରି ଓ ବିଦେଶରୁ ମେଣ୍ଢା ଓ ଘୁଷୁରୀ ଆଣି ସଙ୍କର ଓ କ୍ରମୋନ୍ନତ ଗାରଡ଼, ଅଣ୍ଡିରା ଘୁଷୁରୀ, କ୍ରମୋନ୍ନତ ବୋଦା ଓ ବ୍ରଏଲର ଠେକୁଆ କୃଷକମାନଙ୍କୁ ତଥା ଯୋଜନା ଅଞ୍ଚଳକୁ ଯୋଗାଇ ଦେବାର ଲକ୍ଷ୍ୟ ରଖାଯାଇଛି ।

## ସ୍ୱାସ୍ଥ୍ୟରକ୍ଷା

ଅଷ୍ଟମ ଯୋଜନା କାଳରେ ପଶୁ ଏବଂ ପକ୍ଷୀମାନଙ୍କୁ ବିଭିନ୍ନ ପ୍ରକାର ସଂକ୍ରାମକ ରୋଗରୁ ରକ୍ଷା କରିବା ପାଇଁ ଅଧିକ ଔଷଧ ପ୍ରସ୍ତୁତି ନିମନ୍ତେ ରାଜ୍ୟର ବ୍ରହ୍ମପୁର ଏବଂ ସମ୍ବଲପୁରଠାରେ ପଶୁଟୀକା ଉତ୍ପାଦକ କେନ୍ଦ୍ର ପ୍ରତିଷ୍ଠାର ବ୍ୟବସ୍ଥା ରଖାଯାଇଛି । ବର୍ତ୍ତମାନ ରାଜ୍ୟରେ ୫୧୪ଟି ପଶୁ ଚିକିତ୍ସା କେନ୍ଦ୍ର ଏବଂ ୨,୮୧୬ଟି ପଶୁଧନ ସହାୟକ କେନ୍ଦ୍ର ଅଛି । ଫୁଲନଖରାଠାରେ ଗୋଟିଏ ପଶୁରୋଗ ଗବେଷଣା ପ୍ରତିଷ୍ଠାନ ଓ ଭୁବନେଶ୍ୱରଠାରେ ଗୋଟିଏ ଭାରତୀୟ ପଶୁ ଗବେଷଣା ପ୍ରତିଷ୍ଠାନର ଏକ ଶାଖା ଖୋଲାଯାଇଛି ।

## ବିଭିନ୍ନ ସଂସ୍ଥାରୁ ଆର୍ଥିକ ସହାୟତା

ଜାତୀୟ ସମବାୟ ଉନ୍ନୟନ ସଂସ୍ଥା, ବିଶ୍ୱବ୍ୟାଙ୍କ୍ ଓ ନାବାର୍ଡ଼ ପ୍ରଭୃତି ସଂସ୍ଥାରୁ ଋଣ ଏବଂ ଆର୍ଥିକ ସହାୟତା ଆଣି ପଶୁପକ୍ଷୀ ସମ୍ପଦର ବିକାଶ ଓ ବିବିଧିକରଣ କାର୍ଯ୍ୟକ୍ରମର ଲକ୍ଷ୍ୟ ରଖାଯାଇଛି । ଏଥିପାଇଁ ସରକାରଙ୍କ ଦ୍ୱାରା ଏକ ଯୋଜନା ପ୍ରସ୍ତୁତ କରାଯାଇ ପଶୁ ସମ୍ପଦ ବିକାଶ କ୍ଷେତ୍ରରେ ଅଧିକ ପୁଞ୍ଜି ବିନିଯୋଗ ପାଇଁ ପଦକ୍ଷେପ ନିଆଯାଉଅଛି ।

---

*ନିର୍ଦ୍ଦେଶକ,*
*ପଶୁ ପାଳନ ପଶୁ ଚିକିତ୍ସା କେନ୍ଦ୍ର, କଟକ ।*



ନୂଆଦିଲ୍ଲୀର ଉତ୍କଳ ଭବନରେ ନୂତନ ଭାବେ ଖୋଲାଯାଇଥିବା ଓଡ଼ିଶା ସୂଚନା କେନ୍ଦ୍ରକୁ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଉଦ୍‌ଘାଟନ କରୁଛନ୍ତି । ଏହି ଉତ୍ସବରେ ବିଭାଗୀୟ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଓ ନିର୍ଦ୍ଦେଶକ ଶ୍ରୀ ରାଜକିଶୋର ରଥ ଉପସ୍ଥିତ ଅଛନ୍ତି (ଓ/ଚ) ।

# କିମ୍ବଦନ୍ତୀର ସହର ବୁଗୁଡ଼ା

ବୃଷକେତୁ ଦାଶ

କିମ୍ବଦନ୍ତୀ ଇତିହାସ ନହେଲେ ମଧ୍ୟ ଏହା କେତେକାଂଶରେ ଐତିହାସିକ ତଥ୍ୟ ଯୋଗାଇଥାଏ । ଅଜଣାକୁ ଜାଣିବା ମନୁଷ୍ୟର ଏକ ସହଜାତ ପ୍ରବୃତ୍ତି । ସେହିଭଳି ଏକ ପ୍ରାଚୀନ ଐତିହାସିକ ବହୁଳ କିମ୍ବଦନ୍ତୀର ସ୍ଥାନ ବୁଦ୍ଧଗୁଡ଼ା ବା 'ବୁଗୁଡ଼ା' ।

ବାଘୁଆ ନଦୀ, ବିରଞ୍ଚି ନାରାୟଣ ମନ୍ଦିର, ବୁଦ୍ଧଗିରି ପର୍ବତ, ବ୍ରାହ୍ମଣ ଶାସନ ଓ ବୁଗୁଡ଼ାକୁ ନେଇ 'ବ'କାର ବନାନଯୁକ୍ତ 'ବୁଗୁଡ଼ା' ଏକ ଐତିହାସିକ ଧର୍ମପୀଠ ରୂପେ ସମଗ୍ର ଓଡ଼ିଶାରେ ସୁବିଖ୍ୟାତ ଓ ସର୍ବଜନବିଦିତ । ବୁଦ୍ଧଗୁଡ଼ାରୁ ବୁଗୁଡ଼ା ଓ ବୁଢ଼ୀଖୋଲ ବା ବୁଢ଼ାଖୋଲରୁ ବୁଦ୍ଧଖୋଲ ବୋଲି କେତେକ କହିଲାବେଳେ ଅନେକଙ୍କ ମତରେ ବୁଦ୍ଧଙ୍କ ନାମରେ ଏହି ଖୋଲ ନାମିତ । ତେବେ ଭଞ୍ଜ ବଂଶର ଲୁକ୍କାୟିତ ଅମର କୀର୍ତ୍ତି ଗାଥାଟି ଲୋକ ଲୋଚନକୁ ଆସିନପାରି ଏ ଯାବତ୍ ଅଜ୍ଞାତ ଅବସ୍ଥାରେ ରହିଯାଇଛି । ଭଞ୍ଜ ବଂଶୋଦ୍ଭବ ପୁଣ୍ୟ ଶ୍ଳୋକ ନୃପତିଗଣଙ୍କ ମଧ୍ୟରେ ଶ୍ରୀକର ଭଞ୍ଜ ଅଭୂତପୂର୍ବ କୀର୍ତ୍ତିକର୍ମ ଓ ଧର୍ମ ପରାୟଣ ନୃପତି ଥିଲେ । ବହୁ ଗୁମ୍ଫା ମନ୍ଦିର ଓ ବ୍ରାହ୍ମଣ ଶାସନାଦି ପ୍ରତିଷ୍ଠା ସହ ଓଡ଼ିଶାର ଅଦ୍ୱିତୀୟ କାଠ ନିର୍ମିତ କୋଣାର୍କ ଶ୍ରୀ ବିରଞ୍ଚି ନାରାୟଣ ମନ୍ଦିର ତାଙ୍କର କୀର୍ତ୍ତି । ବୁଦ୍ଧଖୋଲକୁ ବାଦ ଦେଲେ ତାହାଣ ଗୁମ୍ଫା ବା ଦସ୍‌ଣା ଗୁମ୍ଫା ଅଶୋକ ଗୁମ୍ଫା, ସିଦ୍ଧି ଗୁମ୍ଫା ସାତ ବୁହୁଣୀ ଗୁମ୍ଫା ପ୍ରଭୃତି ଗୁମ୍ଫା ଏଠାରେ ଦେଖାଯାଏ ।

ବୁଗୁଡ଼ା ନିକଟସ୍ଥ ମୁକୁନ୍ଦପୁରଠାରେ ରାଜା ମୁକୁନ୍ଦଦେବଙ୍କ ଏକ ଦୁର୍ଗ ଥିବାର ପ୍ରମାଣ ମିଳେ । ଗୁମ୍ଫାଗୁଡ଼ିକୁ ବାଦଦେଲେ ଉଦ୍ୟାନଖୋଲ, ମରିଚିଆଖୋଲ, ଭାଲୁଖୋଲ, ବୋଡ଼ାଖୋଲ, କାଞ୍ଚିଆଖୋଲ, ବାନାଖୋଲ, ବିଭୂତିଆଖୋଲ, ବେତଖୋଲ, ପଦ୍ମାଖୋଲ, ଲିଆ ପକାଳଖୋଲ ପ୍ରଭୃତି ଅନେକ ଖୋଲ ଏଠାରେ ଦେଖାଯାଏ । ଏଣୁ ଯଥାର୍ଥରେ ମଧ୍ୟ କୁହାଯାଉଛି ଯେ 'ଅଣି ପର୍ବତ ନବେ ଖୋଲ, ତେବେ ସେ ଜାଣିବ ବୁଦ୍ଧ ଖୋଲ' ।

ଦସ୍‌ଣା ଖୋଲର ପାଦ ଦେଶରେ ଏକ ପଥର ଦେଖାଯାଏ, ତାକୁ ଲୁଣଢ଼ା ପଥର କୁହାଯାଏ । ଶୁଣାଯାଏ ମରହଟ୍ଟା ଦସ୍ୟୁମାନେ ଲୁଟି କରି ଆଣିଥିବା ଖାଦ୍ୟ ଶସ୍ୟ ଉକ୍ତ ପଥରରେ କୁଟି ଖାଉଥିଲେ । ଏହାକୁ ସାତ ବୁହୁଣୀ ବୋଲି ମଧ୍ୟ କୁହାଯାଏ । ବୁଦ୍ଧଖୋଲ ଜଳପ୍ରପାତର ପଶ୍ଚିମରେ ଥିବା ଏକ ସ୍ଥାନକୁ ଟଙ୍କା ଗଡ଼ା ରୂପେ ବର୍ତ୍ତମାନ ସୁଦ୍ଧା ଜନସାଧାରଣ କହିଥାନ୍ତି । ଅନେକଙ୍କର ବିଶ୍ୱାସ, ଏହି ସ୍ଥାନରେ ଅତୀତରେ ଟଙ୍କା ଗଚ୍ଛିତ ରଖାଯାଉଥିଲା ।

ଭାରତରେ ବୌଦ୍ଧ ଧର୍ମର ବ୍ୟାପକ ପ୍ରସାର ଘଟୁଥିବା ବେଳେ କେତେକ ବୌଦ୍ଧ ଭିକ୍ଷୁ ଏଠାକୁ ଆସି ବୁଦ୍ଧମୂର୍ତ୍ତି ସ୍ଥାପନ କରି ବୌଦ୍ଧ ଧର୍ମ ପ୍ରଚାର ଓ ପ୍ରସାର କରୁଥିଲେ । ଏଣୁ ଏହାର ନାମ ବୁଦ୍ଧ ନାମାନୁଯାୟୀ ବୁଦ୍ଧଖୋଲ ବୋଲି ରଖାଯାଇଥିବାର ଶୁଣାଯାଏ । **ଜଳ ପ୍ରପାତ ଓ ପର୍ବତର ସମତଳ ଅଞ୍ଚଳ ତୀର ଦେଇ ବୁଦ୍ଧଙ୍କ ମନୋରମ ଦୃଶ୍ୟରେ ଆକୃଷ୍ଟ ହୋଇ ବୌଦ୍ଧ ସନ୍ନ୍ୟାସୀମାନେ ଏହି** ସ୍ଥାନଟିକୁ ନିର୍ବାଚନ କରିଥିବାର ଏକ ଯଥାର୍ଥ ଓ ଗ୍ରହଣଯୋଗ୍ୟ କାରଣ ହୋଇଥାଇପାରେ । ବୁଦ୍ଧଖୋଲଠାରେ ଥିବା ପ୍ରଥମ ଧାଡ଼ିର ୩ଟି ଓ ଦ୍ୱିତୀୟ ଧାଡ଼ିର ୩ଟି ଅକ୍ଷରର ଶିଳାଲିପି ବର୍ତ୍ତମାନ ଆଉ ଏଠାରେ ନାହିଁ ।

ଦେବବଂଶ ରାଜାଙ୍କ ଦ୍ୱାରା ନିର୍ମିତ ମୁକୁନ୍ଦପୁର ଗଡ଼କୁ ଗୋ ଖୋଲ ବୋଲି କୁହାଯାଏ । ବୁଦ୍ଧଖୋଲର ନିମ୍ନ ଦେଶରେ ମୁକୁନ୍ଦପୁର ଗଡ଼ରେ ଦେବବଂଶ ରାଜା ମୁକୁନ୍ଦଦେବ ରାଜୁତି କରୁଥିଲେ । ଏହା ବୁଗୁଡ଼ାଠାରୁ ୭ କିଲୋମିଟର ଦୂରରେ ଅବସ୍ଥିତ । ମୁକୁନ୍ଦପୁର ଗଡ଼ରେ ଯେଉଁ ଜନବସତି ଦେଖାଯାଏ, ତାହା ତତ୍କାଳୀନ ଶ୍ରମିକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ଓ ସେମାନେ ଅସ୍ତ୍ରଶସ୍ତ୍ର ନିର୍ମାଣ କାର୍ଯ୍ୟରେ ନିପୁଣ ଥିଲେ । ଶୁଣାଯାଏ ଦେବବଂଶ ରାଜାମାନଙ୍କ ସହ ଭଞ୍ଜବଂଶ ରାଜାମାନଙ୍କର ଉତ୍ତମ ସମ୍ପର୍କ ନଥିଲା । ଏହି ବିବାଦର ସମାଧାନ ଉତ୍କଳର ଗଜପତିଙ୍କ ପ୍ରଚେଷ୍ଟାରେ କରାଯାଇଥିଲା । ମୁକୁନ୍ଦପୁରରେ ରାଜେଶ୍ୱର ଦେବ ଓ ଘୁମୁସରରେ ଗୋପୀନାଥ ଭଞ୍ଜ ରାଜୁତି କରୁଥାନ୍ତି । ରାଜେଶ୍ୱର ଦେବ — ନରସିଂହ ଦେବ (ଗଜପତିଙ୍କ ଭଉଣୀକୁ) ବିବାହ କରିଥିଲେ । ଫଳରେ ନରସିଂହ ଦେବଙ୍କ ମଧ୍ୟସ୍ଥତାରେ ଉଭୟ ବଂଶଜ ରାଜାମାନଙ୍କର ବିବାଦ ସମାଧାନ ହୋଇଥିଲା ।

ବିବାଦ ସମାଧାନ ପରେ ଉଭୟ ରାଜା ବୁଗୁଡ଼ା ନିକଟସ୍ଥ କଣ୍ଟୀ ଗ୍ରାମର କୁବରେଶ୍ୱର ମନ୍ଦିର ଦର୍ଶନ କରିବା ପାଇଁ ଯାଉଥିଲେ । ଗୋପୀନାଥ ଭଞ୍ଜ ସ୍ଥୂଳକାୟ ଥିବାରୁ ମନ୍ଦିର ମଧ୍ୟକୁ ପ୍ରବେଶ କରିପାରି ନଥିଲେ । ଏଣୁ ଗଜପତି ନରସିଂହ ଦେବ ଗୋପୀନାଥ ଭଞ୍ଜଙ୍କୁ 'ପାତଳି' ଆଖ୍ୟା ଦେଇଥିଲେ । ସେହି ଦିନଠାରୁ ଗୋପୀନାଥ ଭଞ୍ଜ ପାତଳି ଗୋପୀନାଥ ରୂପେ ପରିଚିତ ।

ରାଜେଶ୍ୱର ଦେବଙ୍କ ପରବର୍ତ୍ତୀ ରାଜାମାନଙ୍କ ମଧ୍ୟରେ ଶଙ୍କର ଦେବ, ବିଶ୍ୱେଶ୍ୱର ଦେବ, ଶିବ ଦାସ ଦେବ ମୁକୁନ୍ଦପୁରଠାରେ ଶାସନ କରୁଥିଲେ । କୃଷ୍ଣ ଭଞ୍ଜଙ୍କ ସହିତ ମତାନ୍ତର ହେତୁ ଶିବ ଦାସ ଦେବ କିଛିଦିନ ଆତ୍ମଗୋପନ କରି ରହିଥିଲେ । କୃଷ୍ଣ ଭଞ୍ଜଙ୍କ ଭୟରେ ଶିବ ଦାସ ଦେବଙ୍କ ରାଣୀମାନେ 'ରାଣୀଗଣ୍ଡ'କୁ ଡେଇଁ ଆତ୍ମହତ୍ୟା କରିଥିଲେ । 'ରାଣୀଗଣ୍ଡ' ବୁଗୁଡ଼ା ନିକଟବର୍ତ୍ତୀ ଭଗବାନପୁର ବାଘୁଆ ନଦୀରେ ଅବସ୍ଥିତ ।

ଶଙ୍କରାଚାର୍ଯ୍ୟଙ୍କ ସନାତନ ହିନ୍ଦୁ ଧର୍ମର ବହୁଳ ପ୍ରସାର ଦ୍ୱାରା ବୌଦ୍ଧ ଧର୍ମ ବିଭିନ୍ନ ଅଞ୍ଚଳରେ ଜନପ୍ରିୟତା ହରାଇଲା । ବୁଦ୍ଧଙ୍କ

ଛାଡ଼ି ବୌଦ୍ଧ ଭିକ୍ଷୁମାନେ ଲୁଚିଗଲେ । ୧୯୨୫ ମସିହାଯାଏଁ ଜଗତିଶ୍ୱର ମନ୍ଦିର ନିର୍ମାଣ ହୋଇନଥିଲା । ସେହି ମସିହାରେ ଜଣେ ଏକ ପୂଜକ କ୍ରୋଧରେ ବୁଦ୍ଧ ମୂର୍ତ୍ତିଗୁଡ଼ିକୁ ଫିଙ୍ଗି ଦେଇଥିଲେ । ବର୍ତ୍ତମାନ ଯାହାକି ପ୍ରପାତ ନିକଟରେ ଦେଖିବାକୁ ମିଳେ । ଶିବ ଦାସ — ପଞ୍ଚ ଶମ୍ଭୁ, ଗଙ୍ଗାଧରେଶ୍ୱର, ଜଗତିଶ୍ୱର, କୁବରେଶ୍ୱର, ସିଦ୍ଧେଶ୍ୱର ଓ ବୁଦ୍ଧେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଏତଦ୍ ବ୍ୟତୀତ ଢାଇମରେ କୁବରେଶ୍ୱର, ମୁକୁନ୍ଦପୁରରେ କପିଳେଶ୍ୱର, ଭଗବାନପୁରରେ ବାଲୁକେଶ୍ୱର ମନ୍ଦିର ଶିବ ଦାସ ଦେବ ସ୍ଥାପନ କରିଥିଲେ ।

ଅପର ପକ୍ଷରେ ଭଞ୍ଜରାଜ ଶ୍ରୀକର ଭଞ୍ଜ ବୁଗୁଡ଼ାସ୍ଥ ବିରଞ୍ଚି ନାରାୟଣ ମନ୍ଦିର, ମାଳତି ଗଡ଼ରୁ ବିଗ୍ରହ ଆଣି କାଠର କୋଣାର୍କ ତୋଳିଥିବା ସଙ୍ଗେ ସଙ୍ଗେ ବୁଗୁଡ଼ା ଶ୍ରୀବଳଦେବ ଜୀଉ ମନ୍ଦିର, କୃଷ୍ଣଶରଣପୁର, ହରିଶରଣପୁର, ବୀର ଧନଞ୍ଜୟପୁର, ତିନୋଟି ବ୍ରାହ୍ମଣ ଶାସନ, ବୁଗୁଡ଼ା ଗଡ଼ଖାଇ, ପଥୁରିଆ ସାହି ପ୍ରଭୃତି ପ୍ରତିଷ୍ଠା କରିଥିଲେ । କ୍ରମେ ବୁଗୁଡ଼ା ସହର ବୁଦ୍ଧଗୁଡ଼ାରୁ ବୁଗୁଡ଼ାରେ ନାମାନ୍ତରିତ ହୋଇଛି ।

---

*ପ୍ରଧାନ ଶିକ୍ଷକ,*
*ବୁଦ୍ଧଗିରି ବିଦ୍ୟାପୀଠ,*
*ବୀର ଧନଞ୍ଜୟପୁର, ବୁଗୁଡ଼ା,*
*ଗଞ୍ଜାମ ।*



ଓଡ଼ିଶା ଦିବସ ଉତ୍ସବ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଭୁବନେଶ୍ୱର ଭୀମଭୋଇ ଅନ୍ଧ ବିଦ୍ୟାଳୟର ଶାରୀରିକ ଅକ୍ଷମ ସହକାରୀ ଶିକ୍ଷୟିତ୍ରୀ କୁମାରୀ ଇନ୍ଦିରା ପଟ୍ଟନାୟକଙ୍କୁ ପାଞ୍ଚ ହଜାର ଟଙ୍କା ପ୍ରଦାନ କରୁଛନ୍ତି (୧/୪) ।

# ବଲାଙ୍ଗୀର ଜିଲ୍ଲାର ଦାଦନ ଶ୍ରମିକ

ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାଶ

ଦାଦନ ଅର୍ଥ ଅଗ୍ରୀମ। ଏହି ଶବ୍ଦଟି ଗଞ୍ଜାମ ଏବଂ ପୁରୀ ଜିଲ୍ଲାରେ ବେଶ୍ ସୁପରିଚିତ। କାରଣ ଏହି ଅଞ୍ଚଳରୁ ବହୁ ଦାଦନ ଶ୍ରମିକ ଦଳ ଦଳ ହୋଇ ଭାରତର ଅନ୍ୟାରାଜ୍ୟକୁ ଠିକାଦାରଙ୍କ ଜରିଆରେ ପ୍ରତିବର୍ଷ ଯାଉଛନ୍ତି। ଏଣୁ ଏମାନଙ୍କୁ ଦାଦନ କୁଲି ଏବଂ ସେମାନଙ୍କୁ ସଂଗ୍ରହ କରି ଚାଲାଣ କରୁଥିବା ଠିକାଦାରଙ୍କୁ ଦାଦନ ସର୍ଦ୍ଦାର ବୋଲି କୁହାଯାଉଛି। ଏହି ଶ୍ରମିକମାନେ ମାଟିକାମ କରିବାରେ ବେଶ୍ ପାରଙ୍ଗମ ବୋଲି ଏମାନଙ୍କୁ କେହି କେହି ମାଟିଆ ବୋଲି କହନ୍ତି। ଓଡ଼ିଆ ମାଟିଆ ଭାଣୀ ଜସମାର କରୁଣ–କାହାଣୀ କିମ୍ବଦନ୍ତୀ ତଥା ଇତିହାସର ଗନ୍ତାଘରେ ଏବେ ମଧ୍ୟ ସାଇତା ହୋଇ ରହିଛି। ମାତ୍ର ନିକଟ ଅତୀତରେ ଶ୍ରମ ବିଭାଗ ଦ୍ୱାରା ବଲାଙ୍ଗୀର ଜିଲ୍ଲାରେ ଏକ ସର୍ବେକ୍ଷଣ କରାଯାଇ କେବଳ ବଲାଙ୍ଗୀର ଜିଲ୍ଲାରୁ ୫୦ ହଜାରରୁ ଅଧିକ ସଂଖ୍ୟକ ଦାଦନ ଶ୍ରମିକ ଆନ୍ଧ୍ର ପ୍ରଦେଶର ଇଟାଭାଟି ଏବଂ ମଧ୍ୟ ପ୍ରଦେଶର ରାୟପୁରଠାରେ ବିଭିନ୍ନ କୃଷି ଫାର୍ମ ଏବଂ ଫଳ ବଗିଚାରେ କାମ କରିବା ପାଇଁ ପ୍ରାୟ ଦଶ ବର୍ଷ ହେଲା ବ୍ୟାପକ ଭାବେ ଯାଉଥିବା ବିଷୟ ଅନୁଧ୍ୟାନ କରାଯାଇ ଅଛି। ଏ ସମ୍ପର୍କିତ ପ୍ରାଥମିକ ବିବରଣୀରୁ ବହୁ ଶୃଙ୍ଖଳାବଦ୍ଧ ତଥ୍ୟ ପ୍ରକାଶ ପାଇଛି। ସେଥିରୁ କିୟଦଂଶ ଏହି ନିବନ୍ଧରେ ଅବତାରଣା କରାଯାଉଅଛି।

ନୂଆଖାଇ ! ପଶ୍ଚିମ ଓଡ଼ିଶାର ଏହା ଏକ ବିଶିଷ୍ଟ ପର୍ବ। ଏହି ପର୍ବଦିନ ଯିଏ ଯେଉଁଠି ଥିଲେ ମଧ୍ୟ ଘରକୁ ଫେରନ୍ତି। ନବାନ୍ନ ଭକ୍ଷଣ, ନୂତନ ବସ୍ତ୍ର ପରିଧାନ, ନାଚ–ଗୀତ ଉତ୍ସବ ଏହି ପର୍ବର ମୁଖ୍ୟ ଆଧାର। ଏପରିକି ଲୋକ କଥାରେ କୁହାଯାଉଛି– ଯଦି ସେହିଦିନ କିଏ ଆମିଷ (ମାଂସ) ଭକ୍ଷଣ ନକରେ, ସେ ପରଜନ୍ମରେ ବଗ ଜନ୍ମ ପାଇବା ସୁନିଶ୍ଚିତ। ଏପରି ଏକ ପାର୍ବଣ ନିମନ୍ତେ ପଶ୍ଚିମ ଓଡ଼ିଶାର ଗରିବ ଲୋକଙ୍କଠାରୁ ଗଉନ୍ତିଆ ପର୍ଯ୍ୟନ୍ତ ସମସ୍ତେ ଅଜସ୍ର ଅର୍ଥ ବ୍ୟୟ କରନ୍ତି। ଠିକ୍ ଏହିପର୍ବ ପୂର୍ବରୁ ଦଳ ଦଳ କୁଲି ସର୍ଦ୍ଦାର ଗାଁ ଗାଁ ବୁଲି ପରିବାରର ସକ୍ଷମ ଲୋକଙ୍କ ହିସାବ କରି ଏକହଜାରରୁ ତିନି ହଜାର ପର୍ଯ୍ୟନ୍ତ ଅଗ୍ରୀମ ଟଙ୍କା ଦେଇଯାଆନ୍ତି। ଏହି ପର୍ବଟି ପ୍ରାୟତଃ ଭାଦ୍ରବ ମାସରେ ପଡୁଥିବାରୁ ଏହା ପରେ ପରେ ଦଶହରା ପର୍ବ ଶେଷରେ ସେହି ଦାଦନ ସର୍ଦ୍ଦାରମାନେ ଏମାନଙ୍କୁ ସୁଦୂର ଆନ୍ଧ୍ର ଅଞ୍ଚଳରୁ ଇଟାଭାଟି ଏବଂ ରାୟପୁରର ଫଳବଗିଚାକୁ ନେଇଯାଆନ୍ତି। ଘରମାନଙ୍କରେ କଣ୍ଠାବାଡ଼ ଦେଇ ଯାଇ କେବଳ ବୃଦ୍ଧ, ବୃଦ୍ଧା ତଥା ବିକଳାଙ୍ଗଙ୍କୁ ଗାଁରେ ଛାଡ଼ି ସପରିବାର ଦାଦନ କୁଲି ଦେଶାନ୍ତରୀ ହୁଅନ୍ତି।

ପ୍ରଶ୍ନ ଉଠୁଛି ଏଇ କେତେ ବର୍ଷ ହେଲା ଏପରି ଦାଦନ ଶ୍ରମିକଙ୍କ ସୁଅ ଛୁଟିଛି କାହିଁକି ? ଦମାଗତ ମରୁଡ଼ି ଯୋଗୁଁ ଲୋକଙ୍କ ମେରୁଦଣ୍ଡ ଭାଙ୍ଗିଯିବା ଏହାର ମୁଖ୍ୟ କାରଣ ବୋଲି ଅପାତତଃ କୁହା ଯାଇଥିଲେ ମଧ୍ୟ ଏହାର ଅନ୍ୟାନ୍ୟ ଆନୁଷଙ୍ଗିକ କାରଣ ରହିଛି। ବଲାଙ୍ଗୀର ଜିଲ୍ଲା ସ୍ଥିତ ରାଣୀପୁର ଝରିଆଲଠାରେ ଚଉଷଠୀ ଯୋଗିନୀ ମନ୍ଦିର ପାର୍ଶ୍ୱରେ ଅବସ୍ଥିତ ଇନ୍ଦ୍ରଲାଠ ମନ୍ଦିର। ଐତିହାସିକଙ୍କ ମତରେ ଏହା ସବୁଠାରୁ ପ୍ରାଚୀନ ଇଟା ତିଆରି ମନ୍ଦିର। ଏ ଅଞ୍ଚଳର କାରିଗରମାନେ କେଉଁ ଆବାହମାନ କାଳରୁ ଇଟା ତିଆରି କରିବାରେ ପାରଦର୍ଶିତା ଲାଭ କରିଥିବା ବିଷୟ ଏଇଥିରୁ ପ୍ରତିପାଦିତ ହେଉଛି। ପ୍ରାୟ ପନ୍ଦର ବର୍ଷ ହେଲା ଗଢ଼ି ଉଠିଥିବା କଟାବାଞ୍ଜି ସହରକୁ ଆସୁଥିବା ଆନ୍ଧ୍ର ବ୍ୟବସାୟୀମାନେ ଏହାକୁ ବେଶ୍ ହୃଦୟଙ୍ଗମ କରି ଏହି ଅଞ୍ଚଳର ଇଟା କାରିଗରଙ୍କୁ ଆନ୍ଧ୍ର ଚାଲାଣ କରିବା ନିମନ୍ତେ ସ୍ଥାନୀୟ ମୁଖିଆ ତଥା ଗଉନ୍ତିଆଙ୍କୁ ମାଧ୍ୟମ କରିଛନ୍ତି।

ବଲାଙ୍ଗୀର ଜିଲ୍ଲାରେ ବିଖ୍ୟାତ ଗନ୍ଧମାର୍ଦ୍ଦନ ପର୍ବତମାଳା ଅବସ୍ଥିତ। ଏହାର ସମୀପରେ ପୂର୍ବତନ ଗଡ଼ଜାତ ରାଜାମାନଙ୍କ ଦ୍ୱାରା ନିର୍ମିତ ବହୁ ଫଳଉଦ୍ୟାନ ରହିଥିଲା। ଏପରି କି ପୁରାଣରେ ବର୍ଣ୍ଣିତ କାହାଣୀ ଅନୁସାରେ ମଧ୍ୟମ ପାଣ୍ଡବ ଭୀମଙ୍କ ସହ ହନୁମାନଙ୍କର ଅପୂର୍ବ ମିଳନ ହୋଇଥିଲା ଏହି ଗନ୍ଧମାର୍ଦ୍ଦନ ପର୍ବତର କଦଳୀ ବନ ସମୀପରେ। ଏବେ ମଧ୍ୟ ଏହି ପର୍ବତମାଳାରେ ଅବସ୍ଥିତ ବିଖ୍ୟାତ ଦର୍ଶନୀୟ ସ୍ଥାନ ହରିଶଙ୍କରଠାରେ ବହୁ ଫଳ ଉଦ୍ୟାନ ରହିଛି। ଏହିସବୁ ଫଳ ଉଦ୍ୟାନରେ ବଂଶାନୁକ୍ରମେ କାର୍ଯ୍ୟ କରୁଥିବା ଲୋକମାନଙ୍କର ରାୟପୁର ଅଞ୍ଚଳରେ ସ୍ଥିତି ରହିବା ଏକ ଯୋଗସୂତ୍ର ମାତ୍ର।

ମୋଟା ମୋଟି ଭାବରେ ବଲାଙ୍ଗୀର ଜିଲ୍ଲାର ୫ଟି ସବ୍‌ଡିଭିଜନ ମଧ୍ୟରୁ କେବଳ ପାଟଣାଗଡ଼ର ପାଟଣା ସବଡ଼ିଭିଜନର ୬ଟି ବ୍ଲକ ତଥା ପାଟଣାଗଡ଼ର ପାଟଣାଗଡ଼, ବେଲପଡ଼ା ଖପ୍ରାଖୋଲ ଏବଂ ଟିଟିଲାଗଡ଼ ବ୍ଲକ୍‌ର ମୁରେଇକେଲା, ମୁରିବାହାଲ ଓ ତୁରେକେଲା ବ୍ଲକରୁ ଏହି ଦାଦନ ଶ୍ରମିକ ଯାଆନ୍ତି। ପ୍ରକାଶ ଥାଉକି ଏହି ଅଞ୍ଚଳରେ ଗନ୍ଧମାର୍ଦ୍ଦନ ପର୍ବତମାଳା ଅବସ୍ଥିତ ଏବଂ ଏଗୁଡ଼ିକ ମହାନଦୀ ଏବଂ ତେଲ ନଦୀ ଅବବାହିକାର ଜଳସେଚନ ସୁବିଧାରୁ ବଞ୍ଚିତ। ଏଣୁ ଦାରିଦ୍ର୍ୟର ତୀବ୍ର ତାଡ଼ନାରେ ଏହି ୬ଟି ବ୍ଲକରୁ ଅର୍ଦ୍ଧ ଲକ୍ଷାଧିକ ଦାଦନ ଶ୍ରମିକ ମଧ୍ୟ ପ୍ରଦେଶର ରାୟପୁର ଏବଂ ଆନ୍ଧ୍ର ପ୍ରଦେଶର ସିକାକୁଲମ ଏବଂ ରଙ୍ଗାରେଡ଼ି ଜିଲ୍ଲାକୁ ପ୍ରତିବର୍ଷ ଯାଉଛନ୍ତି। କୁହା ଯାଉଛି ଯେ ପୂର୍ବତନ ଗଡ଼ଜାତ ଶାସନ ସମୟରେ ଦ୍ୱିତୀୟ ଯୁଦ୍ଧ ପୂର୍ବରୁ ଏହି ଅଞ୍ଚଳରେ ନୂତନ ଜଙ୍ଗଲ ନୀତି ପ୍ରଚଳିତ ହେବା ଫଳରେ ଜଙ୍ଗଲକୁ ଆଧାର କରି ଚଳୁଥିବା ବହୁ ଲୋକ ଖ୍ରୀଷ୍ଟିଆନ ପାଦ୍ରୀଙ୍କ ମାର୍ଫତରେ ସୁଦୂର ଆସାମର ଚା ବାଗାନରେ କାମ କରିବାକୁ ଯାଇଥିଲେ। ବର୍ତ୍ତମାନ ସେପରି ଦୃଷ୍ଟାନ୍ତ ବିରଳ।

ପରିବାରର ସମସ୍ତ ସଭ୍ୟଙ୍କୁ ଖରିଫ ଋତୁ ପରେ ଅନ୍ୟ ରାଜ୍ୟରେ ପୁରା ସମୟ ପାଇଁ କାମଧନ୍ଦା ମିଳିବା ବଲାଙ୍ଗୀର ଜିଲ୍ଲାର ଦାଦନ ଶ୍ରମିକ ପ୍ରଥା ଅନ୍ୟ ଏକ ଦିଗ । ଗଞ୍ଜାମ ତଥା ପୁରୀ ଜିଲ୍ଲାରୁ ଯାଉଥିବା ଦାଦନ ଶ୍ରମିକମାନେ ସପରିବାର ଯାଇ ନ ଥିବା ସ୍ଥଳେ ବଲାଙ୍ଗୀର ଜିଲ୍ଲାର ଦାଦନ ଶ୍ରମିକ ସପରିବାର ଦେଶାନ୍ତରୀ ହେଉଛନ୍ତି । ଏପରିକି ଶିଶୁ ଶ୍ରମିକମାନଙ୍କୁ କମ ମଜୁରି ଦେଇ ଦିଆଯାଉଛି ତାଙ୍କ ପରିବାର ସହ କାମ ଧନ୍ଦା ତଥା ରୋଜଗାର ମିଳିବା ଏହି ବ୍ୟବସ୍ଥାର ଅନ୍ୟ ଏକ ଆକର୍ଷଣ । ମାତ୍ର ବୈଚିତ୍ର୍ୟ ଏହି ଯେ ବଲାଙ୍ଗୀର ଜିଲ୍ଲାରେ ଏବେ ସମ୍ପୂର୍ଣ୍ଣ ସାକ୍ଷର ଅଭିଯାନ ଚାଲିଥିବା ବେଳେ ଏଠାରୁ ଗରୀବ ଶ୍ରେଣୀର ଆବାଳ ବୃଦ୍ଧ ବନିତା ବର୍ଷର ପ୍ରାୟ ୬ ମାସରୁ ଅଧିକ ସମୟ ବିଦେଶରେ କଟାଉଛନ୍ତି ।

ବର୍ଷ ବର୍ଷ ଧରି ଏପରି ଦାଦନ ଶ୍ରମିକ ଭାବେ ଯାଇଥିବା ପରିବାର ବର୍ଗଙ୍କ ଅର୍ଥନୈତିକ ସ୍ୱଚ୍ଛଳତା ଆସିଯିବା କଥା । ମାତ୍ର ଏଦିଗରେ ବିଶେଷ କିଛି ପ୍ରଗତି ହୋଇ ପାରୁନାହିଁ । କେବଳ ଦୁର୍ଦ୍ଦିନ ସମୟରେ ସେମାନେ କୌଣସି ପ୍ରକାରେ ନିଜକୁ ବଞ୍ଚାଇ ନେଉଛନ୍ତି ବୋଲି ଦାଦନ ଶ୍ରମିକଙ୍କ ବୃଦ୍ଧା ପିତାମାତା କହୁଥିବା ପ୍ରକାଶ । ଏହା ସଙ୍ଗେ ସଙ୍ଗେ କେତେକ ଦୁଃଖଦ ଘଟଣା ମଧ୍ୟ ଘଟି ଯାଉଛି ବିଶେଷ କରି ଆନ୍ଧ୍ର ପ୍ରଦେଶ ଇଟାଭାଟି ଅଞ୍ଚଳରେ ଅସ୍ୱାସ୍ଥ୍ୟକର ପରିବେଶ, ପରିଷ୍କାର ପାନୀୟ ଜଳର ଅଭାବ, ବଲାଙ୍ଗୀର ଜିଲ୍ଲାର ଦାଦନ ଶ୍ରମିକଙ୍କୁ ଅତିଷ୍ଠ କରିବା ଘଟଣା ଏବେ ପ୍ରକାଶ ପାଉଛି । ତାସାଙ୍କୁ ଏହି ଜିଲ୍ଲାର ଲୋକେ ଉଷୁନା ଚାଉଳ ଖାଇବାରେ ଅଭ୍ୟସ୍ତ ଥିବା ଯୋଗୁଁ ଆନ୍ଧ୍ର ପ୍ରଦେଶରେ ଅରୁଆ ଚାଉଳ ଖାଇ ଝାଡ଼ାବାନ୍ତି ତଥା ଆମାଶୟ ରୋଗରେ ପୀଡ଼ିତ ହେବା ଏକ ମର୍ମନ୍ତୁଦ ଘଟଣା । ଯଦିଓ ଏପରି ମୃତାହତ ଶ୍ରମିକଙ୍କୁ ଶ୍ରମିକ କ୍ଷତି ପୂରଣ ଆଇନ୍ ଅନୁସାରେ କ୍ଷତି ପୂରଣ ମିଳିବା କଥା, ସେହି ବାର୍ତ୍ତା ଏବେ ମଧ୍ୟ ଅନେକ ସୁଦୂର ପଲ୍ଲୀରେ ପହଞ୍ଚି ନାହିଁ । ଯେଉଁଠି ଲୋକମାନେ ଏ ବିଷୟରେ ସଚେତନ, ସେମାନେ ବଲାଙ୍ଗୀର କିମ୍ବା ସମ୍ବଲପୁର ଯାଇ କ୍ଷତି ପୂରଣ ନିମନ୍ତେ ଆବେଦନ କରିପାରୁନାହାନ୍ତି । ମୃତ୍ୟୁ କିମ୍ବା ଦୁର୍ଘଟଣା ଅନ୍ୟ ରାଜ୍ୟରେ ଘଟୁଥିବାରୁ ଆଇନତଃ ସେହି ରାଜ୍ୟର କ୍ଷତିପୂରଣ କମିଶନରଙ୍କ ନିକଟରେ କ୍ଷତିପୂରଣ ମାମଲା ରୁଜୁ କରାଯାଇ ପାରିବ । ଏପରି ଦରଖାସ୍ତ ପାଇଲେ ରାଜ୍ୟ ଶ୍ରମ କମିଶନର ତଥା ଆଇନ୍ ପରାମର୍ଶ ଦାତା ପରିଷଦ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରିପାରିବ । ମାତ୍ର ସେମାନଙ୍କ ପାଖରୁ ଏପରି ଦରଖାସ୍ତ ଆସିପାରୁନାହିଁ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଏଦିଗରେ ଆଗେଇ ଆସିଲେ ମୃତାହତ ଦାଦନ ପରିବାରଙ୍କୁ ଆଇନଗତ ସାହାଯ୍ୟ ମିଳିପାରିବ । ଏହା ବ୍ୟତୀତ ବିନା ଲାଇସେନସ୍‌ରେ ଦାଦନ ଶ୍ରମିକ ଚାଲାଣ ଏକ ଦଣ୍ଡନୀୟ ଅପରାଧ ହୋଇଥିବାରୁ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ଏପରି ଆଇନ୍ ଖିଲାପକାରୀଙ୍କୁ ଧରାଇ ଦେବାରେ ଶ୍ରମ ବିଭାଗ ସହ ସହଯୋଗ କରିବା ବାଞ୍ଛନୀୟ ।

---

*ମୁଖ୍ୟ ପରିସଂଖ୍ୟାନବିତ୍,*
*ଶ୍ରମ କମିଶନରଙ୍କ କାର୍ଯ୍ୟାଳୟ,*
*ଭୁବନେଶ୍ୱର ।*



**କଟକ ଜିଲ୍ଲା ମାହାଙ୍ଗା ବ୍ଲକ୍ ଅନ୍ତର୍ଗତ ବୃନ୍ଦାପଡ଼ାଠାରେ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଏକ ସୂଚନା କେନ୍ଦ୍ର ଉଦ୍‌ଘାଟନ କରୁଛନ୍ତି । ଏହି ଅବସରରେ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ଜାନକୀ କୁମାର ରଥ ଓ କଟକ ଜିଲ୍ଲାପାଳ ଶ୍ରୀ ରଘୁନାଥ ମିଶ୍ର ଉପସ୍ଥିତ ଅଛନ୍ତି (୯/୪) ।**

# ଓଡ଼ିଶାରେ ଦୋଳଯାତ୍ରା

**ଶ୍ରୀ ରଘୁନାଥ ପାତ୍ର**

ହୋଲି ବା ହୋରି ଓଡ଼ିଶାରେ ପ୍ରାୟ ଏକ ହଜାର ବର୍ଷ ତଳର। ଏକାଦଶ ଶତାବ୍ଦୀର ଓଡ଼ିଆ ସ୍ମୃତିକାର ଶତାନନ୍ଦ ଆଚାର୍ଯ୍ୟ ଦୋଳଯାତ୍ରା ସମ୍ପର୍କରେ 'ସ୍ମୃତି ବଚନିକାମାନ 'ଶତାନନ୍ଦ ସଂଗ୍ରହ'ରେ ଉଲ୍ଲେଖ କରିଛନ୍ତି। ଓଡ଼ିଶାରେ ଦୋଳଯାତ୍ରା ରାଜଦୋଳ, ପଞ୍ଚୁଦୋଳ, ସାତଦୋଳ, ନଅଦୋଳ ଓ ଦଶଦୋଳ ନାମରେ ପ୍ରଚଳିତ। ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ରାଜଦୋଳ ଓ କେତେକ ସ୍ଥାନରେ ପୂର୍ଣ୍ଣମୀଠାରୁ ପାଞ୍ଚଦିନ, ସାତଦିନ, ନ'ଦିନ, ଦଶଦିନ ବ୍ୟାପୀ ଦୋଳୋତ୍ସବ ପଞ୍ଚୁଦୋଳ, ସାତଦୋଳ, ନ'ଦୋଳ ଓ ଦଶଦୋଳ ନାମରେ ଅଭିହିତ।

ଦୋଳ ପର୍ବ ଶ୍ରୀରାଧାମାଧବଙ୍କ ବାସନ୍ତିକ ରାସୋତ୍ସବ ହୋଇଥିବାରୁ ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ପ୍ରତ୍ୟେକ ରାଧାକୃଷ୍ଣ ମନ୍ଦିର ଉତ୍ସବ ମୁଖରିତ ହୋଇଥାଏ। ଉକ୍ତ ପର୍ବରେ ଗୋପ ସୁନ୍ଦରୀଗଣ ସେମାନଙ୍କ ପ୍ରିୟତମ ଶ୍ରୀକୃଷ୍ଣଙ୍କ ସହ ଫଗୁଖେଳି ଖେଳିଥିଲେ। "ଭକ୍ତ ପ୍ରିୟ ମାଧବ।" ନୀଳାଚଳ ଚନ୍ଦ୍ର ଶ୍ରୀଜଗନ୍ନାଥ ଯେପରି ଭକ୍ତଙ୍କ ପ୍ରେମପାଶରେ ଆବଦ୍ଧ ହୋଇ ରଥଯାତ୍ରାରେ ରତ୍ନସିଂହାସନ ଛାଡ଼ି ବଡ଼ଦାଣ୍ଡକୁ ଚାଲି ଆସନ୍ତି, ସେହିପରି ରାଧାକୃଷ୍ଣ ସିଂହାସନ ଛାଡ଼ି ପ୍ରତ୍ୟେକ ଗ୍ରାମବାସୀଙ୍କ ଦ୍ୱାରଦେଶରେ ଦର୍ଶନ ଦେବା ସଙ୍ଗେ ଆତିଥ୍ୟ ଗ୍ରହଣ କରିଥାଆନ୍ତି।

ଉକ୍ତ ଶ୍ରୀରାଧାକୃଷ୍ଣ କୈନ୍ଦ୍ରିକ ମହାପାର୍ବତୀ ଓଡ଼ିଶା ରଘୁନାଥ, କଟକ ଅସୁରେଶ୍ୱରର ଦଧିବାମନ ଜୀଉ, କେନ୍ଦ୍ରାପଡ଼ାର ଗୋବିନ୍ଦଜୀ ଓ ବିନୋଦ ବିହାରୀ, ଜଗତସିଂହପୁର, ଖୁଲା ଗୋପୀନାଥ, କଟକ, ପଟ୍ଟାମୁଣ୍ଡାଇରେ ତମାଳ ଶ୍ରୀ ଦଧିବାମନ, ବାଲେଶ୍ୱର ଶ୍ୟାମସୁନ୍ଦର, ରେମୁଣାରେ କ୍ଷୀରଚୋରା ଗୋପୀନାଥ, ସତ୍ୟବାଦୀର ସାକ୍ଷୀଗୋପାଳ ଓ ପୁରୀର ଟୋଟା ଗୋପୀନାଥଙ୍କ ନିକଟରେ ବହୁ ଭକ୍ତ ସମାବେଶରେ ପାଳିତ ହୋଇଥାଏ। ଏତଦ୍ ବ୍ୟତୀତ ପୁରୀ, କଟକ, ଛତ୍ରପୁର, ବଉଦ, ଢେଙ୍କାନାଳ, ଖୋର୍ଦ୍ଧା, କେନ୍ଦୁଝର, ଆଠଗଡ଼, ଯାଜପୁର, କେନ୍ଦ୍ରାପଡ଼ା ଓ ନବରଙ୍ଗପୁର ଇତ୍ୟାଦି ସହରାଞ୍ଚଳରେ ମହାସମାରୋହରେ ପାଳିତ ହୁଏ।

ଓଡ଼ିଶାର ବ୍ରାହ୍ମଣ ଶାସନମାନଙ୍କରେ ଶ୍ରୀକୃଷ୍ଣଙ୍କ ବିଗ୍ରହ ଚଉଦୋଳରେ ବିଜେ କରି ପ୍ରତ୍ୟେକ ଗୃହର ଦ୍ୱାର ଦେଶରେ ବନ୍ଦାପନା, ପନ୍ତିଭୋଗ ବା ଦ୍ୱାରଭୋଗ କରିଥାନ୍ତି। ଗୃହ ସମ୍ମୁଖରେ ପୋଡ଼ା ଯାଇଥିବା ନଡ଼ିଆ ବରଡ଼ା ଅଗ୍ନି ସଂଯୋଗ କରାଯାଏ। ଠାକୁର ଗାଁ ମୁଣ୍ଡରେ ପହଞ୍ଚିବା ପରେ ସେଠାରେ ଜମା ହୋଇଥିବା ବରଡ଼ାରେ ଅଗ୍ନି ସଂଯୋଗ କରାଯାଏ। ଏହାକୁ ଅଇଁଘରା ଜଳାଯାଏ (ପୂର୍ବାଲୋଚିତ)। ବିମାନରେ ଠାକୁର ଅଇଁଘରା ବା ପବିତ୍ରାଗ୍ନିକୁ ସାତଥର ପ୍ରଦକ୍ଷିଣ କରନ୍ତି। ଭକ୍ତକବି ଅଚ୍ୟୁତାନନ୍ଦଙ୍କ ହରିବଂଶ (ତୃତୀୟ ଖଣ୍ଡ) ବର୍ଣ୍ଣନାନୁସାରେ ଶ୍ରୀବୃନ୍ଦାବନରେ ଭଗବାନ ବ୍ରହ୍ମାଙ୍କ ଦ୍ୱାରା ନିର୍ମିତ ସୁସଜ୍ଜିତ ଦୋଳ ମଣ୍ଡପର ଆକାର ଏକଶତ ହାତ ଥିଲା।

"ପରିମାଣ ଅଟେତାର ଶହେ ହାତ ଛଳୀ।<br>
ସାତ ତାଳ ଉଚ୍ଚ ସେ ଯେ ନୁହନ୍ତି ତା କଳି।"

କିନ୍ତୁ ଅଧୁନା ଦୋଳ ମଣ୍ଡପ ନିର୍ମାଣରେ କୌଣସି ଆକାର ପ୍ରକାର ବା ନିୟମ ଅନୁସରଣ କରାଯାଏ ନାହିଁ।

ମେଲଣ ପଡ଼ିଆରେ ଠାକୁରମାନଙ୍କର ଏକତ୍ର ସମାବେଶ, ନାଚ ତାମସା ଓ ନୃତ୍ୟଗୀତ ପରିବେଷଣ ଏକ ଅପୂର୍ବ ଚିତ୍ତାକର୍ଷକ ପରିବେଶ ସୃଷ୍ଟି କରେ। ମେଲଣ ଠାକୁରଙ୍କୁ କେତକୀ ଫୁଲ ଅର୍ପଣ କରାଯାଏ। କେତକୀ ଫୁଲର ପ୍ରାଣସ୍ପର୍ଶୀ ସୁଗନ୍ଧ ଅପୂର୍ବ ଆନନ୍ଦର ସିଆର ଆଣିଦିଏ। କେତକୀ କେବଳ ମନୁଷ୍ୟ ନୁହେଁ ବନ୍ୟ ଜୀବମାନଙ୍କ ଦୈହିକ ପିପାସା ଜାଗ୍ରତ କରିବାରେ ଶକ୍ତିମତୀ। ତେଣୁ ଠାକୁରଙ୍କୁ କେତକୀ ଅର୍ପଣ କରିବା ଅର୍ଥ ଜୀବ ଓ ବ୍ରହ୍ମ ମଧ୍ୟରେ ମିଳନୋତ୍ସୁକ ଭାବ ପ୍ରତିଷ୍ଠା କରିବା।

ପାରସ୍ପରିକ ସୌହାର୍ଦ୍ଦ୍ୟର ଦ୍ୟୋତକ ହୋଲିଖେଳ, ଅଧିକାଂଶ ପ୍ରତିଦ୍ୱନ୍ଦ୍ୱିତାର ପରିପ୍ରେକ୍ଷୀରେ ପାଳିତ ହେଉଛି। ପ୍ରଚଳିତ ପାରମ୍ପରିକ ପ୍ରଥାନୁଯାୟୀ ପିତାମାତା ବା ଅନ୍ୟାନ୍ୟ ଗୁରୁଜନମାନଙ୍କୁ ଅବିର ଦେବାବେଳେ ତାଙ୍କ ଶ୍ରୀଚରଣରେ ଦେଇ ସ୍ୱ ମସ୍ତକରେ ଲଗାଇବାକୁ ହୋଇଥାଏ କିନ୍ତୁ ସମବୟସ୍କ ମଧ୍ୟରେ ଏହା କୌତୂହଳ ପ୍ରଦ ଓ ଉତ୍ସାହ ପୂର୍ଣ୍ଣ। କିନ୍ତୁ ଆଜି ଅବିର ବଦଳରେ ବହୁ ରାସାୟନିକ ପଦାର୍ଥ ବ୍ୟବହୃତ ହେଉଥିବାରୁ ପ୍ରାଣରେ ପୁଲକ ସୃଷ୍ଟି କରିବା ପରିବର୍ତ୍ତେ ଭୟ ସଞ୍ଚାର କରୁଛି। ତେଣୁ ପ୍ରାଚୀନ ପାରମ୍ପରିକ ଦୋଳପର୍ବର ଆନନ୍ଦାନୁଭୂତି କ୍ଷୁଣ୍ଣ ହୋଇଛି।

ଗୋ ଗୋଷ୍ଠରେ ଗାଈଗୋରୁମାନଙ୍କୁ ଚୂଆ, ହଳଦୀ, କୁଙ୍କୁମ, ଚନ୍ଦନ ଓ ପୁଷ୍ପମାଲ୍ୟରେ ବିଭୂଷିତ କରନ୍ତି। ଗୋପାଳମାନେ ନବବସ୍ତ୍ର ପରିଧାନ ପୂର୍ବକ ଲଉଡ଼ି ଖେଳନ୍ତି। ରାଧାକୃଷ୍ଣଙ୍କ ପ୍ରେମଲୀଳାଗାନ ଓ ଲଉଡ଼ି ଖେଳର ଅପୂର୍ବ ଝଙ୍କାରରେ ଦୋଳପର୍ବ ଆନନ୍ଦମୁଖର ହୋଇ ଉଠେ। ପୂଜାର୍ଚ୍ଚନା ପରେ ନୂତନ ପଞ୍ଜିକା ପୁରୋହିତ ବା ଜ୍ୟୋତିଷଙ୍କ ଦ୍ୱାରା ପାଠ କରାଯାଏ। ଦୋଳଠାରୁ ନୂତନ ଅବ୍ଦର ଅନ୍ୱେଷଣ କରିବାକୁ ପଡ଼େ। "ଦୋଳ ଯାଏ ଭାତ। ବିଭାଯାଏ ଯାଠ।" (ପ୍ରବଚନ) xxxxx"the whole clatter then wands together for an instant xxxxresume then route upeating their vociferations and songs chiefly in praise of Krishna." [Essays on the

[...]eligion of Hindu Vol. II P.—226, Prof. H. H. Wilson.]

## [...] ମନ୍ଦିରରେ ଦୋଳ ପର୍ବ :

"ମଣ୍ଡ ସ୍ଥାନଂ ରଥବର ଗତି ଶୟନଂ ସ୍ୱପନଂ ଦ୍ୱୈ ।
[...]ବୃତ୍ତି ଶୟନ ନିବୃତ୍ତି ପାର୍ଶ୍ୱ ପୁଷ୍ୟପୂଜା ॥
[...]ଦମନକ ମୋହ ଶ୍ରଷ୍ୟପୂର୍ଣ୍ଣ ତୃତୀୟା ।
[...] ଯାତ୍ରା ଭୁବନ ବନ୍ଦିତା ଦ୍ୱାଦଶେସ୍ୟଂ ନରେନ୍ଦ୍ର ॥"

ମହାପ୍ରଭୁ ନୀଳାଦ୍ରିନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରୁ ଦୋଳକେଳି ବା [...]ତ୍ସବ ଅନ୍ୟତମ । ଏହାର ପ୍ରଶସ୍ତି ବ୍ରହ୍ମ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ସ୍କନ୍ଦ ପୁରାଣ, ଭବିଷ୍ୟୋତ୍ତର ପୁରାଣ, ନୀଳାଦ୍ରି ମହୋଦୟ, [...]ବାମଦେବ ସଂହିତା, ଯାତ୍ରା ଭାଗବତ ଓ ଶତାନନ୍ଦ ସଂଗ୍ରହାଦି [...]ନ୍ଥରେ ବିଶଦ ଭାବେ ବର୍ଣ୍ଣିତ ।

(୧) ବ୍ରହ୍ମ ପୁରାଣ :—
"[...] ଦୋଳଗତଂ ଦୃଷ୍ଟ୍ୱା ଗୋବିନ୍ଦଂ ତ୍ରିଦଶାର୍ଚ୍ଚିତଂ ।
ଫାଲ୍ଗୁନ୍ୟାଂ ସଂଯୋତେ ଭୂତ୍ୱା ଗୋବିନ୍ଦସ୍ୟ ପୁରଂ ବ୍ରଜେତ୍ ॥"

(୨) ବ୍ରହ୍ମାଣ୍ଡ ପୁରାଣ :—
"ଅପ୍ରଭାତେ ନିଶାନାଥେ ଅପ୍ରକାଶେ ଦିନେଶ୍ୱରେ ।
ତତଃ ପ୍ରଭୋ ପ୍ରକର୍ତ୍ତବ୍ୟା ଦୋଳି ପରମ ସଂମତା ॥"

(୩) ସ୍କନ୍ଦ ପୁରାଣ :—
"ଫାଲ୍ଗୁନେ ମାସି କୁର୍ବୀତ ଦୋଳାରୋହଣମୁତ୍ତମମ୍ ।
[...] ଦୀଡ଼ତି ଗୋବିନ୍ଦୋ ଲୋକାନୁଗ୍ରହଣାୟ ବୈ ॥"

(୪) ଭବିଷ୍ୟୋତ୍ତର ପୁରାଣ :—
"ଫାଲ୍ଗୁନେ ପୌର୍ଣ୍ଣମାସ୍ୟାଂ ତୁ ବିଦ୍ୟାଧାତ୍ ବୈଷ୍ଣବୈଃ ସହ ।
ଶ୍ରୀକୃଷ୍ଣ ପ୍ରିୟଭକ୍ତସ୍ୟ ବସନ୍ତସ୍ୟାର୍ଚ୍ଚନୋ ତ୍ସବମ୍ ॥"

(୫) ନୀଳାଦ୍ରି ମହୋଦୟ :—
"ଫାଲ୍ଗୁନସ୍ୟ ଚ ମାସସ୍ୟ ଶୁକ୍ଳ ପକ୍ଷେ ଶୁଭୋଦୟେ ।
ଦୋଳୋତ୍ସବଂ ପ୍ରକୁର୍ବୀତ ପଞ୍ଚ ବା ତ୍ରିଦିନାନି ବା ॥"

(୬) ବାମଦେବ ସଂହିତା :—
"ଦୋଳୋତ୍ସବଂ ପ୍ରକୁର୍ବୀତ ପଞ୍ଚତ୍ରିଣି ଦିନାନି ବା,
ଫାଲ୍ଗୁନସ୍ୟ ସିତେ ପକ୍ଷେ ଦଶମ୍ୟାଂ ଚ ପ୍ରିୟେ ବିଭୋଃ ।"

(୭) ଯାତ୍ରା ଭାଗବତ :—
"ଦଶମୀ ଦିନମାରଭ୍ୟ ଯାବତ୍ ପଞ୍ଚଦଶୀ ଭବେତ୍,
ଫାଲ୍ଗୁନସ୍ୟ ସିତେ ପକ୍ଷେ ଫଲ୍ଗୁ ଯାତ୍ରା ହରେର୍ଭବେତ୍ ॥"

## ଐତିହାସିକ ତଥ୍ୟାବଳୀ :

ବାସନ୍ତିକ ଦୋଳୋତ୍ସବ ବା ବସନ୍ତ ରାସର ନିୟାମକ ହେଉଛନ୍ତି ଗୋଲକନାଥ ରସରାଜ ଶ୍ରୀକୃଷ୍ଣ ଓ ଗୋଲକେଶ୍ୱରୀ ଚିଦାନନ୍ଦମୟୀ ଶ୍ରୀରାଧା । ଶ୍ରୀ ଜଗନ୍ନାଥ, ଶ୍ରୀକୃଷ୍ଣ ଏବଂ ଶ୍ରୀମନ୍ଦିର, ନିତ୍ୟ ଗୋଲକଧାମ ରୂପେ ଗୃହୀତ ହେବାପରେ ଶ୍ରୀକ୍ଷେତ୍ରରେ ମହାପ୍ରଭୁ ନୀଳାଦ୍ରିନାଥଙ୍କ ଦୋଳୋତ୍ସବ ଅନୁଷ୍ଠିତ ହୋଇଥିବା ସମ୍ଭବପର ।

ମାଦଳା ପାଞ୍ଜିରୁ ଜଣାଯାଏ, ପୂର୍ବେ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ଦୋଳବେଦୀରେ ବିଜେ କରି ଦୋଳୋତ୍ସବ ପାଳନ କରାଯାଉଥିଲା । ଖ୍ରୀ ୧୬୬୧, ଗଉଡ଼ିଆ ଗୋବିନ୍ଦ ଦେବଙ୍କ ସମୟରେ ଦୋଳି ଛିଡ଼ି ଯିବାରୁ ବଡ଼ ଠାକୁରଙ୍କର ଭୁଜ ଭଗ୍ନ ହେଲା ଓ ତଦବଧି ଅର୍ଥାତ୍ ଖ୍ରୀ ୧୬୬୨ରୁ ଠାକୁରଙ୍କ ଶ୍ରୀ ବିଗ୍ରହକୁ ଦୋଳବେଦୀରେ ବିଜେ ନକରି ଦୋଳଗୋବିନ୍ଦଙ୍କ ପ୍ରତିନିଧିତ୍ୱରେ ବସନ୍ତୋତ୍ସବ ପାଳନ କରାଗଲା ।

"ଗଉଡ଼ିଆ ଗୋବିନ୍ଦ ଦେବ ରାଜା ହେଲେ ଦୁଇ ବର୍ଷ । ସ୍ମ ୧୪୮୩ ପର୍ଯ୍ୟନ୍ତ । ଏ ରାଜାଙ୍କ ଦିନରେ ଦୋଳବେଦୀ ଉପରେ ଦୋଳି ଛିଡ଼ି ପଡ଼ିଲା । ବଡ଼ ଠାକୁରଙ୍କ ଭୁଜ ଭାଙ୍ଗିଗଲା । ଦେଉଳ ଭିତରେ ବିଜେ କଲା ଉତ୍ତାରୁ ଶ୍ରୀଭୁଜ ନିର୍ମାଣ ମହାସ୍ନାନ ହୋଇ ଏହିଠାରୁ ଦୋଳଯାତ୍ରୀକୁ ଦୋଳଗୋବିନ୍ଦ ବିଜେ କଲେ ।"
-ମାଦଳାପାଞ୍ଜି ମତାନ୍ତରେ ଖ୍ରୀ ୧୬୬୦ ପୂର୍ବରୁ ଶ୍ରୀମନ୍ଦିର ବେଢ଼ାର ଦକ୍ଷିଣ ପୂର୍ବ କୋଣସ୍ଥ ଦୋଳମଣ୍ଡପରେ ଶ୍ରୀ ଜଗନ୍ନାଥାଦି ତିନିଙ୍କ ବିଗ୍ରହକୁ ବିଜେ କରି ଦୋଳୋତ୍ସବ ପାଳନ କରାଯାଉଥିଲା କିନ୍ତୁ ଦୋଳି ଛିଡ଼ି ଯିବାରୁ ଶ୍ରୀଜଗନ୍ନାଥଙ୍କ ହସ୍ତରେ ସାମାନ୍ୟ ଆଘାତ ହେଲା ।ପୁନଶ୍ଚ ଫଗୁ ଖେଳରେ ବିଗ୍ରହର ସୌନ୍ଦର୍ଯ୍ୟ ନଷ୍ଟ ହେବା ଭୟରେ ଶ୍ରୀମନ୍ଦିର ବାହାରେ ଉତ୍ତର–ପୂର୍ବ କୋଣରେ ବର୍ତ୍ତମାନର ଦୋଳବେଦୀ ବା ଦୋଳ ମଣ୍ଡପ ନିର୍ମାଣ କରି ଶ୍ରୀଜଗନ୍ନାଥଙ୍କ ପ୍ରତିନିଧି ସ୍ୱରୂପ ଦୋଳଗୋବିନ୍ଦଙ୍କ ଶ୍ରୀବିଗ୍ରହକୁ ବିଜେ କରି ଦୋଳୋତ୍ସବ ପାଳନ କରାଗଲା । ଭକ୍ତଗଣ ପରସ୍ପର ଅବିର ଖେଳିବା ସଙ୍ଗେ ଶ୍ରୀ ଦେବୀ, ଭୂଦେବୀ ଓ ଦୋଳଗୋବିନ୍ଦଙ୍କ ଦୋଳୋତ୍ସବରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କଲେ । ଅନ୍ୟାନ୍ୟ ଶାସ୍ତ୍ରାନୁମୋଦିତ ପୂଜାର୍ଚ୍ଚନା ରତ୍ନ ସିଂହାସନରେ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପାଳନ କରାଗଲା ।

''The red powder (abir) is largely thrown on them, and every one in the assem bled crowd indulges in throwing the power on his neighbours. The other rituals of the ceremony are observed before Jagannath Himself in the Sanctuary.'' (Dr. R. L. Mitra, Antiquities of Orissa).

## ଦୋଳ ଯାତ୍ରାର ତିଥି ନିର୍ଣ୍ଣୟ :

ଗଦାଧର ପଦ୍ଧତିଃ ଓ ପଣ୍ଡିତ ସର୍ବସ୍ୱାଦି ପ୍ରାମାଣିକ ଗ୍ରନ୍ଥାନୁସାରେ ଫାଲ୍‌ଗୁନ ପୂର୍ଣ୍ଣିମୀ ତିଥିରେ ଦୋଳଗୋବିନ୍ଦଙ୍କ ଦୋଳ ମହୋତ୍ସବ କରିବା ବିଧେୟ । ଉତ୍ତରା ଫାଲ୍‌ଗୁନୀ ନକ୍ଷତ୍ର ଯୋଗ ଏ ଉତ୍ସବ ପକ୍ଷେ ପ୍ରଶସ୍ତ । ବ୍ରହ୍ମାଣ୍ଡ ପୁରାଣର ପୁରୁଷୋତ୍ତମ ବର୍ଣ୍ଣନରେ ଚନ୍ଦ୍ର ସୂର୍ଯ୍ୟ ଅପ୍ରକାଶ କାଳ ଅର୍ଥାତ୍ ଅରୁଣୋଦୟ ପୂର୍ବକାଳ ଉଷା ଦୋଳୋତ୍ସବ ପାଇଁ ଶ୍ରେୟ ।

"ଅପଭ୍ରାତେ ନିଶାନାଥେ ଅପ୍ରକାଶେ ଦିନେଶ୍ୱରେ ।
ତତଃ ପ୍ରଭୋ ପ୍ରକର୍ତ୍ତବ୍ୟା ଦୋଳୀ ପରମ ସଂମତା ॥"
—ବ୍ରହ୍ମାଣ୍ଡ ପୁରାଣ

ଉଭୟ ଦିନ ପୂର୍ଣ୍ଣିମାର ଉଦୟ ବ୍ୟାପ୍ତି ହେଲେ ବା ଉଭୟ ଦିନ ଉଦୟ ବେଳକୁ ପୂର୍ଣ୍ଣିମା ନଥିଲେ କେବଳ ପୂର୍ବଦିନ ଦୋଳୋତ୍ସବ ଅନୁଷ୍ଠିତ ହୁଏ । ନଚେତ୍ ସାଧାରଣତଃ ଉଦୟ ବ୍ୟାପିନୀ ଦିନ ପୂର୍ଣ୍ଣିମା ରୂପେ ସର୍ବସମ୍ମତ କ୍ରମେ ଗୃହୀତ ହୋଇଥାଏ ।

ଯଦିଓ ଦୋଳ ଗୋବିନ୍ଦଙ୍କ ଦୋଳୋତ୍ସବ ବା ଦୋଳକେଳି ଫାଲ୍‌ଗୁନ ପୂର୍ଣ୍ଣମୀରେ ଅନୁଷ୍ଠିତ ହୁଏ ତେବେ ଶ୍ରୀଜଗନ୍ନାଥଙ୍କ ଫଲ୍‌ଗୁ ଉତ୍ସବ ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଏହା ସ୍କନ୍ଦ ପୁରାଣ, ନୀଳାଦ୍ରି ମହୋଦୟ, ବାମଦେବ ସଂହିତା ଓ ଯାତ୍ରା ଭାଗବତାଦି ପ୍ରାମାଣିକ ଗ୍ରନ୍ଥାନୁମୋଦିତ ।

## ଶ୍ରୀଜଗନ୍ନାଥଙ୍କ ଫଲ୍‌ଗୁତ୍ସବ ବିବରଣୀ :

ଗୌଡ଼ୀୟ ବୈଷ୍ଣବ ପରମ୍ପରାରେ ଅର୍ଥାତ୍ ଶ୍ରୀରାଧାକୃଷ୍ଣଙ୍କ ପରକୀୟା ବ୍ରଜଲୀଳାରେ ଉଦ୍‌ବୁଦ୍ଧ ହୋଇ ସର୍ବତ୍ର ଶ୍ରୀରାଧାମାଧବଙ୍କ ଦୋଳୋତ୍ସବ ଅନୁଷ୍ଠିତ ହେବା ସମୟରେ ଶ୍ରୀମନ୍ଦିରରେ ଉତ୍କଳୀୟ ବୈଷ୍ଣବ ଧାରାରେ ଅର୍ଥାତ୍ ସ୍ୱକୀୟା ଦ୍ୱାରକା ଲୀଳାରେ ଉଦ୍‌ବୁଦ୍ଧ ହୋଇ ଦୋଳଗୋବିନ୍ଦ (ଶ୍ରୀକୃଷ୍ଣ), ଶ୍ରୀଦେବୀ (ଲକ୍ଷ୍ମୀ ବା ରୁକ୍ମିଣୀ) ଓ ଭୂଦେବୀ (ସରସ୍ୱତୀ ବା ସତ୍ୟଭାମା)ଙ୍କ ଦୋଳୋତ୍ସବ ଅନୁଷ୍ଠିତ ହୋଇଥାଏ । ସେହିପରି ଚନ୍ଦନ ଯାତ୍ରା ଓ ଝୁଲଣ ଯାତ୍ରାରେ ରାଧାଗୋବିନ୍ଦଙ୍କ ମିଳନ ପରିବର୍ତ୍ତେ ମଦନମୋହନ, ଶ୍ରୀଦେବୀ ଓ ଭୂଦେବୀଙ୍କ ମହୋତ୍ସବ ଅନୁଷ୍ଠିତ ହୁଏ । ଶ୍ରୀମନ୍ଦିରର ସମସ୍ତ ପର୍ବ ପର୍ବାଣି ସ୍ୱକୀୟ ମତବାଦ ଉପରେ ପ୍ରତିଷ୍ଠିତ କିନ୍ତୁ ପରକୀୟା ନୁହେଁ । ଏହାହିଁ ଉତ୍କଳୀୟ ବୈଷ୍ଣବ ଦର୍ଶନର ମୌଳିକତା ।

ଶ୍ରୀଜଗନ୍ନାଥଙ୍କ ଦୋଳଯାତ୍ରା ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ଦଶମୀ ଦିନ ମଧ୍ୟାହ୍ନ ଧୂପ ସରିବାପରେ ଠାକୁରଙ୍କ ତିନି ବାଡ଼ରେ ମୈଲମ ହୋଇ ରକ୍ତ ବସ୍ତ୍ର ଲାଗି କରାଯାଏ । ଉପଘୋଡ଼, ଅଙ୍ଗୀକରଣ, ଓଢ଼ିଆଣି, ଥାଡ଼କାନି, ତଡ଼କି ଓ ନଳିଭୁଜ ଲାଗି ହୋଇ ଅପୂର୍ବ ଚାଚେରୀବେଶ ଧାରଣ କରନ୍ତି ମହାପ୍ରଭୁ । ପାଳିଆ ମେକାପ ଭଣ୍ଡାର ଘରୁ ଚନ୍ଦନ ବିଜେ କରି ଆଣିବାପରେ ସର୍ବାଙ୍ଗ ବଢ଼େ । ଚାଚେରୀ ବେଶ ପାଇଁ ଲକ୍ଷ୍ମୀ ଓ ସରସ୍ୱତୀ ରତ୍ନସିଂହାସନରେ ମହାଜନଙ୍କ ହସ୍ତରେ ବିଜେ ହୋଇ ଦକ୍ଷିଣଗୃହ ଖଟ ଉପରେ ବିଜେ ହୁଅନ୍ତି ଓ ଦୋଳଗୋବିନ୍ଦ ମଧ୍ୟ ଦକ୍ଷିଣଗୃହ ଭିତରୁ ଆସି ଉକ୍ତ ଖଟ ଉପରେ ବିଜେ ହୋଇ ଚାଚେରୀ ବେଶରେ ସୁସଜ୍ଜିତ ହୁଅନ୍ତି । ତିନିଠାକୁର (ଦୋଳଗୋବିନ୍ଦ, ଲକ୍ଷ୍ମୀ ଓ ସରସ୍ୱତୀ)ଙ୍କ ମାଣ୍ଡୁଆ ସର୍ପା ମଣୋହି କରି ଭୋଗ କରାଯାଏ । ଚାଚେରୀ ଭୋଗ (ବେଢ଼ ଆରିସା, ସାନ ଆରିସା, ଘି ନାଡ଼ି, ଖିରି, ଖଇରଚୁଳ ଓ ଧଉଳା) ଶ୍ରୀଜଗନ୍ନାଥଙ୍କ ସମ୍ମୁଖକୁ ଆସିବାପରେ ଦୋଳଗୋବିନ୍ଦ, ଲକ୍ଷ୍ମୀ ଓ ସରସ୍ୱତୀ ରତ୍ନସିଂହାସନକୁ ବିଜେ ହୁଅନ୍ତି । ପୁଷ୍ପାଳକମାନେ ଶ୍ରୀଅଙ୍ଗରେ ପ୍ରସାଦ ଲାଗି କରନ୍ତି ଓ ପଣ୍ଡାଙ୍କ ଦ୍ୱାରା ପଞ୍ଚୋପଚାର ଭୋଗ ସମ୍ପାଦିତ ହୁଏ । ଭୋଗ ସରିବାପରେ ଜୀଉଙ୍କ ସିଂହାସନ ପ୍ରକୋଷ୍ଠ ଧୋପଖାଳ (ପାଣି ପକାଇ ଧୋଇବା) ପରେ ଘଟୁଆରୀ ଗୃହରୁ ତିନୋଟି ଗୌପ୍ୟ ପିଣ୍ଡାରେ ପଣ୍ଡା, ପତି ଓ ମନ୍ଦିରସେବକ ଘଣ୍ଟ, ଛତା ଓ କାହାଳୀ ସହ ଚନ୍ଦନ ଫଗୁ ବିଜେ କରି ଆଣି ସିଂହାସନ ଉପରେ ତିନିବାଡ଼ରେ ଲାଗି କରନ୍ତି ଓ ବନ୍ଦାପନା ପରେ ସିଂହାସନ ତଳକୁ ଓହ୍ଲାଇ ଆସନ୍ତି । ପୁଷ୍ପାଳକମାନେ ସିଂହାସନ ତଳେ ତିନିବାଡ଼କୁ ଛିମିରି ଫଗୁ ଅଞ୍ଜଳି କରନ୍ତି । ଫଗୁ, ପାଲୁଅ, ଶଠାକଣି, ଅଙ୍କରାନ୍ତି, ମୁଥା ଓ ସିନ୍ଦୁର ମିଶ୍ରଣରେ ତିଆରି ହୋଇଥାଏ । ଏହାପରେ ପୁଷ୍ପାଳକମାନେ ସିଂହାସନ ଉପରକୁ ଉଠି ଫଗୁ ଚନ୍ଦନ ମୁଣ୍ଡି ପ୍ରସାଦ ଲାଗି କରିବାପରେ ଆଲଟ ଚାମର କରନ୍ତି ଓ ତଳେ ମଧ୍ୟ ଆଲଟ ଚାମର ଲାଗି ହୁଏ । ଏହାପରେ ଦୋଳଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀଙ୍କ ବହିର୍ଫଲ୍‌ଗୁତ୍ସବ ପାଇଁ ଶ୍ରୀଜଗନ୍ନାଥଙ୍କୁ ପ୍ରାର୍ଥନା କରାଯାଏ ।

(୧) "ବନ୍ଦାପନାଦିଙ୍କ କୃତ୍ୱା ପ୍ରାର୍ଥୟେତ୍ ଜଗନ୍ନାଥ ।
ଆଜ୍ଞାପୟ ଜଗନ୍ନାଥ ଗୋବିନ୍ଦଂଚ ରମାଂ ଧରାମ୍ ॥"
ବହିଃ ଫଲ୍‌ଗୁତ୍ସବାର୍ଥଂଚ ମାଲ୍ୟମୁତାର୍ଯ୍ୟ ଦୀୟତେ ।
ତସ୍ମାଦାନୀୟ ପ୍ରତିମାଂଦ୍ୱାର ପାଳାନ୍ତିକଂ ନୟେତ୍ ॥"

(ବାମଦେବ ସଂହିତା ୨୧/୩୯-୪୦)

(୨)"ଆଜ୍ଞାପୟ ଜଗନ୍ନାଥ ପ୍ରତ୍ୟର୍ଚ୍ଚ୍ୟ ଚ ରମାଂ ଧରାଂ ।
ବହିଃ ଫଲ୍‌ଗୁତ୍ସବାର୍ଥଂ ଚ କ୍ରୀଡ଼ା ଲାଳସ ମାନସଃ ॥
ଇତି ସଂପ୍ରାର୍ଥ୍ୟ ଦେବେଶଂ ପୂଜକଂ ଶୁଦ୍ଧ ମାନସଃ ।
ଦକ୍ଷିଣାଙ୍ଗାତ୍ପରେର୍ମାଲ୍ୟ ମୁତାର୍ଯ୍ୟ ଧରଣୀ ପତେ ॥
ପ୍ରତ୍ୟେକୋପରି ତଦତ୍ତ୍ୱା ବାମାଙ୍ଗାଚ୍ଚ ପୁନଃ ପ୍ରଭୋଃ ।
ମାଲ୍ୟମାନୀୟ ବେଗେନ ଶ୍ରୀଧରାଭ୍ୟାଂ ସମର୍ପୟେତ୍ ॥"

(ନୀଳାଦ୍ରି ମହୋଦୟ ୩୪ ଅ)

ଦୋଳଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଦକ୍ଷିଣଭୁଜରୁ ଏବଂ ଶ୍ରୀଦେବୀ ଓ ଭୂଦେବୀ ବାମଭୁଜରୁ ଆଜ୍ଞାମାଳ ପାଇବାରେ ମହାଜନହସ୍ତରେ ତିନିଠାକୁରଙ୍କୁ ବିଜେ କରି ନେଇ ଜୟ ବିଜୟ ଦ୍ୱାରରେ ଲକ୍ଷ୍ମୀଦର୍ଶନରେ ଦଣ୍ଡାୟମାନ ହୋଇ ରହନ୍ତି । ଏଠାରେ ପୁଷ୍ପାଳକ ଫଗୁ ଚନ୍ଦନ ପ୍ରସାଦ ଲାଗିକରି ବନ୍ଦାପନା ଓ ଆଲଟ ଚାମର କରନ୍ତି । ପୁଷ୍ପାଳକ ତିନିଠାକୁରଙ୍କ ପ୍ରଭା ଉପରକୁ ଘଟୁଆରୀ ପ୍ରଦତ୍ତ ଫଗୁ ଭାବ ପକାଇବା ପରେ ମହାଜନଙ୍କ ହସ୍ତରେ ବିଜେ ହୋଇ ବଟମୂଳରେ ଥିବା ସୁସଜ୍ଜିତ ବିମାନରେ ବିଜେ କରନ୍ତି । ବିମାନବଡୁମାନେ ଘଣ୍ଟ, ଛତା, କାହାଳୀସହ ସିଂହଦ୍ୱାର ଦେଇ ଶ୍ରୀଜଗନ୍ନାଥଙ୍କ ବସନ୍ତ ଉପବନ 'ଜଗନ୍ନାଥ ବଲ୍ଲଭ'କୁ ଗମନ କରନ୍ତି । ପଛରେ ପାଞ୍ଚୋଟି ସୁସଜ୍ଜିତ ବିମାନରେ ପଞ୍ଚପାଣ୍ଡବ (ଯମେଶ୍ୱର, କପାଳ ମୋଚନ, ଲୋକନାଥ, ମାର୍କଣ୍ଡେୟ ଓ ନୀଳକଣ୍ଠ) ତିନି ଠାକୁରଙ୍କ ବିମାନ ପଛେ ପଛେ ଯାଆନ୍ତି ।

(୧) "ଲୋକେଶ୍ୱରାଖ୍ୟ ଶମ୍ଭୋଷ୍ଚ ତଥା ଯମେଶ୍ୱରସ୍ୟ ଚ ।
ନୀଳକଣ୍ଠେଶ୍ୱରସ୍ୟାପି ମାର୍କଣ୍ଡେୟେ ଶ୍ୱରସ୍ୟବୈ ॥
କପାଲମୋଚନ ସ୍ୟପି ପ୍ରତ୍ୟର୍ଚ୍ଚାଷ୍ଚ ପୃଥକ୍ ପୃଥକ୍ ।
ବିମାନସ୍ଥା ନୃପଶ୍ରେଷ୍ଠ ପ୍ରାସାଦଂ ଭ୍ରାମୟେଦ୍‌ବହୁ ॥"

(ନୀଳାଦ୍ରି ମହୋଦୟ ୩୪ ଅ)

(୨) "ଅହଂ ତତ୍ର ପ୍ରଧାନଷ୍ଚ ଯମେଶ୍ୱର ଇତୀରିତଃ ।
ମାର୍କଣ୍ଡେୟ ନୀଳକଣ୍ଠ କପାଳ ମୋଚନାଦିକୈଃ ॥

ସହିତୋ ଭ୍ରାମୟିତ୍ୱାପି ପ୍ରାସାଦଂ ତୁ ଶନୈଃ ଶନୈଃ ।"

(ବାମଦେବ ସଂହିତା ୨୧/୪୨–୪୩)

ଏହା ବସନ୍ତ ଗୁଣ୍ଡିଚା ନାମରେ ଅଭିହିତ ଓ ଉକ୍ତ ଯାତ୍ରାର ଦର୍ଶନ ଗୁଣ୍ଡିଚା ରଥଯାତ୍ରା ଦର୍ଶନର ପୁଣ୍ୟଫଳ ପ୍ରଦାନ କରେ ।

"ବସନ୍ତ ଗୁଣ୍ଡିଚେତ୍ୟେବଂ ପଶ୍ୟନ୍ ନନ୍ଦୁତ ଯୋ ବସେତ୍ ।
ଯୋଷଯାତ୍ରା ଫଳଂ ସୋଽପି ପ୍ରାପ୍ନୁୟାନ୍ନାତ୍ର ସଂଶୟ ॥"

(ନୀଳାଦ୍ରି ମହୋଦୟ)

ଦୋଳଗୋବିନ୍ଦଙ୍କ ବାଡ଼ରେ ମୁଦିରସ୍ତ ଓ ଠାକୁରାଣୀଙ୍କ ବାଡ଼ରେ ସମ୍ପ୍ରଦା ମାହାରୀଙ୍କ ମଧ୍ୟରେ ଜଉ ନିର୍ମିତ ଫଗୁ ଡାବ ଖେଳହୁଏ । ଅଧୁନା ସମ୍ପ୍ରଦା ମାହାରୀ (ଭିତର ଗାଏଣୀ) ଉକ୍ତ ଉତ୍ସବରେ ଯୋଗଦାନ କରୁ ନାହାନ୍ତି । ଏପରିକି ପୂର୍ବେ ସକାଳ ଧୂପ ଓ ମଧ୍ୟାହ୍ନ ଧୂପ ସମୟରେ ପ୍ରଚଳିତ ଥିବା ଦେବଦାସୀ ନୃତ୍ୟ ମଧ୍ୟ କ୍ରମଶଃ ଅପସରି ଯାଇଛି । କେବଳ କୋକିଳ ନାମ୍ନୀ ବୃଦ୍ଧା ଦେବଦାସୀ 'ଭିତର ଗାଏଣୀ'ର ସେବା କରି ପ୍ରତ୍ୟହ ମହାପ୍ରଭୁଙ୍କ ବଡ଼ସିଂହାର ସମୟରେ ଗୀତଗୋବିନ୍ଦ ପାଠ କରିଥାନ୍ତି । ତେଣୁ ଜଉ ଖେଳ କର୍ମ ବା ଫଲଗୁ ଅଞ୍ଜଳ ଓ ପ୍ରସାଦ ଲାଗି କେବଳ ମୁଦିରସ୍ତଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ବନ୍ଦାପନା, ଆଳଟ ଓ ଚାମର ହୋଇଥାଏ । ଠାକୁରମାନେ (ଶ୍ରୀଦେବୀ, ଭୂଦେବୀ ଓ ଦୋଳଗୋବିନ୍ଦ) ବାହୁଡ଼ା ବିଜେ ହୋଇ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରି ବଟମୂଳରେ ବିଜେ ହୁଅନ୍ତି । ଶ୍ରୀଦେବୀ ଓ ଭୂଦେବୀ ରତ୍ନ ସିଂହାସନକୁ ଓ ଦୋଳଗୋବିନ୍ଦ ଦକ୍ଷିଣଘରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଦଶମୀଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ଏହିପରି ଚାଚେରୀ ବେଶ, ଚାଚେରୀ ଭୋଗ, ଫଲଗୁ ଅଞ୍ଜଳ ପ୍ରଦାନ, ବସନ୍ତୋତ୍ସବ ସହିତ ଜଗନ୍ନାଥ ବଲ୍ଲଭ ଯାତ୍ରା ଓ ଫଲଗୁ ଉତ୍ସବ ବିଧି ପାଳିତ ହୁଏ ।

ଚତୁର୍ଦ୍ଦଶୀ ଦିନ ଠାକୁରଙ୍କର ଅଗ୍ନ୍ୟୁତ୍ସବ ପାଳିତ ହୁଏ । ଉକ୍ତ ଦିନ ମଧ୍ୟାହ୍ନ ଧୂପପରେ ସର୍ବାଙ୍ଗ ହୁଏ । ଦଶମୀ ପରି ଶ୍ରୀଦେବୀ ଓ ଭୂଦେବୀ ଦକ୍ଷିଣ ଗୃହରେ ଦୋଳଗୋବିନ୍ଦଙ୍କ ସହ ଚାଚେରୀ ବେଶ ହୋଇ ଚାଚେରୀ ଭୋଗ ପଡ଼ିପରେ ରତ୍ନସିଂହାସନରେ ବିଜେ ହୁଅନ୍ତି । ସିଂହାସନ ତଳେ ତିନିବାଡ଼ରେ ମୁଦିରସ୍ତ ଝିମିରି ଫଗୁ ଅଞ୍ଜଳି ପ୍ରଦାନ କରନ୍ତି । ତିନି ଠାକୁର ଜଗନ୍ନାଥଙ୍କଠାରୁ ଆଜ୍ଞାମାଳ ପାଇ ମହାଜନଙ୍କ ହସ୍ତରେ ବିଜେ ହୋଇ ଜୟ ବିଜୟ ଦ୍ୱାର ଓ ମୁକ୍ତି ମଣ୍ଡପ ଦେଇ ଲକ୍ଷ୍ମୀଙ୍କ ମନ୍ଦିର ସମ୍ମୁଖରେ ପଡ଼ିଥିବା ପଲ୍ୟଙ୍କରେ ବିଜେ ହୁଅନ୍ତି । ସମ୍ପ୍ରଦା ମାହାରୀ ଓ ମୁଦିରସ୍ତ ଯଥାକ୍ରମେ ଠାକୁରାଣୀ ଓ ଠାକୁରଙ୍କ ପ୍ରତିନିଧିତ୍ୱ କରି ଝିମିରି ଫଗୁ ଖେଳି ଥାଆନ୍ତି । କିନ୍ତୁ ଅଧୁନା ସମ୍ପ୍ରଦା ମାହାରୀର ଅନୁପସ୍ଥିତିରେ କେବଳ ମୁଦିରସ୍ତ ଝିମିରି ଫଗୁ ଅଞ୍ଜଳି ଲାଗି କରନ୍ତି । ତତ୍ପରେ ତିନି ଠାକୁର ଲକ୍ଷ୍ମୀଙ୍କ ମନ୍ଦିର ନିକଟରେ ଥିବା ବିମାନରେ ବିଜେ ହୋଇ ସିଂହଦ୍ୱାର ଲଙ୍ଗୁଳି ମଠ ଦେଇ ଶ୍ରୀମନ୍ଦିରର ଉତ୍ତର ପୂର୍ବ କୋଣସ୍ଥିତ ଦୋଳବେଦୀ ନିକଟରେ ନିର୍ମିତ ହୋଇଥିବା ଅଗ୍ନ୍ୟୁତ୍ସବ ଗୃହକୁ ବିଜେ କରନ୍ତି । ପଛେ ପଛେ, ବିମାନରେ ପଞ୍ଚପାଣ୍ଡବ ଆସନ୍ତି ।

ହୋମ ପରେ ପ୍ରସାଦ ଲାଗି, ଶୀତଳ ଭୋଗ ଓ ଆଳଟ ଚାମର ହୁଏ । ଅଗ୍ନ୍ୟୁତ୍ସବ ଗୃହରେ "ଆଶୁ ଶିଶାନୋ" ମନ୍ତ୍ର ପାଠକରି ଅଗ୍ନି ସଂଯୋଗ କରାଯାଏ ଓ ଉକ୍ତ ମନ୍ତ୍ର ଉଚ୍ଚାରଣ ସମୟରେ ବିମାନ ସାତ ଥର ଅଗ୍ନି ପ୍ରଦକ୍ଷିଣ କରିଥାଏ । ତା'ପରେ ବାହୁଡ଼ା ବିଜେ ହୋଇ ଶ୍ରୀମନ୍ଦିରକୁ ଯାଆନ୍ତି । ଏହା 'ଶାଳାଗ୍ନି ଉତ୍ସବ' ନାମରେ ଅଭିହିତ ।

ପରଦିନ ଅର୍ଥାତ୍ ପୂର୍ଣ୍ଣମୀ ଦିନ ବାସନ୍ତିକ ଦୋଳୋତ୍ସବ ପାଳନ କରାଯାଏ । ପ୍ରାତଃକାଳୀନ ମଙ୍ଗଳ ଆରତୀ, ଅବକାଶ, ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା ଓ ଷୋଡ଼ଶ ହୋମ ପରେ ପଶୁପାଳକମାନେ ତିନି ବାଡ଼ରେ ଚନ୍ଦନ ଲାଗି କରନ୍ତି । ନୂଆ ବୋଇରାଣୀ ଶାଢ଼ୀ ଖଣ୍ଡୁଆ ଲାଗି ହୋଇ ମସ୍ତକ ଉପରେ ଗଭା ଲାଗି ହୁଅନ୍ତି । ଖଇକୋରା ଶୀତଳ ଭୋଗ ଆସିବା ପରେ ଦୋଳଗୋବିନ୍ଦ ମହାଜନଙ୍କ ହସ୍ତରେ ରତ୍ନ ସିଂହାସନକୁ ବିଜେ କରନ୍ତି । ପଞ୍ଚୋପଚାର ଭୋଗ ହୁଏ । ଦୋଳଗୋବିନ୍ଦ, ଶ୍ରୀଦେବୀ, ଭୂଦେବୀ, ଶ୍ରୀଜଗନ୍ନାଥଙ୍କ ହସ୍ତରୁ ଆଜ୍ଞାମାଳ ପାଇ ମହାଜନଙ୍କ ହସ୍ତରେ ରତ୍ନସିଂହାସନ ଚତୁର୍ଦ୍ଦିଗରେ ସାତଥର ପ୍ରଦକ୍ଷିଣ କରନ୍ତି । ତା'ପରେ କଳାହାଟ ଦ୍ୱାର ଦେଇ ନାଭିକଟା ମଣ୍ଡପରେ ଥିବା ଖଟ ଉପରେ ବିଜେ ହୁଅନ୍ତି । ଏଠାରେ ମହାସ୍ନାନ, ମାଜଣା ଓ କନକ ଲାଗି ହୁଏ । ରାଘବ ଦାସ ମଠ ପ୍ରଦତ୍ତ ପାଟଯୋଡ଼ ଓ ଶାଢ଼ୀ ଲାଗି ହୋଇ ତିନି ଠାକୁର ବେଶ ହୁଅନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରନ୍ତି ଓ ଏହାପରେ ପଞ୍ଚୋପଚାରରେ ମଣୋହି ଓ ବନ୍ଦାପନା ହୁଏ । ତତ୍ପରେ ନାଭିକଟା ମଣ୍ଡପରୁ ତିନି ଠାକୁର ମହାଜନଙ୍କ ହସ୍ତରେ ଆସି ସାତ ପାହାଚ ତଳେ ଥିବା ବିମାନରେ ବିଜେ ହୁଅନ୍ତି । ବିମାନ ଶ୍ରୀମନ୍ଦିରକୁ ସାତଥର ପରିକ୍ରମା କଲାପରେ ଦୋଳବେଦୀ ନିକଟକୁ ଅଣାଯାଏ । ଦୋଳବେଦୀ ଚତୁର୍ଦ୍ଦିଗରେ ସାତଥର ପ୍ରଦକ୍ଷିଣ କରି ମହାଜନଙ୍କ ହସ୍ତରେ ବିଜେ ହୋଇ ବେଦୀ ଉପରେ ସାତଥର ଓ ଦୋଳି ଚତୁଃପାର୍ଶ୍ୱରେ ସାତଥର ପ୍ରଦକ୍ଷିଣ କରି ଦୋଳିରେ ଦକ୍ଷିଣାଭିମୁଖୀ ହୋଇ ବିଜେ ହୁଅନ୍ତି । ଦୋଳଗୋବିନ୍ଦଙ୍କୁ ସତକ୍ତି ପ୍ରାର୍ଥନା କରାଯାଏ ।

"ଜୟ କୃଷ୍ଣ ଜଗନ୍ନାଥ ଜୟ ଆନନ୍ଦ ବିଗ୍ରହ ।
ଗଦା ପଦ୍ମଧର ଶାନ୍ତ ନାନାଳଙ୍କାର ଭୂଷିତ ॥
ନିମ୍ନକରଦ୍ୱୟୋର୍ଯୁକ୍ତୋ ଶଙ୍ଖଚକ୍ର ଯଥୋଚିତ ।
ବନ୍ଦେତ୍ୱାଂ ଦୋଳଗୋବିନ୍ଦ ଋତୁରାଜ ପ୍ରିୟେ ପ୍ରଭୋ ॥"

ପୂର୍ବେ ଦୋଳବେଦୀକୁ ବୃନ୍ଦାବନର ବନଭୂମି ସଦୃଶ ସୁସଜ୍ଜିତ ଓ ଆକର୍ଷଣୀୟ କରିବାକୁ ବହୁ ବୃକ୍ଷଲତା ପଶୁପକ୍ଷୀଙ୍କ ମୂର୍ତ୍ତି କରାଯାଉଥିଲା ।

"ଫଳପୁଷ୍ପୋପନମ୍ରୈଶ୍ଚ ଶାଖିଭିଃ ପରିକଳ୍ପିତେ ।
ବୃନ୍ଦାବନାନ୍ତରେ ରମ୍ୟେ ମତ୍ତଭ୍ରମରାବିଣି ॥
କୋକିଳାରାବମଧୁରେ ନାନାପକ୍ଷୀଗଣା କୁଳେ ।
ନାନୋପଶୋଭାରଚିତ ନାନାସୁରଭିଧୂପିତେ ॥
ପ୍ରଫୁଲ୍ଲ କେତକୀ ଖଣ୍ଡ ଗନ୍ଧାମୋଦି ଦିଗନ୍ତରେ ।
ମଲ୍ଲିକାଶୋକ ପୁନ୍ନାଗଚମ୍ପକୈ ରୂପ ଶୋଭିତ ॥"

(ସ୍କନ୍ଦ ପୁରାଣ ୪୩/୨୨–୨୫)

ଦୋଳବେଦୀର ଅପୂର୍ବ ଶୋଭା ବର୍ଣ୍ଣନ କରିବାକୁ ଯାଇ ଷୋଡ଼ଶ ଶତାବ୍ଦୀର ଶରଣ ଦାସ ଉଲ୍ଲେଖ କରିଛନ୍ତି । ଏମନ୍ତ କାଳରେ ଶ୍ରୀ ପୁରୁଷୋତ୍ତମ ଅବନୀ ବୈକୁଣ୍ଠରେ ଦୋଳଗୋବିନ୍ଦଙ୍କ ଦୋଳଯାତ୍ରା ଉଦ୍‌ଯୋଗ ହୋଇଲା । ପରୀକ୍ଷ କରଣ ବେହେରଙ୍କୁ ତତ୍‌ପର ପଡ଼ିଲା । ସୁଆର ସେବକଙ୍କର ଉଚ୍ଛାହ ବଢ଼ିଲା । ନାନା ଚିତ୍ର କମ ପ୍ରତିମା ଗଢ଼ିଲା, ବୃନ୍ଦାବନ ଚରିତ ନିବିଡ଼ିଲା ।"

ନାନା ମଣିରେ ବେଷ୍ଟିତ, ମଣ୍ଡପ ଶୋଭିତ, ମନକୁ ମୋହିତ, ଲୋଚନ ଚକୋର ଚନ୍ଦ୍ରମତ, ପୀଢ଼ ଚଉପାଶରେ ନାନା ବନ୍ଧ ପିତୁଳା ଧାଡ଼ି ଧାଡ଼ି ଖଞ୍ଜା ହୋଇଛି । ସାକ୍ଷାତ୍ ବୃନ୍ଦାବନ ସ୍ୱରୂପ ହୋଇଛି । ମୃଗ, ସ୍ୱୟମ୍ବର, ହରିଣ, ଶଶା, ବ୍ୟାଘ୍ର, ଭଲ୍ଲୁକ, ମର୍କଟ, ମୂଷା, ସିଂହ, ହାତୀ, ଗାଈ, ନେଉଳ, କସ୍ତୁରୀ, ମୟୂର, ବକ, ଶାମଳ । ପାରୁଆ, କପୋତ, ହଂସ, ଡାହୁକ, ଟିଟିଡ଼ି, ଟେଣ୍ଟେଇ ଆଦି ରେଖ ରେଖ ।"

ମଣ୍ଡପର ଚତୁଃପାର୍ଶ୍ୱରେ ଅବସ୍ଥାପିତ ପ୍ରତିମାଗୁଡ଼ିକ ମଧ୍ୟରୁ ଅନେକ ସୋଲରେ ନିର୍ମିତ ।

"ଦେଖ ସଖି ଏହି ସୋଲ ଗୋ,
କି ଅବା କଦମ୍ବ ଫୁଲ ଗୋ ।
ଭ୍ରମର ଦର୍ପଣ ବିରାଜ ଉଡ଼ଇ,
ଗଗନରେ ମାଳ ମାଳ ଗୋ ।।"

ଶ୍ରୀଦେବୀ ଓ ଭୂଦେବୀଙ୍କ ସମେତ ରତ୍ନଖଚିତ ଦୋଳିକାରେ ଦୋଳଗୋବିନ୍ଦଙ୍କ ଅପୂର୍ବ ସୌନ୍ଦର୍ଯ୍ୟ ବର୍ଣ୍ଣନ ସ୍କନ୍ଦ ପୁରାଣରେ ଦ୍ରଷ୍ଟବ୍ୟ ।

"ରତ୍ନଖଚିତାଂ ଦୋଳିକାୟାଂ ତନ୍ମଧ୍ୟେ ବାସୟେତ୍ ପ୍ରଭୁମ୍ ।
ସଦ୍ରତ୍ନ ମୁକୁଟଂ ତାରହାର ଶୋଭିତ ବକ୍ଷସମ୍ ।।
ଅନର୍ଘ୍ୟ ରତ୍ନ ଖଚିତ କୁଣ୍ଡଳୋ ଭାସିତ ଶ୍ରୁତିମ୍ ।
ଯଥାସ୍ଥାନଂ ଯଥାଶୋଭଂ ଦିବ୍ୟାଳଙ୍କାର ମଣ୍ଡଳମ୍ ।।
ବିକସ୍ୱମ୍ବୁଜ ମଧ୍ୟସ୍ଥଂ ବିଶ୍ୱଧାତ୍ର୍ୟାଶ୍ରିୟା ଯୁତମ୍ ।
ଶଙ୍ଖଚକ୍ର ଗଦା ପଦ୍ମ ଧାରିଣଂ ବନମାଳିନମ୍ ।।
ସୁପ୍ରସନ୍ନଂ ସୁନାସଂ ଚ ପୀନବକ୍ଷଃ ସ୍ଥଳୋଜ୍ଜ୍ୱଳମ୍ ।।

(ସ୍କନ୍ଦ ପୁରାଣ ୪୩/୨୬-୨୯)

ଶରଣ ଦାସଙ୍କ ଦୋଳଗୋବିନ୍ଦ ବର୍ଣ୍ଣନ ଅତୀବ ଚିତ୍ତାକର୍ଷକ :-

"ଶ୍ରୀ ମଦନ ଗୋପାଳଙ୍କ ଶୋଭା କି କହିବା, ସମ କାହିଁ ପାଇବା, ଅଭିନବ କାମଦେବର ଶୋଭା, ବିଜୁଳି ଛନ୍ଦେ ଉଭା, ମକର ଆକୃତି ପ୍ରଭା, ଦେବାଧିଦେବରାଜ, ମୋହନ ମୂରତି ସାଜ, ଶ୍ରୀଚରଣ ସରୋଜ, ମଞ୍ଜିର ମଞ୍ଜୁଳ ଯୁଗଳ ପ୍ରକାସ ଭୁଜଦ୍ୱୟ, ନବରତ୍ନ ବଳୟ ମୁଦିକାରେ, କଟିତଟ ସଜ୍ଜିତ, ତପନ କର ନିନ୍ଦିତ, ପୀତପଟ ନବରତ୍ନ କାଞ୍ଚନ କାଞ୍ଚିଦାମ ରଞ୍ଜିତ, ଅନୁପମ ବକ୍ଷସ୍ଥଳ ଶ୍ରୀବତ୍ସ ଲାଞ୍ଛନ, କର୍ପୂର ଚୁଆ ଚନ୍ଦନ, ଅମଳାନ କଉସ୍ତୁଭ ହାର, ଉଦାର ବର୍ତ୍ତୁଳ ମୁକ୍ତାମାଳ ହୃଦୟ, ମୁରଲୀ ମନୋହର, ବିମ୍ବାଧର, ନାସେ ମୋତିବର, ମକର ବେଷ୍ଟିତ, ମଧୁପର୍ଣ୍ଣ ଭୃକୁଟି ରୁଚିର, ସର୍ବାଙ୍ଗେ କର୍ପୂର ଅବିର, ମନ୍ଦ ମନ୍ଦ ହାସ ନୟନ, ଅଳପ ଅପାଙ୍ଗ, ବଙ୍କ ଚିତ୍ତକ ଅ... ଅପାଙ୍ଗ ଅବଲୋକନେ ଅଙ୍ଗଭଙ୍ଗ, ନୀଳକଣ୍ଠ ଶୋଭିତ ଅବଲୋକନେ ଶିରେ କର ଅଞ୍ଜଳି ।"

ଦୋଳଗୋବିନ୍ଦଙ୍କ ସୁସଜ୍ଜିତ ବିମାନ ସିଂହଦ୍ୱାର ଦେଇ ଦୋଳବେଦୀକୁ ଯିବା ସମୟରେ ଶରଣ ଦାସ ବର୍ଣ୍ଣନ କରିଛନ୍ତି "ଚନ୍ଦ୍ରକିରଣ ଚନ୍ଦ୍ରହୁଳା ଦୀପରେ ଅବନୀ କ୍ଷୀର ସମୁଦ୍ର ପ୍ରାୟ ଦିଶୁଅଛି । ସୁର ଅସୁର ମିଶୁଛି । ପୁଷ୍ପକ ବିମାନ ଅବତରି ଆସୁଛି । ସକଳ ପାପକୁ ନାଶୁଛି ।"

ଗଜପତି ମହାରାଜା ନିଜେ, ସେତେବେଳେ ଦୋଳବେଦୀ ଛେରାପହଁରା କରୁଥିବାର ବର୍ଣ୍ଣନ ଶରଣ ଦାସଙ୍କ ବର୍ଣ୍ଣନାରୁ ମିଳିଥାଏ । "ଏମନ୍ତେ ପ୍ରଭୁ ପ୍ରଦକ୍ଷିଣ କରି ମଣ୍ଡପରେ ବିଜେ, ବସନ୍ତ ରାଗେ ମହୁରୀ ବାଜେ ।"ଏହାପରେ ରାଜା ଛେରାପହଁରା କରନ୍ତି । xxxxଷୋଡ଼ଶ ଉପଚାରରେ ଧୂପ, ଆଳତି ଆଦି ପୂଜାବିଧି ହୁଏ । ନୂତନ 'ସପତାଙ୍ଗ ପାଣ୍ଡି' ଉପଲାଗି କରାଯାଏ । xxxxମୁଦିରଥ ପ୍ରଭୃତି ସେବକମାନେ ଦୋଳକୁ ଧୀରେ ଧୀରେ ଝୁଲାନ୍ତି । xxxxଶ୍ରୀ ଦୋଳଗୋବିନ୍ଦ ଦେବଙ୍କ ପ୍ରଥମ ଦୋଳ ହୋଅଇ, ବଚନେ ଶୋଭା କହି ନୋହଇ ।"

ସର୍ବସାଧାରଣ ଭକ୍ତଗଣ ଠାକୁରଙ୍କୁ ଚଣା, ଗାବର, ଫଗୁ ଓ ଚୂତଫଳ ଲାଗି କରନ୍ତି । "ବସନ୍ତ ଋତୁ ସଞ୍ଜାତ ମିଷ୍ଟାନ୍ନ ସୁଖାବହ । ଗୃହାଣ ଗୋପୀ ଗୋବିନ୍ଦ ଚୂତ ଫଳମୁତ୍ତମମ୍ ।।" ସର୍ବସାଧାରଣ ଦର୍ଶନ ପରେ ଧୋପଖାଳ ହୁଏ । ଘଣ୍ଟ, ଛତା ଓ କାହାଳି ସହ ପଟୁଆର ହୋଇ ପରେ, ଦ୍ୱିପ୍ରହର ଓ ସନ୍ଧ୍ୟାଧୂପ ହୁଏ । ତିନି ଧୂପରେ କାନିକା, ଓଡ଼ିଆ ଖିରି, ଶାକରା, ନାଡ଼ି, ବଡ଼ା, ହଂସକେଳି, ଆରିସା, ତାଳିସ ଇତ୍ୟାଦି ଷୋଡ଼ଶୋପଚାରରେ ଭୋଗ କରାଯାଏ । ଏହାପରେ ଠାକୁରଙ୍କୁ ଦୋଳିରୁ ଓହ୍ଲାଇ ବାହୁଡ଼ା ବିଜେ କରାଯାଏ । ମୁଦିରସ୍ତେ ନିଶୋଧି କରିବା ପରେ ଠାକୁର ସିଂହାସନ ଘୁରିପଟେ ସାତଥର ପ୍ରଦକ୍ଷିଣ କରନ୍ତି ଓ ପ୍ରସାଦ ଲାଗି ହୁଏ । ସିଂହାସନ ତଳେ ଅର୍ଥାତ୍ ଦୋଳବେଦୀ ଉପରେ ସାତଥର ପରିକ୍ରମା କରି ବିମାନରେ ବିଜେ ହୁଅନ୍ତି ଓ ବିମାନରେ ଦୋଳବେଦୀ ଘୁରିପଟେ ସାତଥର ପ୍ରଦକ୍ଷିଣ କରି ମନ୍ଦିରକୁ ବିଜେ କରନ୍ତି । ଶ୍ରୀମନ୍ଦିରର ଭିତର ବେଢ଼ାରେ ସାତଥର ପ୍ରଦକ୍ଷିଣ କଲାପରେ ସରସ୍ୱତୀଙ୍କ ମନ୍ଦିର ସମ୍ମୁଖରେ ବିମାନ ରଖାଯାଏ । ସେଠାରେ ପର୍ଯ୍ୟୋଗ ଯୋଗାଣିଆ ପ୍ରଦତ୍ତ ଶୀତଳ ଭୋଗ ମଣୋହି ଓ ବନ୍ଦାପନା ହୁଏ । ଏହାପରେ ସାତପାହାଚ ଦେଇ ବିମାନ ଭିତର କାଠ ଅର୍ଥାତ୍ ଜୟବିଜୟ ଦ୍ୱାର ନିକଟରେ ବିଜେ ହୁଏ । ସେଠାରେ ବନ୍ଦାପନା, ଜଳଲାଗି ଓ ଖାଇକୋରା ଭୋଗ ସରିବାପରେ ତିନି ଠାକୁର ରତ୍ନସିଂହାସନକୁ ସାତଥର ପରିକ୍ରମା କରନ୍ତି । ତତ୍‌ପରେ ଲକ୍ଷ୍ମୀ ଓ ସରସ୍ୱତୀ (ଶ୍ରୀଦେବୀ ଓ ଭୂଦେବୀ) ରତ୍ନସିଂହାସନ ଓ ଦୋଳଗୋବିନ୍ଦ ଗର୍ଭଗୃହକୁ ବିଜେ କରନ୍ତି । ଦୋଳପୂର୍ଣ୍ଣମୀ ଦିନ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କର ରାଜବେଶ ହୁଏ ।

ଯାତ୍ରୀ ଭାଗବତରେ "ତତୋ ଦୋଳପୂର୍ଣ୍ଣିମାଂ ପରଦିନେ ଦେବ... ସଂପୂଜ୍ୟ ଚନ୍ଦନୋଦକେନ ହରିଦ୍ରୋଦକେନ ଦେବସ୍ୟ ...

ସେବନମ୍ ।" ବାକ୍ୟରୁ ଦୋଳପୂର୍ଣ୍ଣମୀର ପର ଦିନ ଅର୍ଥାତ୍ ଚୈତ୍ର କୃଷ୍ଣ ପ୍ରତିପଦା ତିଥିରେ ହୋଲିର ଅନ୍ତିମ ଦିବସ ପାଳନ କରାଯାଇଥାଏ । ଉକ୍ତ ଦିନ ମହାପ୍ରଭୁଙ୍କ ମଧ୍ୟାହ୍ନ ଧୂପ ପରେ ଦୋଳଗୋବିନ୍ଦ, ଶ୍ରୀଦେବୀ ଓ ଭୂଦେବୀ ଆଜ୍ଞାମାଳ ପାଇ ବିମାନରେ ସିଂହଦ୍ୱାର, ବଡ଼ଦାଣ୍ଡ ଦେଇ ନରେନ୍ଦ୍ର ପୁଷ୍କରଣୀ ଚକଡ଼ାରେ ବିଜେ କରନ୍ତି । ଏଠାରେ ମୁଦିରସ୍ତ ପ୍ରସାଦ ଲାଗି, ପଞ୍ଚୋପଚାରରେ ପୂଜା ମଣୋହି କରନ୍ତି ଓ ମୁଦିରସ୍ତ ବନ୍ଦାପନା ଓ ଆଳତି କରନ୍ତି । ତା'ପରେ ଠାକୁର, ଠାକୁରାଣୀ ଶ୍ରୀମନ୍ଦିରକୁ ବାହୁଡ଼ା ବିଜେ କରନ୍ତି । ଦୋଳଗୋବିନ୍ଦ ଦକ୍ଷିଣଘରକୁ ଏବଂ ଭୂଦେବୀ ଓ ଶ୍ରୀଦେବୀ ରତ୍ନସିଂହାସନକୁ ବିଜେ କରନ୍ତି । ଏହା ହୋରି ଉତ୍ସବ ନାମରେ ଅଭିହିତ । ତେଣୁ ଦଶମୀଠାରୁ ଚତୁର୍ଦ୍ଦଶୀ ପାଞ୍ଚଦିନ ଗୁଚେରୀ ବେଶ ଓ ଗୁଚେରୀ ଭୋଗ, ପୂର୍ଣ୍ଣମୀ ଦିନ ରାଜବେଶ ଓ ପୂର୍ଣ୍ଣମୀ ପରଦିନ ଅର୍ଥାତ୍ ଚୈତ୍ର କୃଷ୍ଣ ପ୍ରତିପଦା ଦିନ ହୋରି ଉତ୍ସବ ପାଳିତ ହୋଇଥାଏ ।

ଶ୍ରୀମନ୍ଦିର ପରି ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଭଗବାନ ହରିହରଙ୍କ ଦୋଳପର୍ବ ପୂର୍ଣ୍ଣମୀର ଛ' ଦିନ ପୂର୍ବରୁ ଆରମ୍ଭ ହୋଇ ପୂର୍ଣ୍ଣମୀ ଦିନ ମହାସମାରୋହରେ ସମାପନ ହୋଇଥାଏ । ପ୍ରଥମ ଛ' ଦିନ ସୁସଜ୍ଜିତ ବିମାନରେ ହରିହର ନଗର ପରିକ୍ରମା କରନ୍ତି ଓ ପୂର୍ଣ୍ଣମୀ ଦିନ ଫଗୁଖେଳ ସହ ଦୋଳଯାତ୍ରାର ପରିସମାପ୍ତି ହୋଇଥାଏ । ଲିଙ୍ଗରାଜ ମନ୍ଦିରର ଉତ୍ତର ଦ୍ୱାରରେ ଥିବା ପୁଷ୍କରିଣୀ ନିକଟ ଦୋଳ ମଣ୍ଡପରେ ହରିହରଙ୍କ ଦୋଳଯାତ୍ରା ଅନୁଷ୍ଠିତ ହୋଇଥାଏ । ଫଲ୍ଗୁ କ୍ରୀଡ଼ା ସମୟରେ ସାମୂହିକ ଭାବେ ଅଶ୍ଳୀଳସାହିତ ଗୀତର ବ୍ୟବହାର ଦେଖାଯାଏ ।

ଦୋଳବେଦୀସ୍ଥ ଦକ୍ଷିଣାଭିମୁଖୀ ଗୋବିନ୍ଦଙ୍କ ଦର୍ଶନ ଏବଂ ଫଲ୍ଗୁ ଓ ନବଜାତ୍ଭୂତ ସମର୍ପଣ ଅତୀବ ପୁଣ୍ୟପ୍ରଦ ।

(୨) ଯେ ପଶ୍ୟନ୍ତି ଜନାଃ ବିବେକ ନିପୁଣାଃ
ଶ୍ରୀ ନୀଳଗୋପୀଧିପ ॥
ସ୍ୱୋମଂ ଦୋଳ ମହୋତ୍ସବଂ ନ ସୁଖଦଂ
ସ୍ୱସ୍ଥଃ ପ୍ରଦଂ ମୁକ୍ତିଦମ୍ ॥
ତେ ସର୍ବେଂଖିଳ ଲୋକକେପି ସକଳଂ
ଶର୍ମାପି ଭୁକ୍ତ୍ୱା ପରେ ।
ଶ୍ରୀ ବିଷ୍ଣୋଃ ପରମଂ ଚ ଧାମ ସତତଂ
ଗଚ୍ଛନ୍ତି ନୂନଂ କ୍ଷଣାତ୍ ॥"
(ବାମଦେବ ସଂହିତା ୨୧–୭୭, ୭୪)

× × × × ×

(୭) "ଦୋଳାସ୍ଥଂ ଦୋଳଗୋବିନ୍ଦଂ ମଞ୍ଚସ୍ଥଂ ମଧୁସୂଦନଂ ରଥସ୍ଥଂ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନବିଦ୍ୟତେ ।"

## ଉପସଂହାର :

ହିନ୍ଦୁର ପ୍ରତ୍ୟେକ ପର୍ବପର୍ବାଣି ପଛରେ ଏକ ଆଧ୍ୟାତ୍ମିକବାଦ ଅନ୍ତର୍ନିହିତ ଅଛି । ପର୍ବପର୍ବାଣି ମନୁଷ୍ୟକୁ ଇନ୍ଦ୍ରିୟ ସୁଖରୁ ଆଧ୍ୟାତ୍ମିକ ଜଗତକୁ ଆକର୍ଷିତ କରି ପରମପଦ ପ୍ରଦାନ କରେ । ହୋଲିର ଅର୍ଥ ନୁହେଁ ଇନ୍ଧନ ଏକତ୍ର କରି ଅଗ୍ନି ସଂଯୋଗ କରିବା । ମନରୁ ସମସ୍ତ **ଅବିଦ୍ୟା ଆବର୍ଜନା ରୂପକ ଷଡ଼ରିପୁକୁ ବାଛି ଓ ଜ୍ଞାନାଗ୍ନିରେ ଭସ୍ମୀଭୂତ କରିବା** ଏବଂ ଦୟା, କ୍ଷମା, ସତ୍ୟ ଓ ଶାନ୍ତିର ଆଲୋକ ସର୍ବତ୍ର ବିତରଣ କରିବା ହୋଲିର ଲକ୍ଷ୍ୟ । ଅନ୍ତର୍ଜ୍ୟୋତି ପ୍ରଜ୍ୱଳନ ହିଁ ହୋଲିର ମାହାତ୍ମ୍ୟ ।

ହୋଲିରୁ ଶିକ୍ଷାମିଳେ "Let the dead bury the dead". ବର୍ଷଯାକର ମନୋମାଳିନ୍ୟତା, କଳିତକରାଳ ଭୁଲି ପୁଣି ଏକତ୍ର ହେବା ହୋଲି ହିଁ ଶିକ୍ଷାଦିଏ । ରାଜା ପ୍ରଜା, ଧନୀ ଦରିଦ୍ର ସମସ୍ତେ ହୋଲି ଖେଳରେ ସମାନ । ଏହାହିଁ ହୋଲି ପର୍ବର ସୂଚନା ।

ପୁନଶ୍ଚ ଚରଣ ତନ୍ତ୍ରାନୁସାରେ 'ବସନ୍ତେ ଅଗ୍ନି ସେବନଂ' ଅର୍ଥାତ୍ ମାଘ ମାସ ପୂର୍ଣ୍ଣମୀଠାରୁ ଫାଲ୍ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ରାତ୍ରିରେ ଅଗ୍ନି ପ୍ରଜ୍ୱଳନ କରିବା ବିଧେୟ । 'ମେଣ୍ଢା ପୋଡ଼ି' ବା 'ଅଇଘରା' ବା 'ହୋଲିକା ଦହନ' ପୂର୍ବ ପରମ୍ପରାର ପ୍ରତୀକ । ଶତାବରୀ, ପାଳୁଅ, ମୁଥା, ଅଙ୍ଗାରାନ୍ତି ଓ ସିନ୍ଦୁର ସମାବେଶରେ ପ୍ରସ୍ତୁତ ଫଲ୍ଗୁ (ଫଗୁ) ବା ଅବିର ଶରୀରର କୁଷ୍ଠ, କଣ୍ଡୁ, ବ୍ରଣ ଓ ବସନ୍ତ ବିନାଶକ । ଏହା ବାୟୁମଣ୍ଡଳରୁ ବସନ୍ତ ଜୀବାଣୁ ବା ଭାଇରସ୍‌ଗୁଡ଼ିକୁ ବିନାଶ କରିଥାଏ ।

ପୂର୍ବାଚାର୍ଯ୍ୟଙ୍କର ଶୁଦ୍ଧଜ୍ଞାନ ଓ ଭକ୍ତିଶାଣିତ ଅପୂର୍ବ ସାଧନାର ସ୍ରୋତ ଆମ ଦେଶରେ ଏପର୍ଯ୍ୟନ୍ତ ଅବ୍ୟାହତ ରହିଛି । ବାସନ୍ତିକ ଦୋଳୋତ୍ସବ ଭଗବତ୍ ପ୍ରୀତିର ଉତ୍କର୍ଷ, ମୈତ୍ରୀ, ଐକ୍ୟ, ବିଶ୍ୱ ଭ୍ରାତୃତ୍ୱର ପ୍ରତିଷ୍ଠା ଓ ସର୍ବୋପରି ଜନଜୀବନର ସୁରକ୍ଷା ନିମିତ୍ତ ଭେଷଜ ବିଦ୍ୟାର ପ୍ରୟୋଗ ଓ ପ୍ରଚଳନରେ ଗରିମାନ୍ତ ଓ ମହିମାନ୍ୱିତ ।

*ସମ୍ପାଦକ, ମହାପ୍ରଭୁ*
*ବୃନ୍ଦାବନ ଧାମ, ଲୋକନାଥ ରୋଡ଼,*
*ପୁରୀ-୭୫୨୦୦୧ ।*

# ସମ୍ବାଦ ପରିକ୍ରମା

## ଓଡ଼ିଶା ବାହାରେ ଉତ୍କଳ ଦିବସ ପାଳନ

୧୯୩୬ ମସିହା ଅପ୍ରେଲ । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସେଦିନ ଓଡ଼ିଆ ପ୍ରଦେଶ ଗଠିତ ହେଲା । ତେଣୁ ଏହି ଦିନଟି ସମସ୍ତ ଓଡ଼ିଆବାସୀଙ୍କ ନିମନ୍ତେ ଏକ ମହତ୍ତ୍ୱପୂର୍ଣ୍ଣ ଦିବସ ।

ଗତ ଅପ୍ରେଲ ପହିଲା ତାରିଖ ଦିନ ସମଗ୍ର ରାଜ୍ୟରେ ୬୦ତମ ଉତ୍କଳ ଦିବସ ମହାସମାରୋହରେ ପାଳିତ ହୋଇ ଯାଇଛି କିନ୍ତୁ ଓଡ଼ିଶା ବାହାରେ ବସବାସ କରୁଥିବା ଓଡ଼ିଆ ଭାଷାଭାଷୀ ଲୋକମାନେ ମଧ୍ୟ ଭାରତବର୍ଷର ବିଭିନ୍ନ ସ୍ଥାନରେ ଏହି ଦିବସଟି ପାଳନ କରିଛନ୍ତି । ତାହାର ଏକ ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

## ଦିଲ୍ଲୀରେ ଉତ୍କଳ ଦିବସ ପାଳିତ

ରାଜଧାନୀ ନୂଆଦିଲ୍ଲୀର ୩ଟି ଭିନ୍ନ ଭିନ୍ନ ସ୍ଥାନରେ ଗତ ପହିଲାରେ 'ଉତ୍କଳ ଦିବସ' ପାଳିତ ହୋଇଥିଲା ।

ସ୍ଥାନୀୟ ତାଲକାଟୋରା ଗାର୍ଡେନ ଷ୍ଟାଡ଼ିୟମଠାରେ ସରକାରୀ ଭାବେ ଅନୁଷ୍ଠିତ ଏହି ଉତ୍ସବରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଯୋଗ ଦେଇଥିଲେ । ଗତ ଉତ୍ସବରେ ଓଡ଼ିଶାର ପେନ୍‌ସନ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ପାଟ୍ଟଶାଣୀ ଓ ଦିଲ୍ଲୀରେ ଥିବା ଓଡ଼ିଶାର ରେସିଡେଣ୍ଟ କମିଶନର ଶ୍ରୀ ଡ଼ି.ପି. ବାଗ୍‌ଚି, ଶ୍ରୀ ଓ଼.ସି. ଦାସ ଓ ଏମ୍‌.ପି. ଶ୍ରୀ ଗୋବିନ୍ଦ ମୁଣ୍ଡା ଯୋଗ ଦେଇଥିଲେ ।

ଅନ୍ୟ ଏକ ଉତ୍ସବ ଉକ୍ତ ସ୍ଥାନଠାରୁ ଅଳ୍ପ କିଛିଦୂର ବିଠଲଭାଇ ପଟେଲ ଗୃହରେ ଅନୁଷ୍ଠିତ ହୋଇଥିଲା । ଏଥିରେ ବିଶିଷ୍ଟ ଶିଳ୍ପୀ ଶ୍ରୀ ଯତୀନ୍ ଦାସ ପୌରୋହିତ୍ୟ କରିଥିଲେ ଦିଲ୍ଲୀ ଓଡ଼ିଆ ଛାତ୍ରସଙ୍ଘ (ଦୋସା) ପକ୍ଷରୁ ଏହି ଉତ୍ସବର ଆୟୋଜନ କରାଯାଇଥିଲା ।

ତୃତୀୟ ଉତ୍ସବଟି ଶ୍ରୀ ଫୋର୍ଟ ପ୍ରେକ୍ଷାଗୃହରେ ଅନୁଷ୍ଠିତ ହୋଇଥିଲା । ଏଥିରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଯୋଗ ଦେଇଥିଲେ । ଏ ଉପଲକ୍ଷେ ଏଠାରେ ୩ ଦିନିଆ ଚଳଚ୍ଚିତ୍ର ଉତ୍ସବ ମଧ୍ୟ ଆୟୋଜନ କରାଯାଇଥିଲା ।

ଶ୍ରୀ ଶର୍ମା ଉଦ୍‌ବୋଧନ ଦେଇ କହିଥିଲେ ଯେ, ଓଡ଼ିଶାରେ ବିପୁଳ ଖଣିଜ ସମ୍ପଦ ଭରି ରହିଛି । ଓଡ଼ିଶାର ଛାତ୍ର ଯୁବକମାନେ ଏହାର ସୁବିନିଯୋଗ କରିବା ଉଚିତ । ସେ କହିଛନ୍ତି ଯେ, ଭାରତର ଅନ୍ୟାନ୍ୟ ରାଜ୍ୟରେ ଆତଙ୍କବାଦୀ କାର୍ଯ୍ୟକଳାପ ଲାଗି ରହିଥିଲେ ହେଁ ଓଡ଼ିଶାରେ ଆଇନ ଶୃଙ୍ଖଳା ପରିସ୍ଥିତି ସ୍ୱାଭାବିକ ରହିଛି ।

ଛାତ୍ରସଙ୍ଘର ସଭାପତି ଶ୍ରୀ ଅଜୟ କୁମାର ଶତପଥୀ ଉଦ୍‌ବୋଧନ ଦେଇ କହିଲେ ଯେ, ଓଡ଼ିଶାରେ ବହୁଳ ଖଣିଜ ସମ୍ପଦ ଥିଲେ ମଧ୍ୟ ଏହା ଏବେ ବି ଦେଶର ଦରିଦ୍ରତମ ରାଜ୍ୟ ହୋଇ ରହିଛି ।

ଚଳଚ୍ଚିତ୍ର ଉତ୍ସବକୁ ସୂଚନା ଓ ପ୍ରସାରଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଅଶ୍ୱିନୀ କୁମାର ପାଣ୍ଡା ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଏହି ଉତ୍ସବରେ ଓଡ଼ିଶାର ଚଳଚ୍ଚିତ୍ର ଅଭିନେତା ଅଭିନେତ୍ରୀଗଣ ଯୋଗ ଦେଇଥିଲେ । ଯେଉଁ ଅଭିନେତା ଅଭିନେତ୍ରୀଗଣ ଯୋଗ ଦେଇଥିଲେ, ସେମାନେ ହେଲେ ପ୍ରଶାନ୍ତ ନନ୍ଦ, ଉତ୍ତମ ମହାନ୍ତି, ଶ୍ରୀରାମ ପଣ୍ଡା, ବିଜୟ ମହାନ୍ତି, ଅଜିତ ଦାସ, ଅପରାଜିତା, ତନ୍ଦ୍ରା ରାୟ, ଡଲି ଜେନା, ଧୀର ବିଶ୍ୱାଳ ।

ଏହି ଉତ୍ସବରେ ଓଡ଼ିଆ ଚଳଚ୍ଚିତ୍ର ଆଦି ମୀମାଂସା, ଏଇ ଆମ ସଂସାର, ବଧୂ ନିରୁପମା, ଯାଦେବୀ ସର୍ବଭୂତେଷୁ, ଅଗ୍ନିବୀଣା, ନିରବ ଝଡ଼, ମାଆ ମିରିଗ ପ୍ରଭୃତି ପ୍ରଦର୍ଶିତ ହୋଇଥିଲା ।

## ବମ୍ବେରେ ଉତ୍କଳ ଦିବସ ପାଳିତ

ଇତିମଧ୍ୟରେ ବମ୍ବେ ଉତ୍କଳ ସମିତି ତରଫରୁ ଓଡ଼ିଶାର ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଛି । ଅନଙ୍ଗ ଉଦୟ ବାବୁ ବମ୍ବେ ପ୍ରବାସୀ ଓଡ଼ିଆଙ୍କ ଗହଣରେ ସକାଳୁ ସଞ୍ଜଯାଏ ଅତିବାହିତ କରିଥିଲେ ।

ସକାଳେ ମନ୍ତ୍ରୀ ଓଡ଼ିଆ ବହୁଳ ଅଞ୍ଚଳ କୁର୍ଲାରେ ବମ୍ବେର ଏକମାତ୍ର ପୁରୁଣା ଓଡ଼ିଆ ସମାଜ ବମ୍ବେ ଉତ୍କଳ ସମିତି ଏବଂ ତାର ସ୍କୁଲ କୋଠା ପରିଦର୍ଶନ କରିଥିଲେ । ସେ ସମିତି ତଥା ସ୍କୁଲ ସୁବିଧା ଅସୁବିଧା ଏବଂ ପରିଚାଳନା ବିଷୟ ବୁଝାସୁଝା କରାପରେ ଉପସ୍ଥିତ ଭାଇ ଭଉଣୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ସାକିନାକା କୁର୍ଲା ପାଇପ୍ ଲାଇନସ୍ଥିତ ଓଡ଼ିଆ ବସ୍ତିରେ ମନ୍ତ୍ରୀ ମହୋଦୟ ପୀଠ ପରିଦର୍ଶନ କରି ଉଦ୍ୟୋକ୍ତାମାନଙ୍କୁ ଉତ୍ସାହିତ କରିଥିଲେ ଏବଂ ଗଜପତି ରାଜାଙ୍କ ଦ୍ୱାରା ଯାହା କିଛି ସାହାଯ୍ୟ ହୋଇ ପାରିବ ସେ କରାଇ ଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ସଂଧ୍ୟାରେ ଭିଲେ ପାର୍ଲେ(ପଶ୍ଚିମ)ର ଭାଇଦାସ ଆଲୋକ ମଞ୍ଚରେ ଆୟୋଜିତ ୬୦ତମ ଉତ୍କଳ ଦିବସ ଉତ୍ସବରେ ମନ୍ତ୍ରୀ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ଏବଂ ସେଠି ରାଜଗୁରୁ ଅତିଥିମାନଙ୍କୁ ସ୍ୱାଗତ ଜଣାଇଥିଲେ ।

ପ୍ରଦୀପ ପରିଡାଙ୍କ ପରିଶ୍ଳେଷଣାରେ ଏବଂ ଗୋପାଳ ତ୍ରିପାଠୀଙ୍କ ସମ୍ପାଦନାରେ ବମ୍ବେ ଉତ୍କଳ ସମିତିରେ ଦ୍ୱିତୀୟ ସ୍ମରଣିକା ପ୍ରଥମକୁ ଅରୁଣ ଭାଇ ଗୁଜରାଠୀ ହାତରେ ଉନ୍ମୋଚନ କରିଥିଲେ। ଅରୁଣ ଭାଇ ତାଙ୍କ ଭାଷଣରେ ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ପ୍ରଶଂସାକରି ସମସ୍ତ ଓଡ଼ିଆଙ୍କୁ ଉତ୍କଳ ଦିବସର ଶୁଭକାମନା, ମୁଖ୍ୟଅତିଥି ଅନଙ୍ଗ ଉଦୟ ସିଂଦେଓ ତାଙ୍କ ଭାଷଣରେ ଓଡ଼ିଶାରେ ପର୍ଯ୍ୟଟନ ସମ୍ପର୍କରେ ବିବରଣୀ ଦେଇଥିଲେ। ବମ୍ବେରେ ଏକ ଉତ୍କଳ ଭବନ ଏବଂ ପର୍ଯ୍ୟଟନ ସାଂସ୍କୃତିକ ବିଭାଗ କରିବା ଉଚିତ ବୋଲି ମନ୍ତ୍ରୀ କହିଥିଲେ।

ବମ୍ବେ ଉତ୍କଳ ସମିତିର ସଭାପତି ଏବଂ ଅଭ୍ୟର୍ଥନା ସମିତିର ସଭାପତି ଭଗବାନ ପାଣିଗ୍ରାହୀ ତାଙ୍କ ଭାଷଣ ପ୍ରସଙ୍ଗରେ ଉତ୍କଳ ସମିତିର ବିବରଣୀ ପଢ଼ି ଓଡ଼ିଆ ପ୍ରବାସୀଙ୍କର ସୁବିଧା ଅସୁବିଧା କଥା ଉଲ୍ଲେଖ କରିଥିଲେ। ଅନଙ୍ଗ ଉଦୟ ସିଂହଦେଓ ଓଡ଼ିଶା ସରକାରଙ୍କ ତରଫରୁ ବିଶେଷ ଅତିଥି ଶ୍ରୀ ଅରୁଣ ଭାଇଙ୍କୁ ଏକ ପଟଚିତ୍ର ଭେଟି ଦେଇଥିଲେ।

ସାଂସ୍କୃତିକ କାର୍ଯ୍ୟକ୍ରମର ସଭାପତି ଡାକ୍ତର ପ୍ରଫୁଲ୍ଲ ମିଶ୍ର ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ।

ଏହି ସନ୍ଧ୍ୟାରେ ସ୍ଥାନୀୟ ଗୁରୁ ରବୀନ୍ଦ୍ର ଅତି ବୁଦ୍ଧୀଙ୍କ ନିର୍ଦ୍ଦେଶନାରେ ଓଡ଼ିଶୀ ନୃତ୍ୟ ଏବଂ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ତରଫରୁ ସାଂସ୍କୃତିକ କାର୍ଯ୍ୟକ୍ରମ ର ଆୟୋଜନ କରାଯାଇଥିଲା।

ସର୍ବଶ୍ରୀ ଏସ୍‌. ପି. ପରିଡା, ଗୋପାଳ ଚନ୍ଦ୍ର ତ୍ରିପାଠୀ, ଅରୂପ ପଟ୍ଟନାୟକ, ଅମୀୟ ସାହୁ, ଡଃ ପ୍ରଫୁଲ୍ଲ ମିଶ୍ର, ତ୍ରୈଲୋକ ଜେନା, ସୁଧାଂଶୁ କର, ବିଜୟ ମିଶ୍ର, ଗଣେଶ ମହାପାତ୍ର ତଥା ବମ୍ବେ ଉତ୍କଳ ସମିତିର ସଭାପତି ଭଗବାନ ପାଣିଗ୍ରାହୀ ଏବଂ ଅନ୍ୟାନ୍ୟ ସମିତି ସଦସ୍ୟବୃନ୍ଦ ତଥା ଶୁଭାକାଙ୍କ୍ଷୀ ଓଡ଼ିଆଙ୍କ ଉଦ୍ୟମରେ ବମ୍ବେରେ ୬୨ତମ ଉତ୍କଳ ଦିବସ ମହାସମାରୋହରେ ପାଳିତ ହୋଇଥିଲା।

## କଲିକତାରେ ଉତ୍କଳ ଦିବସ ପାଳିତ

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଉଦ୍‌ବିମଣ୍ଡ, ସମୃଦ୍ଧ କରି ଗଢ଼ି ତୋଳିବା ଏବଂ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ଯେଉଁମାନେ ନିଜର ଜୀବନକୁ ସଳିତା ଭଳି ଜଳି ଜଳି ପାଉଁଶ କରିଥିଲେ, ସେମାନଙ୍କ ମଧ୍ୟରେ ଜାତୀୟ ଗୌରବ ମଧୁସୂଦନ, ପଣ୍ଡିତ ଗୋପବନ୍ଧୁ ଦାସ ଓ ଡ଼ାକ୍ତର ହରେକୃଷ୍ଣ ମହତାବ ଥିଲେ ଅନ୍ୟତମ। ସେମାନଙ୍କୁ ଏ ଓଡ଼ିଆ ଜାତି କେବେ ଭୁଲିପାରିବ ନାହିଁ। କଲିକତାର ବେଲଘରିଆଠାରେ ସ୍ୱତନ୍ତ୍ର ଉତ୍କଳ ଦିବସ ଉଦ୍‌ଯାପନ କମିଟି ତରଫରୁ ଆୟୋଜିତ ଉତ୍କଳ ଦିବସ ଓ ସର୍ବୋଦୟ ସାଂସ୍କୃତିକ ସମ୍ମେଳନର ସମାରୋହକୁ ଉଦ୍‌ଘାଟନ କରି ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ର ନାଥ ନାୟକ ଉପରୋକ୍ତ ମତ ପୋଷଣ କରିଥିଲେ।

ମୁଖ୍ୟ ଅତିଥିଭାବେ ଯୋଗଦେଇ ପଶ୍ଚିମବଙ୍ଗର ପଞ୍ଚାୟତରାଜ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟକାନ୍ତ ମିଶ୍ର କହିଲେ ଯେ, ଆଧୁନିକ ଓ ଐତିହାସିକ ଯୁଗରୁ ଲକ୍ଷ୍ୟ କଲେ ଜଣାଯାଏ, ପଶ୍ଚିମବଙ୍ଗ ଏବଂ ଉତ୍କଳର ଧର୍ମ ପରମ୍ପରା ସମଭାବରେ ସମୃଦ୍ଧ। ଏଠାରେ ମା' ଗଙ୍ଗାକାଳୀ ଓ ଓଡ଼ିଶାରେ ମହାପ୍ରଭୁ ଜଗନ୍ନାଥ ଉଭୟ ରାଜ୍ୟର ସାହିତ୍ୟ, ସଂସ୍କୃତିକୁ ଅତି ନିବିଡ଼ ଭାବରେ ବାନ୍ଧି ରଖିଛନ୍ତି। ଐତିହ୍ୟ ଓ ପରମ୍ପରା ଦୃଷ୍ଟିରୁ କେହି କାହାରିଠାରୁ କମ୍ ନୁହନ୍ତି।

ମୁଖ୍ୟବକ୍ତା ଭାବେ ଯୋଗଦେଇ ପଶ୍ଚିମବଙ୍ଗ ଉତ୍କଳ ସମାଜର ସଭାପତି, ସାହିତ୍ୟିକ ଡଃ କୃଷ୍ଣଚନ୍ଦ୍ର ଭୂୟାଁ ବିଭିନ୍ନ ଦୃଷ୍ଟି କୋଣରୁ ବହୁ ଗବେଷଣାମୂଳକ ତଥ୍ୟ ପ୍ରଦାନ କରି କହିଲେ ଯେ, ଓଡ଼ିଶାରେ ଯଦି ଆଦିକବି ସାରଳା ଦାସ, ଅତିବଡ଼ି ଜଗନ୍ନାଥ ଦାସ, କବି ଦୀନକୃଷ୍ଣ ସନ୍ଥ ଭୀମଭୋଇ ଜନ୍ମଗ୍ରହଣ କରି ନଥାନ୍ତେ, ତେବେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆମମାନଙ୍କ ନିମିତ୍ତ ଏକ ବିସ୍ମୟ କାରଣ ହୋଇଥା'ନ୍ତା। ଉତ୍କଳ ଜନନୀ ଯେତେବେଳେ ଘୋର ସଙ୍କଟମୟ ପରିସ୍ଥିତିରେ ସମ୍ମୁଖୀନ, ସେତିକିବେଳେ ସେ ମଧୁସୂଦନ, ଗୋପବନ୍ଧୁ, ନୀଳକଣ୍ଠ, ଫକୀରମୋହନ ପ୍ରଭୃତି ବରେଣ୍ୟ ସନ୍ତାନମାନଙ୍କୁ ଜନ୍ମ ଦେଇଛି। ଆଜିର ଯୁବ ସମାଜ ସେମାନଙ୍କ ଆଦର୍ଶ ଅନୁସରଣ କରିବା ଉଚିତ୍।

ଅନ୍ୟମାନଙ୍କ ମଧ୍ୟରେ ଓଡ଼ିଶା ବିଧାନସଭା ସଦସ୍ୟ ଶ୍ରୀ ଉମେଶ ଚନ୍ଦ୍ର ସ୍ୱାଇଁ, କମାରହାଟୀ ପୌରସଭାର ପୌରପାଳ ଶ୍ରୀ ଗୋବିନ୍ଦ ଗାଙ୍ଗୁଲୀ, ଖଡ଼ଗପୁର ବିଦ୍ୟାପୀଠର ସହକାରୀ ଶିକ୍ଷକ ଶ୍ରୀ ନିର୍ମଳ କୁମାର ମହାପାତ୍ର, ଶ୍ରୀ ବାନାମର ରାଉତ ପ୍ରମୁଖ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ।

ନିମନ୍ତ୍ରିତ ଅତିଥି ଭାବେ ନାରୀନେତ୍ରୀ ଶ୍ରୀମତୀ କମଳା ଦାସ, ବିଶିଷ୍ଟ ଶ୍ରମିକ ନେତା ଶ୍ରୀ ଶାନ୍ତି ଶ୍ରୀଚାର୍ଜି, ଡାକ୍ତର ଅମିତାଭ ରାୟ, ପଶ୍ଚିମବଙ୍ଗ ଉତ୍କଳ ସମାଜର ସାଧାରଣ ସମ୍ପାଦକ ଶ୍ରୀ ନାରାୟଣ ଚନ୍ଦ୍ର ବେହେରା ଯୋଗଦେଇ ମଧୁସୂଦନ ଓ ଗୋପବନ୍ଧୁଙ୍କ ପ୍ରତିଛବିରେ ପୁଷ୍ପମାଲ୍ୟ ଅର୍ପଣ କରି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଇଥିଲେ।

ଏହି ସମାରୋହରେ ଅନୁଷ୍ଠାନର ସଭାପତି ଶ୍ରୀ ରାମଚନ୍ଦ୍ର ବିଶ୍ୱାଳ ଅଧ୍ୟକ୍ଷତା କରିଥିଲେ। ସାଧାରଣ ସମ୍ପାଦକ ଶ୍ରୀ ଅର୍ଜୁନ ଚରଣ ସ୍ୱାଇଁ ସମ୍ପାଦକୀୟ ସୂଚନା ପ୍ରଦାନ କରିଥିଲେ। ଶେଷରେ ଶ୍ରୀ ସତ୍ୟାନନ୍ଦ ବିଶ୍ୱାଳ ଧନ୍ୟବାଦ ଅର୍ପଣ କରିଥିଲେ।

ରାତ୍ରିର ଶେଷ ପ୍ରହର ପର୍ଯ୍ୟନ୍ତ ସାଂସ୍କୃତିକ କାର୍ଯ୍ୟକ୍ରମରେ ଭୂଦେବ ସଙ୍ଗୀତ ତୀର୍ଥ ଏକାଡେମୀ, ବେଲଘରିଆ, ଆଲୋକ ଖାଣ୍ଡଗିରି ଓ ତାଙ୍କ ସମ୍ପ୍ରଦାୟ, ଜାଲିଜିଓନ ମିଉଜିକ୍ ସିପୁଲ୍, ଭୁବନେଶ୍ୱର ଶିଳ୍ପୀମାନେ ଅଂଶ ଗ୍ରହଣ କରିଥିଲେ। ଶିଳ୍ପାଞ୍ଚଳରେ ଅନୁଷ୍ଠିତ ଏହି ଉତ୍ସବରେ ପାଞ୍ଚହଜାରରୁ ଊର୍ଦ୍ଧ୍ୱ ବିଭିନ୍ନ ଭାଷାଭାଷୀ ଲୋକ ଅଂଶ ଗ୍ରହଣ କରିଥିଲେ।

ପଶ୍ଚିମବଙ୍ଗ ଉତ୍କଳ ସମାଜ ତରଫରୁ ରାଜା ସୁବୋଧ ମଲ୍ଲିକସ୍ଥିତ ପଣ୍ଡିତ ଗୋପବନ୍ଧୁ ଓ ନୀଳକଣ୍ଠଙ୍କ ପ୍ରତିମୂର୍ତ୍ତି ନିକଟରେ ଉତ୍କଳ ଦିବସ ମହାସମାରୋହରେ ପାଳିତ ହୋଇଯାଇଛି। ସଭାରେ ଉତ୍କଳ ସମାଜର ସଭାପତି ଡଃ କୃଷ୍ଣଚନ୍ଦ୍ର ଭୂୟାଁ ଅଧ୍ୟକ୍ଷତା କରିଥିଲେ। ବହୁ ଗଣଅନୁଷ୍ଠାନ ପକ୍ଷରୁ ପ୍ରତିମୂର୍ତ୍ତି ଦୁଇଟିରେ ମାଲ୍ୟାର୍ପଣ କରାଯାଇଥିଲା।

ସର୍ବଶ୍ରୀ ନାରାୟଣଚନ୍ଦ୍ର ବେହେରା ବୈଷ୍ଣବ ଚରଣ ଗାହଣ, କୁଞ୍ଜବିହାରୀ ମହାପାତ୍ର, ରମେଶଚନ୍ଦ୍ର ବାରିକ, ରବୀନ୍ଦ୍ର ବାରିକ, ସୁରେଶଚନ୍ଦ୍ର ମହାପାତ୍ର, ଶ୍ୟାମସୁନ୍ଦର ଧଳ ପ୍ରମୁଖ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ । ଶେଷରେ ଗୋଲକବିହାରୀ ଦାସ ଧନ୍ୟବାଦ ଅର୍ପଣ କରିଥିଲେ ।

## ବାଙ୍ଗାଲୋରରେ ଉତ୍କଳ ଦିବସ ଉତ୍ସବ

ରାଜ୍ୟ ବାହାରେ ବାସ କରୁଥିବା ଓଡ଼ିଆମାନଙ୍କୁ ନିଜ ରାଜ୍ୟ ର ସମୃଦ୍ଧି ପାଇଁ ସହଯୋଗ କରିବାକୁ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ଭାଗବତ ବେହେରା ଅନୁରୋଧ ଜଣାଇଛନ୍ତି ।

ଓଡ଼ିଶା ସାଂସ୍କୃତିକ ସମାଜ ପକ୍ଷରୁ ବାଙ୍ଗାଲୋରଠାରେ ଆୟୋଜିତ "ଓଡ଼ିଶା ଦିବସ" ଉତ୍ସବରେ ଭାଷଣ ଦେଇ ଶ୍ରୀ ବେହେରା ଓଡ଼ିଶା କର୍ଣ୍ଣାଟକ ରାଜ୍ୟ ମଧ୍ୟରେ ବହୁକାଳରୁ ରହି ଆସିଥିବା ଭାବଗତ ସାଂସ୍କୃତିକ ସମ୍ପର୍କ ଓ ପରମ୍ପରା ଉପରେ ଆଲୋକପାତ କରିଥିଲେ । ଶ୍ରୀ ବେହେରା ମଧ୍ୟ ପ୍ରବାସୀ ଏହି ଅନୁଷ୍ଠାନ ନିମନ୍ତେ ସ୍ଥାନ ଯୋଗାଇ ଦେବା ପାଇଁ କର୍ଣ୍ଣାଟକ ସରକାରଙ୍କୁ ଅନୁରୋଧ କରିଥିଲେ ।

ଏହି ଉତ୍ସବରେ ଯୋଗ ଦେଇ କର୍ଣ୍ଣାଟକର ମନ୍ତ୍ରୀ ଶ୍ରୀ ଶିବକୁମାର ଓଡ଼ିଶା ସାଂସ୍କୃତିକ ସମାଜର ସ୍ଥାୟୀ କେନ୍ଦ୍ର ନିର୍ମାଣ ନିମନ୍ତେ ସରକାର ସ୍ଥାନ ଯୋଗାଇ ଦେବେ ବୋଲି ପ୍ରକାଶ କରିଥିଲେ । ଶ୍ରୀ ଶିବ କୁମାର ମଧ୍ୟ ବାଙ୍ଗାଲୋରଠାରେ ରହି କାର୍ଯ୍ୟକରୁଥିବା ଓଡ଼ିଆମାନଙ୍କର ବିଭିନ୍ନ କାର୍ଯ୍ୟକଳାପକୁ ପ୍ରଶଂସା କରିଥିଲେ ।

ଅନୁଷ୍ଠାନର ସଭାପତି ଶ୍ରୀ ବିଦ୍ୟୁତ୍ କୁମାର ପ୍ରାମାଣିକ ଅତିଥିମାନଙ୍କୁ ସ୍ୱାଗତ କରାଇ ଓଡ଼ିଶାର ପ୍ରାଚୀନ କଳା, ସଂସ୍କୃତି ଓ ଭାସ୍କର୍ଯ୍ୟର ପରମ୍ପରା ସମ୍ପର୍କରେ ସମ୍ୟକ୍ ସୂଚନା ଦେଇଥିଲେ । ଶ୍ରୀ ପ୍ରାମାଣିକ ମଧ୍ୟ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଉତ୍କଳ ଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଅବିସ୍ମରଣୀୟ ପ୍ରଚେଷ୍ଟା ବିଷୟରେ ଆଲୋକପାତ କରିଥିଲେ ।

ଏହି ଉତ୍ସବରେ ଖ୍ୟାତନାମା ଓଡ଼ିଶୀ ନୃତ୍ୟଶିଳ୍ପୀ ଡଃ ରଜିପାନା ସିଂ ଓ ପ୍ରିୟମ୍ବଦା ରାୟ ଏବଂ କଣ୍ଠଶିଳ୍ପୀ ସୁବାସ ଦାସ ଓ ଗୀତା ଦାସ ପ୍ରମୁଖ ଅଂଶ ଗ୍ରହଣ କରି ସଙ୍ଗୀତ ପରିବେଷଣ କରିଥିଲେ । କୁମାରୀ ଅଳକା ସାହୁ, କୁମାରୀ ଶ୍ରୀସ୍ୱା ମହାନ୍ତି ଏବଂ କନ୍ନଡ଼ ସଙ୍ଗୀତ ପରିବେଷଣ କରିଥିଲେ । ଅନୁଷ୍ଠାନର ସମ୍ପାଦକ ଡଃ ବିଧୁକଲ୍ୟାଣ ମହାନ୍ତି ଶେଷରେ ଧନ୍ୟବାଦ ଦେଇଥିଲେ ।

## ମଣିପୁରରେ ଉତ୍କଳ ଦିବସ

ମଣିପୁରର ରାଜଧାନୀ ଇମ୍ଫାଲଠାରେ ଉତ୍କଳ ଦିବସ ପାଳିତ ହୋଇଥିବାର ଖବର ମିଳିଛି । ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଓ ମଣିପୁର ସରକାରଙ୍କ ସଂସ୍କୃତି ବିଭାଗର ମିଳିତ ଆନୁକୂଲ୍ୟରେ ଆୟୋଜିତ ଏହି ରାଜ୍ୟସ୍ତରୀୟ ଉତ୍ସବରେ ମଣିପୁର ରାଜ୍ୟ କଳା ଏକାଡେମୀର ସମ୍ପାଦକ ଶ୍ରୀ ଏଲ୍. ଦାମୋଦର ସିଂହ ପ୍ରଦୀପ ଜାଳି ଉଦ୍‌ଘାଟନ କରିଥିଲେ । ଜବାହରଲାଲ ମଣିପୁର ଡ୍ୟାନସ୍ ଏକାଡେମୀର ନିର୍ଦ୍ଦେଶକ ଶ୍ରୀ ପ୍ରକାଶ ସିଂହ ମୁଖ୍ୟବକ୍ତା ରୂପେ ଯୋଗ ଦେଇ ଉଭୟ ରାଜ୍ୟ ମଧ୍ୟରେ କଳା ଓ ସଂସ୍କୃତିର ବିନିମୟ ତଥା ଉତ୍କଳ ଦିବସର ତାତ୍ପର୍ଯ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ଉତ୍ସବ ଶେଷରେ ଓଡ଼ିଶା ସରକାରଙ୍କ ଦ୍ୱାରା ମନୋନୀତ ହୋଇ ସେଠାକୁ ଯାଇଥିବା କଣ୍ଠଶିଳ୍ପୀ ଶ୍ରୀ ପ୍ରଦୀପ ଦାସ ଏକକ ଦେଶାତ୍ମବୋଧକ ତଥା ଜଣାଣ ପରିବେଷଣ କରିଥିଲେ । କୁମାରୀ ମୋନାଲି ମିଶ୍ର ଓଡ଼ିଶୀ ନୃତ୍ୟ କାର୍ଯ୍ୟକ୍ରମରେ ମଙ୍ଗଳାଚରଣ, ପଲ୍ଲବୀ, ଅଭିନୟ ଓ ଦଶାବତାର ପରିବେଷଣ କରିଥିଲେ । ତାଙ୍କୁ କଣ୍ଠରେ ପ୍ରଦୀପ ଦାସ ଏବଂ ବିଭିନ୍ନ ବାଦ୍ୟ ଯନ୍ତ୍ରରେ ସର୍ବଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଗୋପୀନାଥ ସ୍ୱାଇଁ ଓ ଭରତ କୁମାର ଗିରି ସହଯୋଗିତା କରିଥିଲେ ।

## ହାଇଦ୍ରାବାଦରେ ଉତ୍କଳ ଦିବସ ପାଳିତ

ଆନ୍ଧ୍ର ପ୍ରଦେଶ ଓ ଓଡ଼ିଶା ର ସମ୍ପର୍କ ବହୁ ପୁରାତନ ହୋଇଥିବାରୁ ଉଭୟ ତେଲୁଗୁ ଓ ଓଡ଼ିଆ ଭାଷାଭାଷୀ ଜନସାଧାରଣଙ୍କ ମଧ୍ୟରେ ଥିବା ଭାବଗତ ସମ୍ପର୍କକୁ ଅଧିକ ସୁଦୃଢ଼ କରିବା ପାଇଁ ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଏନ୍. ଜନାର୍ଦ୍ଦନ ରେଡ୍ଡି ଆଗ୍ରହ ପ୍ରକାଶ କରିଛନ୍ତି ।

ହାଇଦ୍ରାବାଦଠାରେ ଉତ୍କଳ ସାଂସ୍କୃତିକ ପରିଷଦ ଆନୁକୂଲ୍ୟରେ ଗତ ଏପ୍ରିଲ ପହିଲା ଦିନ ଉତ୍କଳ ଦିବସ ପାଳନ ପରିପ୍ରେକ୍ଷୀରେ ଆୟୋଜିତ ଏକ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗଦେଇ ଆନ୍ଧ୍ର ମୁଖ୍ୟମନ୍ତ୍ରୀ ଶ୍ରୀ ଜନାର୍ଦ୍ଦନ ରେଡ୍ଡି ଓଡ଼ିଶାର ଜନସାଧାରଣଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ ଆନ୍ଧ୍ରପ୍ରଦେଶରେ ବସବାସ କରୁଥିବା ପ୍ରବାସୀ ଓଡ଼ିଆମାନଙ୍କ ଅଭାବ ଅସୁବିଧା ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦେବେ ବୋଲି ଘୋଷଣା କରିଥିଲେ । ଉଭୟ ରାଜ୍ୟର ଜନସାଧାରଣ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ସ୍ଥାପନ ଉପରେ ମଧ୍ୟ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ଉତ୍ସବରେ ଓଡ଼ିଶାର ଅବକାରୀ ବିଭାଗ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଆଚାର୍ଯ୍ୟ ସମ୍ମାନିତ ଅତିଥିଭାବେ ଯୋଗ ଦେଇ ବିଗତ ଏକାଦଶ ଶତାବ୍ଦୀରୁ ଓଡ଼ିଆ ଓ ତେଲୁଗୁ ଭାଷୀଙ୍କ ମଧ୍ୟରେ ରହି ଆସିଥିବା ସାଂସ୍କୃତିକ ରାଜନୈତିକ ଓ ଅର୍ଥନୈତିକ ସମ୍ପର୍କ ଉଲ୍ଲେଖ କରି ଉଭୟ ଭାଷା ଲୋକେ ବିଭିନ୍ନ କ୍ଷେତ୍ରରେ ପରସ୍ପରକୁ ସବୁ ସମୟରେ ପ୍ରଭାବିତ କରି ଆସିଛନ୍ତି । ବର୍ତ୍ତମାନର ଆନ୍ଧ୍ରପ୍ରଦେଶର ବହୁ ଅଞ୍ଚଳ ପୁରାତନ କଳିଙ୍ଗ ସାମ୍ରାଜ୍ୟର ଅଂଶବିଶେଷ ଥିବାର ଉଲ୍ଲେଖ କରି ଓଡ଼ିଆ ଜାତିର ଗର୍ବ ଓ ସ୍ୱାଭିମାନକୁ ଅକ୍ଷୁଣ୍ଣ କରିବା ଲାଗି ପ୍ରବାସୀ ଓଡ଼ିଆମାନଙ୍କର ଏକ ବିଶେଷ ଭୂମିକା ରହିଛି ବୋଲି ଶ୍ରୀ ଆଚାର୍ଯ୍ୟ କହିଥିଲେ ।

ଏହି ଉତ୍ସବରେ ଓଡ଼ିଶାର ପ୍ରତିଷ୍ଠିତ ନୃତ୍ୟଗୁରୁ ପଦ୍ମଶ୍ରୀ କେଳୁଚରଣ ମହାପାତ୍ରଙ୍କୁ ସମ୍ମାନିତ କରାଯାଇଥିଲା । ଅତିଥିମାନଙ୍କ ମଧ୍ୟରେ ପରିଷଦର ସଭାପତି ଶ୍ରୀ ମୋହନ ଚରଣ ମହାପାତ୍ର, ସମ୍ପାଦକ ବଳଭଦ୍ର ରଥ ଓ ଅନ୍ୟ କର୍ମକର୍ତ୍ତାମାନେ ଉପସ୍ଥିତ ରହିଥିଲେ । ଓଡ଼ିଶୀ ଗବେଷଣା କେନ୍ଦ୍ର, ଭୁବନେଶ୍ୱର ପକ୍ଷରୁ ଶ୍ରୀମତୀ କୁମକୁମ ମହାନ୍ତି ଓ ଅନ୍ୟ କଳାକାରମାନେ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ ।

ଅନ୍ୟ ଏକ ଉତ୍ସବରେ ଆନ୍ଧ୍ର ସରକାରଙ୍କ ପକ୍ଷରୁ ଯୋଗାଇ ଦିଆଯାଇଥିବା ଏକ ଏକର ପରିମିତ ଜମିରେ ପରିଷଦ ପକ୍ଷରୁ ନିର୍ମିତ ହେବାକୁ ଥିବା କଳିଙ୍ଗ କଲଚରାଲ୍ ସେଣ୍ଟରର ଶିଳାନ୍ୟାସ ମୁଖ୍ୟମନ୍ତ୍ରୀ ଶ୍ରୀ ରେଡ୍ଡିଙ୍କ ଦ୍ୱାରା ସଂପନ୍ନ ହୋଇଥିଲା । ଓଡ଼ିଶାର ଅବକାରୀ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଅଶ୍ୱର୍ଯ୍ୟ ମୁଖ୍ୟ ଅତିଥିଭାବେ ଯୋଗ ଦେଇଥିଲେ ।

ଶ୍ରୀ ଆଶ୍ୱର୍ଯ୍ୟଙ୍କର ଆନ୍ଧ୍ରପ୍ରଦେଶର ମୁଖ୍ୟମନ୍ତ୍ରୀ ଶ୍ରୀ ଏନ୍: ଜନାର୍ଦ୍ଦନ ରେଡ୍ଡିଙ୍କ ସହିତ ସାକ୍ଷାତ ଆଲୋଚନାବେଳେ ଆନ୍ଧ୍ରପ୍ରଦେଶରେ ବସବାସ କରୁଥିବା ଓଡ଼ିଶା ଭାଷାଭାଷୀଙ୍କ ବିଭିନ୍ନ ସମସ୍ୟା ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ।

ଏହି ଆଲୋଚନାବେଳେ ପ୍ରବାସୀ ଓଡ଼ିଆ ଓ ତାଙ୍କ ରାଜ୍ୟରେ ବସବାସ କରୁଥିବା ଓଡ଼ିଆମାନଙ୍କ ସମସ୍ୟାର ସମାଧାନ ଲାଗି ସେ ଯଥାସମ୍ଭବ ଉଦ୍ୟମ କରିବେ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ରେଡ୍ଡି ଶ୍ରୀ ଆଶ୍ୱର୍ଯ୍ୟଙ୍କୁ ପ୍ରତିଶ୍ରୁତି ଦେଇଥିଲେ ।

ଏହି ଆଲୋଚନାବେଳେ ଆନ୍ଧ୍ରପ୍ରଦେଶ ଅବକାରୀ ବିଭାଗର ପ୍ରତ୍ୟକ୍ଷ ଦାୟିତ୍ୱରେ ରହିଥିବା ମୁଖ୍ୟମନ୍ତ୍ରୀ ଶ୍ରୀ ରେଡ୍ଡିଙ୍କ ସହ ଶ୍ରୀ ଅଶ୍ୱର୍ଯ୍ୟ ଓଡ଼ିଶା ସୀମାରେ ହେଉଥିବା ଅବକାରୀ ଚୋରା କାରବାରକୁ ରୋକିବା ଦିଗରେ ବିସ୍ତୃତ ଆଲୋଚନା କରିଥିଲେ । ମୁଖ୍ୟମନ୍ତ୍ରୀଙ୍କ ବାସଭବନରେ ଏହି ସାକ୍ଷାତ ଆଲୋଚନା ହୋଇଥିଲା ।

## ଅରୁଣାଚଳ ପ୍ରଦେଶରେ ଉତ୍କଳ ଦିବସ ପାଳନ

ଉତ୍ତର ପୂର୍ବ ରାଜ୍ୟ ଅରୁଣାଚଳ ପ୍ରଦେଶର ରାଜଧାନୀ ଇଟାନଗରଠାରେ ଅପ୍ରେଲ ପହିଲା ଦିନ ଉତ୍କଳ ଦିବସ ମହାସମାରୋହରେ ପାଳିତ ହୋଇଯାଇଛି । ରାଜଭବନ ପରିସର ମଧ୍ୟରେ ଅନୁଷ୍ଠିତ ଏହି ଉତ୍ସବରେ ଅରୁଣାଚଳ ପ୍ରଦେଶରେ ବସବାସ କରୁଥିବା ବହୁ ଓଡ଼ିଆ ପରିବାର ଯୋଗ ଦେଇଥିଲେ ।

ଏହି ଉପଲକ୍ଷେ ଉତ୍କଳର କଳା ଓ ହସ୍ତ ଶିଳ୍ପ ସମ୍ପର୍କୀୟ ଏକ ପ୍ରଦର୍ଶନୀ ଅରୁଣାଚଳ ପ୍ରଦେଶର ଅର୍ଥ ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ଶ୍ରୀ ଡୋବାବ ବସାର ଉଦ୍‌ଘାଟନ କରିଥିଲେ ।ଏହି ପ୍ରଦର୍ଶନୀରେ କାଷ୍ଠ ନିର୍ମିତ ଓ ଚିତ୍ରିତ ଶ୍ରୀ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କର ମୂର୍ତ୍ତି, ପୁରୀ ରଘୁରାଜପୁରରେ ନିର୍ମିତ କାଠ ଖୋଦେଇ ଶ୍ରୀକୃଷ୍ଣ ମୂର୍ତ୍ତି, ବିଭିନ୍ନ ପଟ୍ଟଚିତ୍ର, ଲାକ୍ଷ ମଣ୍ଡିତ ରଙ୍ଗୀନ ପେଡ଼ି, ଦଶାବତାର ଚିତ୍ର, ଗଞ୍ଜପା, କଟକର ପ୍ରସିଦ୍ଧ ତାରକସୀ କାମ, ଢେଙ୍କାନାଳର ଧୋକରା ପିତଳ କାମ, ପିପିଲିର ଚାନ୍ଦୁଆ, ସମ୍ବଲପୁରୀ ଶାଢ଼ୀ, ସଉରା ଚିତ୍ରକଳା ପ୍ରଭୃତି କଳାକୃତି ଓ ହସ୍ତଶିଳ୍ପ ପ୍ରଦର୍ଶିତ ହୋଇଥିଲା । ଏହା ବ୍ୟତୀତ ଐତିହାସିକ କଳିଙ୍ଗ ସମର, ବୋଇତ ବନ୍ଦାଣ, କୋଣାର୍କ ମନ୍ଦିର ପୃଷ୍ଠଭୂମିରେ ଓଡ଼ିଶୀ ନୃତ୍ୟ, ରଥ ଯାତ୍ରା ପ୍ରଭୃତିର ଚିତ୍ରପଟ୍ଟ ତଥା ବ୍ୟାସକବି ଫକୀରମୋହନ, ସ୍ୱଭାବ କବି ଗଙ୍ଗାଧର, ଜ୍ୟୋତିଷଜ୍ଞ ପଠାଣୀ ସାମନ୍ତ ପ୍ରମୁଖଙ୍କର ତୈଳଚିତ୍ର ମଧ୍ୟ ଏଥିରେ ପ୍ରଦର୍ଶିତ ହୋଇଥିଲା । ଏହି ସବୁ କଳାକୃତି ଇଟାନଗର ମିଉଜିୟମ୍‌ର ଓଡ଼ିଶା କଳା ଓ ସ୍ଥାପତ୍ୟ ବିଭାଗରେ ରଖିବା ନିମନ୍ତେ ରାଜ୍ୟପାଳ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ପରାମର୍ଶ ଦେଇଛନ୍ତି ।

ଓଡ଼ିଶା ସରକାରଙ୍କର ସଂସ୍କୃତି ବିଭାଗ ପକ୍ଷରୁ ଉତ୍କଳ ଦିବସ ପାଳନ ଉପଲକ୍ଷେ ଇଟାନଗର ଯାଇଥିବା ସାଂସ୍କୃତିକ ଦଳ ଚିତ୍ତାକର୍ଷକ ନୃତ୍ୟ ଓ ଗୀତ ପରିବେଷଣ କରିଥିଲେ । ଗୁରୁ ଶ୍ରୀ ଦୁର୍ଗାଚରଣ ରଣବୀରଙ୍କର ନିର୍ଦ୍ଦେଶନାରେ ଆହୁତୀ ବରାଳ, ସସ୍ମିତା ଷଡ଼ଙ୍ଗୀ ନୟନ୍, ଶ୍ରୀମତୀ ପୁଷ୍ପାଞ୍ଜଳି ନାୟକ, ପ୍ରତିଭା ସାହୁ ଓ ନମିତା ରାଓ ଓଡ଼ିଶୀ ନୃତ୍ୟ ପରିବେଷଣ କରିଥିଲେ । ସମ୍ବଲପୁରର ଚଢ଼େୟା, ଗଞ୍ଜାମର ଦଣ୍ଡନାଚ ପ୍ରଭୃତି ଲୋକନୃତ୍ୟ ବେଶ୍ ଆକର୍ଷଣୀୟ ହୋଇଥିଲା । ବିଶିଷ୍ଟ କଣ୍ଠଶିଳ୍ପୀ ଶ୍ରୀ ପ୍ରଫୁଲ୍ଲ କର ଓ ଶ୍ରୀ ମହାପ୍ରସାଦ କର ଦେଶାସବୋଧ ଗୀତ ଓ ଶ୍ରୀ ଜୟଦେବଙ୍କର ଅଷ୍ଟପଦୀ ଗାନ କରିଥିଲେ ଓ ଶ୍ରୀ ଜ୍ୟୋତୀନ୍ଦ୍ର ପ୍ରସାଦ ମିଶ୍ର ସୀତାର ବାଦନ କରିଥିଲେ ।

ଅରୁଣାଚଳ ପ୍ରଦେଶର ଅନେକ ମନ୍ତ୍ରୀ ପଦସ୍ଥ ପଦାଧିକାରୀ ତଥା ବହୁ ବିଶିଷ୍ଟ ବ୍ୟକ୍ତି ଏହି ଉତ୍ସବରେ ଯୋଗ ଦେଇ ଓଡ଼ିଶାର କଳା, ସ୍ଥାପତ୍ୟ, ହସ୍ତଶିଳ୍ପ ତଥା ସଙ୍ଗୀତ ଓ ନୃତ୍ୟ ପ୍ରଭୃତିର ଉତ୍କର୍ଷତାର ଭୂୟସୀ ପ୍ରଶଂସା କରିଥିଲେ ।

ଅରୁଣାଚଳ ପ୍ରଦେଶର ରାଜ୍ୟପାଳ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ଓ ପ୍ରୋତ୍ସାହନ ଫଳରେ ଉତ୍କଳ ଦିବସ ପ୍ରଦର୍ଶନୀ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ବିପୁଳ ସାଫଲ୍ୟ ସହ ପାଳିତ ହୋଇଥିଲା । ଶ୍ରୀ ଦ୍ୱିବେଦୀ ତାଙ୍କର ସଂକ୍ଷିପ୍ତ ଭାଷଣରେ ଏପରି ଉତ୍ସବ ଭାରତବର୍ଷର ଅନ୍ୟ ରାଜ୍ୟର କଳା ଓ ସଂସ୍କୃତି ସହ ଅରୁଣାଚଳ ପ୍ରଦେଶର ସାଂସ୍କୃତିକ ସମ୍ପର୍କ ଅଭିବୃଦ୍ଧି ଦିଗରେ ସହାୟକ ହେବ ବୋଲି ମତ ଦେଇଥିଲେ, ରାଜ୍ୟପାଳ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିଥିବା କଳାକାରମାନଙ୍କ ମଧ୍ୟରୁ ଦୁଇଜଣ ଦଣ୍ଡନୃତ୍ୟ ଶିଳ୍ପୀଙ୍କୁ ଏକ ହଜାର ଟଙ୍କା ଓ ଅନ୍ୟମାନଙ୍କୁ ପାଞ୍ଚହଜାର ଟଙ୍କା ଆର୍ଥିକ ଅନୁଦାନ ପ୍ରଦାନ କରିଥିଲେ ।

ଅରୁଣାଚଳ ପ୍ରଦେଶରେ ବସବାସ କରୁଥିବା ଓଡ଼ିଆମାନେ ଏହି ଉପଲକ୍ଷେ ନବ ଗଠିତ ଉତ୍କଳ ସାଂସ୍କୃତିକ ସଙ୍ଘ ନିମନ୍ତେ କର୍ମକର୍ତ୍ତା ନିର୍ବାଚନ କରିଥିଲେ ।

# ରାଜ୍ୟପାଳ କଳାହାଣ୍ଡି ଜିଲ୍ଲାରେ ୫୦ ଶଯ୍ୟା ବିଶିଷ୍ଟ ଆୟୁର୍ବେଦିକ ହସ୍‌ପିଟାଲ୍‌ର ଶିଳାନ୍ୟାସ କଲେ

ଗୁରୁକୁଳ ଆଶ୍ରମର ଅନ୍ତେବାସୀଗଣ ଶିକ୍ଷା ସମାପ୍ତି ପରେ କୁସଂସ୍କାର ଓ ନିରକ୍ଷରତାର ତିମିରାଚ୍ଛନ୍ନ କଳାହାଣ୍ଡି ଜିଲ୍ଲାରେ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ଦାନ କରି ଜାଗରଣର ଆଲୋକରେ ଉଦ୍ଭାସିତ କରିବା ପାଇଁ ଆଗେଇ ଆସନ୍ତୁ ବୋଲି ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଆହ୍ୱାନ ଦେଇଛନ୍ତି ।

ରାଜ୍ୟପାଳ ଶ୍ରୀ ଶର୍ମା ତାଙ୍କର ଦୁଇଦିନିଆ କଳାହାଣ୍ଡି ଜିଲ୍ଲା ଗସ୍ତରେ ଅପ୍ରେଲ ୧୦ ତାରିଖ ପୂର୍ବାହ୍ନରେ ଗୋଦ୍‌ମା ଉଡ଼ାଜାହାଜ ପଡ଼ିଆରେ ରାଜ୍ୟ ସରକାରଙ୍କ ବିମାନରେ ଆସି ଅବତରଣ କରିଥିଲେ । ସେଠାରୁ ଖଡ଼ିଆଳ ରୋଡ୍ ନିକଟସ୍ଥ ଆମ୍‌ସେନା ଗ୍ରାମକୁ ଆସି ଗୁରୁକୁଳ ଆଶ୍ରମ ଦ୍ୱାରା ୫ ଲକ୍ଷ ୪୦ ହଜାର ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଯାଉଥିବା ଏକ ୫୦ ଶଯ୍ୟା ବିଶିଷ୍ଟ ଆୟୁର୍ବେଦିକ ହସ୍‌ପିଟାଲ୍‌ର ଶିଳାନ୍ୟାସ କରିଥିଲେ ଓ ଗୁରୁକୁଳ ଆଶ୍ରମର ୨୬ତମ ବାର୍ଷିକୀ ପାଳନ ଉପଲକ୍ଷେ ଆୟୋଜିତ ଏକ ବଡ଼ ଧରଣର ଜନସମାବେଶକୁ ଉଦ୍‌ବୋଧନ ଦେଇଥିଲେ ।

ଆୟୁର୍ବେଦିକ ଚିକିତ୍ସା ନିମନ୍ତେ ଏ ଅଞ୍ଚଳରେ ପ୍ରଚୁର ଭାବେ ମିଳୁଥିବା ଔଷଧ ଗୁଣଯୁକ୍ତ ଗୁଳ୍ମଲତାଦିର ଯଥାର୍ଥ ବିନିଯୋଗ ଏହାଦ୍ୱାରା ସମ୍ଭବପର ହୋଇପାରିବ ଓ ସ୍ୱାସ୍ଥ୍ୟ ସେବାକୁ ଅଧିକ ଗ୍ରାମାଭିମୁଖୀ କରିବାରେ ସହାୟକ ହେବ ବୋଲି ସେ ଆଶା ପୋଷଣ କରିଥିଲେ । ପ୍ରାୟ ୨୧ ଏକର ଜମି ଉପରେ ଗଢ଼ିଉଠିଥିବା ଏହି ଗୁରୁକୁଳ ଆଶ୍ରମ ଓ କନ୍ୟା ଗୁରୁକୁଳର କଳ୍ପନା ବାସ୍ତବିକ୍ ପ୍ରଶଂସନୀୟ ବୋଲି ସେ ବର୍ଣ୍ଣନା କରି ଏହି ସତ୍‌ପ୍ରୟାସକୁ ନିରବଚ୍ଛିନ୍ନ ଭାବେ ଆଗେଇ ନେବାକୁ ଶ୍ରୀ ଶର୍ମା ପରାମର୍ଶ ଦେଇଥିଲେ ।

କଳାହାଣ୍ଡି ଜିଲ୍ଲା ଏକ ଦୁର୍ଭିକ୍ଷଛାୟା ଅଞ୍ଚଳ ହୋଇଥିବାରୁ ଏ ଅଞ୍ଚଳରେ ବାସ କରିଥିବା ଜନସାଧାରଣଙ୍କ ଅବସ୍ଥା ସହ ସେ ଅବଗତ ଅଛନ୍ତି ବୋଲି ପ୍ରକାଶ କରି କହିଥିଲେ ଯେ ଗତ ବହୁବର୍ଷ ଧରି ବିଭିନ୍ନ ଜନକଲ୍ୟାଣ ଓ ଉନ୍ନତିମୂଳକ ଯୋଜନା ରାଜ୍ୟ ସରକାରଙ୍କ ତରଫରୁ ପରିଚାଳିତ ହେଉଛି । ଏବେ ପ୍ରାୟ ଏକ ହଜାରରୁ ଊର୍ଦ୍ଧ୍ୱ ସାଧାରଣ ଅତ୍ୟାବଶ୍ୟକ ଦ୍ରବ୍ୟର ବଣ୍ଟନ କେନ୍ଦ୍ର ଖୋଲାଯାଇଥିବା ସହ ଦୁଇଟି ଭ୍ରାମ୍ୟମାଣ ୟୁନିଟ୍ ଦ୍ୱାରା ଦୂରଦୂରାନ୍ତରେ ଥିବା ଗ୍ରାମାଞ୍ଚଳରେ ଅତ୍ୟାବଶ୍ୟକ ଦ୍ରବ୍ୟ ପହଞ୍ଚାଇ ଦେବାର ବ୍ୟବସ୍ଥା କରାଯାଇଛି । କିନ୍ତୁ ସମ୍ପୂର୍ଣ୍ଣ ଦେଶରେ ଆଜି ମଧ୍ୟ ଦାରିଦ୍ର୍ୟ ତୀବ୍ର ଭାବରେ ଅନୁଭୂତ ହେଉଛି ଓ ବିଶେଷ କରି ଦାରିଦ୍ର୍ୟର ସୀମାରେଖା ତଳେ ରହିଥିବା ଜନସାଧାରଣଙ୍କ ପାଖରେ ଏହାର ପ୍ରକୋପ ଅତି ତୀବ୍ର । ସାଧାରଣ ଲୋକଙ୍କ ପାଖରେ ଯୋଜନାର ସୁଫଳ ସଠିକ୍ ଭାବେ ପହଞ୍ଚି ପାରିନାହିଁ ବୋଲି ମତବ୍ୟକ୍ତ କରି ରାଜ୍ୟପାଳ କହିଲେଯେ, ବହୁ ବିଦେଶୀ ଶକ୍ତିର ବାରମ୍ବାର ଆକ୍ରମଣ ଫଳରେ ଖଣ୍ଡବିଖଣ୍ଡିତ ଓ ଏହାର ଅର୍ଥନୀତି ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଥିବା ଯୋଗୁଁ ଦେଶର ପୁନର୍ଗଠନ ଓ ପ୍ରଗତି ସାଧନ ସମୟ ସାପେକ୍ଷ ହେଲେ ମଧ୍ୟ ପ୍ରଗତିର ଧାରା ପ୍ରବାହିତ ହେଉଥିବାରୁ ଦେଶର ଭବିଷ୍ୟତ ଉଜ୍ଜ୍ୱଳ ବୋଲି ଶ୍ରୀ ଶର୍ମା ପ୍ରକାଶ କରିଥିଲେ । ଆଶ୍ରମର ଅନ୍ତେବାସୀମାନେ ଏହି ଅଞ୍ଚଳକୁ ସମୃଦ୍ଧ କରିବାରେ ସେମାନଙ୍କର ନିଃସ୍ୱାର୍ଥପର ସେବାଦାନ କରନ୍ତୁ ବୋଲି ରାଜ୍ୟପାଳ ମଧ୍ୟ ନିବେଦନ କରିଥିଲେ ।

ପୂର୍ବରୁ ରାଜ୍ୟପାଳ ଖଡ଼ିଆଳ ରୋଡ୍‌ଠାରେ ନିୟନ୍ତ୍ରିତ ବଜାର କମିଟି (R. M. C.) ତରଫରୁ ନିର୍ମିତ ହେବାକୁ ଯାଉଥିବା ୩ ଲକ୍ଷ ଟଙ୍କା ବ୍ୟୟର ଏକ ୱେବ୍ରିଜ୍‌ର ଶିଳାନ୍ୟାସ କରିଥିଲେ ଏବଂ ପଣ୍ଡାପଲ୍ଲୀ ଆଦିବାସୀ ଅଞ୍ଚଳରେ ୫୧ଟି ଗୃହ ବିଶିଷ୍ଟ ଗୋଷ୍ଠୀ ଆବାସ କଲୋନୀକୁ ଉଦ୍‌ଘାଟନ କରିଥିଲେ ।

ଖଡ଼ିଆଳଠାରେ ମାରୱାଡ଼ୀ ମହିଳା ମଣ୍ଡଳର ସଭ୍ୟାମାନେ ରାଜ୍ୟପାଳଙ୍କୁ ସାକ୍ଷାତ କରିଥିଲେ ଓ ଏକହଜାର ଟଙ୍କାର ଗୋଟିଏ ଚେକ୍ କସ୍ତୁରବା ବାଳାଶ୍ରମରେ ବାସ କରୁଥିବା ୨୫ ଜଣ ଅନାଥ ଶିଶୁଙ୍କର ରକ୍ଷଣାବେକ୍ଷଣ ନିମନ୍ତେ ପ୍ରଦାନ କରିଥିଲେ ।

ରାଜ୍ୟପାଳଙ୍କ ସହିତ କଳାହାଣ୍ଡି ଗସ୍ତରେ ଆସିଥିବା ଶାସନ ସଚିବ ଶ୍ରୀ ଭାସ୍କର ଚାଟାର୍ଜୀ, ଆଇ: ଏ: ଏସ୍: ଓ ରେଡ୍‌କ୍ରସ୍ ରାଜ୍ୟଶାଖା ସଚିବ ଡକ୍ଟର ଶ୍ରୀମତୀ ରାନୁ ମିଶ୍ର ବିଭିନ୍ନ କାର୍ଯ୍ୟକ୍ରମରେ ଉପସ୍ଥିତ ରହିଥିଲେ । ଶ୍ରୀମତୀ ରାନୁ ମିଶ୍ର ଭବାନୀପାଟଣାଠାରେ ଥିବା ଅନ୍ଧ, ମୂକ ଓ ବଧିର ସ୍କୁଲ ପରିଦର୍ଶନ କରିଥିଲେ ଓ ଅନ୍ତେବାସୀମାନଙ୍କୁ ଖାଦ୍ୟ ପୁଡ଼ିଆ ବଣ୍ଟନ କରିଥିଲେ ।

# ରାଜ୍ୟପାଳଙ୍କ କଳାହାଣ୍ଡି ଜିଲ୍ଲାରେ ଦୁଇଦିନିଆ ଗସ୍ତ

ବିଂଶ ଶତାବ୍ଦୀ ଚେତନାର ଶତାବ୍ଦୀ ହୋଇଥିବାରୁ ଓ ଆମ୍ଭେମାନେ ଏହି ଶତାବ୍ଦୀର ଶେଷ ଦଶକରେ ପଦାର୍ପଣ କରିଥିବାରୁ କଳାହାଣ୍ଡି ଜିଲ୍ଲାକୁ ଏହି ସମୟ ମଧ୍ୟରେ ସମ୍ପୂର୍ଣ୍ଣ ସାକ୍ଷର କରାଇ ନପାରିଲେ ଆସନ୍ତାକାଲିର ସମାଜ କାହାରିକୁ କ୍ଷମା ଦେବନାହିଁ ବୋଲି ମାନ୍ୟବର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗତକାଲି ଭବାନୀପାଟଣାଠାରେ ମତ ପ୍ରକାଶ କରିଛନ୍ତି ।

ଗତକାଲି ରାଜ୍ୟପାଳ ଶ୍ରୀ ଶର୍ମା କଳାହାଣ୍ଡି ଜିଲ୍ଲା ସାକ୍ଷରତା ସମିତି ଆନୁକୂଲ୍ୟରେ ଆୟୋଜିତ ସାକ୍ଷରତା ଯୁବ ସମାବେଶକୁ ଉଦ୍‌ଘାଟନ କରି ଏକ ବିରାଟ ଜନ ସମାବେଶକୁ ଉଦ୍‌ବୋଧନ ଦେଇଥିଲେ ।

କଳାହାଣ୍ଡି ଜିଲ୍ଲାରେ ସାକ୍ଷରତା ହାର ଅନ୍ୟାନ୍ୟ ଜିଲ୍ଲା ତୁଳନାରେ ବହୁତ କମ୍ ଥିବାବେଳେ ନାରୀ ଶିକ୍ଷାର ହାର ଅତି ନିମ୍ନରେ ରହିଛି ବୋଲି ମତ ପ୍ରକାଶ କରି ଗ୍ରାମାଞ୍ଚଳକୁ ଯାଇ ପ୍ରତ୍ୟେକ ନିରକ୍ଷର ବ୍ୟକ୍ତିଙ୍କୁ ସାକ୍ଷର କରିବାର ଯେପରି କୌଣସି ଅବହେଳା ନହୁଏ ସେଥିପ୍ରତି ସତର୍କ ରହିବାକୁ ପରାମର୍ଶ ଦେଇଥିଲେ । ଉଚ୍ଚଜାତି ଶ୍ରୀ ଶର୍ମା ... କଳ ମାଧ୍ୟମରେ ସମ୍ପୂର୍ଣ୍ଣ ସାକ୍ଷରତା କାର୍ଯ୍ୟକାରୀ କରିବା ଅତ୍ୟନ୍ତ ସମୟ ସାପେକ୍ଷ ହୋଇଥିବାରୁ, ଏହାକୁ ଏକ ଜନ ଆନ୍ଦୋଳନରେ

ବିଶେଷ କରି ଗ୍ରାମାଞ୍ଚଳରେ ରହୁଥିବା ଜନସାଧାରଣ, ବିଶେଷ କରି ଆଦିବାସୀ, ହରିଜନ ଓ ଅନୁସୂଚିତ ତଥା ଅନଗ୍ରସର ଶ୍ରେଣୀର ନିରକ୍ଷର ଲୋକଙ୍କୁ ଶିକ୍ଷାଦାନ କରିବାରେ ଜିଲ୍ଲାର ସମସ୍ତ ପ୍ରତିନିଧି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଓ ସାଧାରଣ ଲୋକଙ୍କ ସମ୍ପୂର୍ଣ୍ଣ ସହଯୋଗ, ସାମର୍ଥ୍ୟ ଓ ସତ୍‌ପ୍ରୟାସ ଏକାନ୍ତ ପ୍ରୟୋଜନ ବୋଲି ଶ୍ରୀ ଶର୍ମା କହିଥିଲେ ।

ରାଜ୍ୟସଭା ସଦସ୍ୟ ଶ୍ରୀ ମନମୋହନ ମାଥୁର ଓ ଶ୍ରୀ ବସନ୍ତ ... ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନର୍, ଶ୍ରୀ ଜେ: ଏନ୍: ପୋଦାର, ... ଶ୍ରୀ ଟାଲଭାଇ ଏବଂ ଜିଲ୍ଲା ସାକ୍ଷରତା ସମିତିର ଉପାଧ୍ୟକ୍ଷ ଶ୍ରୀ ଗଗନ ଧଳ ଏହି ସମାବେଶରେ ଯୁବଗୋଷ୍ଠୀଙ୍କୁ ଉଦ୍‌ବୋଧନ ଦେଇ ବର୍ଷକ ପରେ ଏହି ଆନ୍ଦୋଳନର ସଫଳତା ସମୀକ୍ଷା ହେଲେ କାହାକୁ ନିରାଶ ହେବାକୁ ପଡ଼ିବ ନାହିଁ ବୋଲି ଆଶ୍ୱାସନା ଦେଇଥିଲେ ।

## ରେଡ୍‌କ୍ରସ ଭବନ ଉଦ୍‌ଘାଟନ

ପୂର୍ବରୁ ରାଜ୍ୟପାଳ ଆନୁଷ୍ଠାନିକ୍ ଭାବେ ଭବାନୀପାଟଣାଠାରେ ୩ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ରେଡ୍‌କ୍ରସ ଭବନ ଏବଂ ଦେଢ଼ ଲକ୍ଷ ଟଙ୍କା ବ୍ୟୟରେ ନିର୍ମିତ ସଞ୍ଜୟ ମାତୃମଙ୍ଗଳ ୱାର୍ଡ ଉଦ୍‌ଘାଟନ କରିଥିଲେ । ଏହି ଅବସରରେ ଆୟୋଜିତ ଏକ ଉଦ୍‌ଘାଟନୀ ଉତ୍ସବରେ କଳାହାଣ୍ଡି ଜିଲ୍ଲାରେ ରେଡ୍‌କ୍ରସ କାର୍ଯ୍ୟକ୍ରମ ସନ୍ତୋଷଜନକ ଭାବେ ପରିଚାଳିତ ହୋଇଥିବା ସ୍ୱାଗତ ଯୋଗ୍ୟ ବୋଲି ଶ୍ରୀ ଶର୍ମା ପ୍ରକାଶ କରିଥିଲେ ଓ ଜିଲ୍ଲା ପ୍ରଶାସନର ନିଷ୍ଠାପର ପ୍ରୟାସ ଓ ଜନସାଧାରଣଙ୍କ ଅକୁଣ୍ଠ ସହଯୋଗ ପାଇଁ ସାଧୁବାଦ ଜ୍ଞାପନ କରିଥିଲେ । ଏହା ଉଲ୍ଲେଖଯୋଗ୍ୟ ଯେ ବର୍ତ୍ତମାନର ରାଜ୍ୟପାଳ ଶ୍ରୀ ଶର୍ମା ୧୯୯୦ ନଭେମ୍ବର ମାସ ୨୮ ତାରିଖ ଦିନ ଏହି ସଞ୍ଜୟ ମାତୃମଙ୍ଗଳ ୱାର୍ଡ଼ର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ।

ପୂର୍ବାହ୍ନରେ ରାଜ୍ୟପାଳ ଭବାନୀପାଟଣାଠାରେ ଗୋଟିଏ ବହୁମୁଖୀ ଗୋଷ୍ଠୀ କେନ୍ଦ୍ର ଗ୍ରାମାଞ୍ଚଳରେ ବାସ କରୁଥିବା ନାରୀ ଓ ଶିଶୁ ମଙ୍ଗଳ ନିମନ୍ତେ ଉଦ୍‌ଘାଟନ କରିଥିଲେ । ଏହି କେନ୍ଦ୍ର ନିର୍ମାଣ ପାଇଁ ୩ ଲକ୍ଷ ୭୨ ହଜାର ଟଙ୍କା ଖର୍ଚ୍ଚ କରାଯାଇଛି ।

କଳାହାଣ୍ଡି ଜିଲ୍ଲା ଗସ୍ତ ସମାପ୍ତ କରି ଭୁବନେଶ୍ୱର ଫେରିବା ପୂର୍ବରୁ ରାଜ୍ୟପାଳ ଶ୍ରୀ ଶର୍ମା ଜିଲ୍ଲାର ସାମ୍ବାଦିକମାନଙ୍କ ସହିତ ଏବଂ ଲୋକ ପ୍ରତିନିଧିମାନଙ୍କ ସହ କଳାହାଣ୍ଡିରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ ଯୋଜନା ସମ୍ବନ୍ଧରେ ଓ ସାମ୍ପ୍ରତିକ କଳାହାଣ୍ଡି ଜିଲ୍ଲା ଲୋକମାନଙ୍କ ଅଭାବ ଅସୁବିଧା ସମ୍ବନ୍ଧରେ ଆଲୋଚନା କରିଥିଲେ ଓ ସେମାନଙ୍କ ଦ୍ୱାରା ଦିଆଯାଇଥିବା ପ୍ରସ୍ତାବଗୁଡ଼ିକ ପ୍ରତି ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବେ ବୋଲି କହିଥିଲେ ।

ପୂର୍ବଦିନ ପୂର୍ବାହ୍ନରେ ରାଜ୍ୟପାଳ ନୂଆପଡ଼ା ସବ୍‌ଡିଭିଜନ୍‌ର କୋମ୍ନା ଉଡ଼ାଜାହାଜ ପଡ଼ିଆରେ ଅବତରଣ କଲାପରେ ନୂଆପଡ଼ାର ବୁଢ଼ିଛାପ୍ପା ଅଞ୍ଚଳରେ କାର୍ଯ୍ୟକାରୀ ହେଉଥିବା ଯୋଜନାଗୁଡ଼ିକ ପରିଦର୍ଶନ କରିଥିଲେ ।

## ମହିଳା ବିକାଶ ନିଗମର ପ୍ରତିଷ୍ଠା ଦିବସ

ମହିଳା ବିକାଶ ସମବାୟ ନିଗମର ଏକବର୍ଷ ପୂର୍ତ୍ତି ଉପଲକ୍ଷେ ନିଗମର ପ୍ରଥମ ବାର୍ଷିକୀ ପ୍ରତିଷ୍ଠା ଉତ୍ସବ ଗତ ୫ ତାରିଖରେ ବିଭିନ୍ନ କାର୍ଯ୍ୟକ୍ରମ ସହ ପାଳିତ ହୋଇଯାଇଛି । ଏହି ଉପଲକ୍ଷେ ସେଦିନ ସନ୍ଧ୍ୟାରେ ମହିଳା ପଲିଟେକ୍‌ନିକ୍‌ଠାରେ ଅନୁଷ୍ଠିତ ଏକ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ପଞ୍ଚାୟତିରାଜ ମନ୍ତ୍ରୀ ଡାଃ ଦାମୋଦର ରାଉତ ଓ ଶିଳ୍ପ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯାଦବ ମାଝୀ ଯୋଗ ଦେଇ ମହିଳା ଶିଳ୍ପୋଦ୍ୟୋଗୀ ଓ ବୈଷୟିକ ଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ଏହି ଅବସରରେ ପୂର୍ବରୁ ସ୍ଥାନୀୟ ମହିଳା ପଲିଟେକ୍‌ନିକ୍‌ଠାରେ ମହିଳା ଶିଳ୍ପୋଦ୍ୟୋଗୀମାନଙ୍କର ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରି ସେଗୁଡ଼ିକ ସମାଧାନ କରିବା ଦିଗରେ ବିହିତ ପଦକ୍ଷେପ ନେବା ଉଦ୍ଦେଶ୍ୟରେ ଏକ ମହିଳା ଶିଳ୍ପୋଦ୍ୟୋଗୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହା ସହ ବୈଷୟିକ ଜ୍ଞାନ ହାସଲ କରିଥିବା ମହିଳାମାନଙ୍କର ଏକ ତାଲିମ କାର୍ଯ୍ୟକ୍ରମ ମଧ୍ୟ ଅନୁଷ୍ଠିତ ହୋଇଥିଲା ।

ମହିଳା ଶିଳ୍ପୋଦ୍ୟୋଗୀମାନେ ଆବଶ୍ୟକୀୟ କାର୍ଯ୍ୟକାରୀ ମୂଳଧନର ଅଭାବ ଓ ମଞ୍ଜୁର ହୋଇଥିବା ଋଣ ବାବଦ ଅର୍ଥ ବିଭିନ୍ନ ଅର୍ଥ ଲଗାଣକାରୀ ସଂସ୍ଥାରୁ ମିଳିବାରେ ଅଯଥା ବିଳମ୍ବ ହେଉଥିବା ଜନିତ ଅସୁବିଧା ସମ୍ପର୍କରେ ଦୃଷ୍ଟି ଆକର୍ଷଣ କରିଥିଲେ । ଏହା ବ୍ୟତୀତ ଉଚ୍ଚ ହାରରେ ସୁଧ, ଶିଳ୍ପଜାତ ଉତ୍ପନ୍ନ ସାମଗ୍ରୀର ଗୁଣାତ୍ମକ ମାନରକ୍ଷା ଓ ସେଗୁଡ଼ିକର ବିକ୍ରୀବଟା ପାଇଁ ଉପଯୁକ୍ତ ବଜାରର ଅଭାବ ରହିଥିବା ଦର୍ଶାଇଥିଲେ । ଉକ୍ତ ସମସ୍ୟାଗୁଡ଼ିକ ଅନୁଧ୍ୟାନ କରାଯାଇ ସେଗୁଡ଼ିକୁ ସମାଧାନ କରିବା ଦିଗରେ ମହିଳା ନିଗମ ବିହିତ ପଦକ୍ଷେପ ଗ୍ରହଣ କରିବେ ବୋଲି ଆଲୋଚନା ପରେ ସ୍ଥିର କରାଯାଇଛି ।

ମହିଳା ଶିଳ୍ପୋଦ୍ୟୋଗୀ ତାଲିମ ଶିବିରରେ ବୈଷୟିକ ଯୋଗ୍ୟତା ହାସଲ କରିଥିବା ମହିଳାମାନଙ୍କର ପ୍ରବୃତ୍ତି ନିରୀକ୍ଷଣ କରାଯାଇଥିଲା । ସେମାନଙ୍କ ମଧ୍ୟରୁ କେତେକ ମହିଳା ନିର୍ଦ୍ଦିଷ୍ଟ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଆଗ୍ରହ ପ୍ରକାଶ କରି ପ୍ରସ୍ତାବ ଦେଇଥିଲେ । ଉକ୍ତ ପ୍ରସ୍ତାବଗୁଡ଼ିକୁ ପରୀକ୍ଷା କରାଯାଇ ସେମାନଙ୍କୁ ସମସ୍ତ ପ୍ରକାର ପ୍ରୋତ୍ସାହନ ଯୋଗାଇ ଦିଆଯିବା ଦିଗରେ ନିଗମ ସହାୟକ ହେବ ବୋଲି ସ୍ଥିର କରାଯାଇଛି । ଏହି ତାଲିମ ଶିବିରରେ ପ୍ରାୟ ୫୦ ଜଣ ଡିପ୍ଲୋମା ଇଞ୍ଜିନିୟରିଂ ଓ ଆଇ: ଟି: ଆଇ: ଯୋଗ୍ୟତାପ୍ରାପ୍ତ ମହିଳା ଯୋଗ ଦେଇଥିଲେ । କୋଡ଼ିଏ ଜଣ ମହିଳାଙ୍କୁ ଅଟୋ ଡ୍ରାଇଭିଂ ତାଲିମ ଦିଆଯିବା ପାଇଁ ନିଗମ ପକ୍ଷରୁ ଚିହ୍ନଟ କରାଯାଇଛି । ଏହି ମହିଳାମାନେ ତାଲିମ ପରେ ଗ୍ରାମାଞ୍ଚଳରେ ଆତ୍ମନିଯୁକ୍ତି ଜରିଆରେ ଜୀବିକାର୍ଜ୍ଜନ କରିପାରିବେ ।

ଉପରୋକ୍ତ କାର୍ଯ୍ୟକ୍ରମଗୁଡ଼ିକରେ ମହିଳା ନିଗମର ପରିଚାଳନା ନିର୍ଦ୍ଦେଶିକା ଶ୍ରୀମତୀ ଜି: ସୁବର୍ଣ୍ଣରାଣୀ ଅଧ୍ୟକ୍ଷତା କରି ରାଜ୍ୟର ମହିଳାମାନଙ୍କୁ ଆଗେଇ ନେବାରେ ସହାୟକ ହେଲା ଭଳି ବିଭିନ୍ନ କାର୍ଯ୍ୟକ୍ରମ ନିଗମ ଗ୍ରହଣ କରୁଥିବା ଦର୍ଶାଇଥିଲେ । ସେଥିପାଇଁ

ସେ ସମସ୍ତଙ୍କ ସହଯୋଗ କାମନା କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ଷ୍ଟେଟ୍ ବ୍ୟାଙ୍କ ସମୂହର ମୁଖ୍ୟ ଜେନେରାଲ ମ୍ୟାନେଜର, ୟୁ.କୋ. ବ୍ୟାଙ୍କର ମ୍ୟାନେଜର, ଇ. ପି. ଏମ୍.ର ନିର୍ଦ୍ଦେଶକ, ଜିଲ୍ଲା ପଲିଟେକ୍‌ନିକ୍ ଓ ଆଇ. ଟି. ଆଇ.ର ଅଧ୍ୟକ୍ଷ ବୃନ୍ଦ, ଜିଲ୍ଲା ଶିଳ୍ପକେନ୍ଦ୍ର ଓ ମହିଳା ନିଗମର କର୍ମକର୍ତ୍ତାମାନେ ଏହି କାର୍ଯ୍ୟକ୍ରମଗୁଡ଼ିକରେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

ସୂଚନାଯୋଗ୍ୟ ଯେ ରାଜ୍ୟରେ ୩୦୦ରୁ ଊର୍ଦ୍ଧ୍ୱ ମହିଳା ଶିଳ୍ପୋଦ୍ୟୋଗୀଙ୍କୁ ବିଭିନ୍ନ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ଆବଶ୍ୟକୀୟ ଭିତ୍ତିଭୂମି ଓ ଆର୍ଥିକ ସହାୟତା ଯୋଗାଇ ଦିଆଯାଉଛି । ଏହା ମଧ୍ୟରେ କେବଳ ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ୫୦ଟି କ୍ଷୁଦ୍ରଶିଳ୍ପ ଅନ୍ତର୍ଭୁକ୍ତ । ମହିଳା ଶିଳ୍ପୋଦ୍ୟୋଗୀମାନଙ୍କ ଶିଳ୍ପ ବିକାଶ କ୍ଷେତ୍ରରେ ବିଭିନ୍ନ ସମସ୍ୟା ସମ୍ପର୍କରେ ଆଲୋଚନା କରାଯିବା ପାଇଁ ରାଜ୍ୟର ବିଭିନ୍ନ ସ୍ଥାନରେ ନିଗମ ପକ୍ଷରୁ ଏ ପ୍ରକାର ଶିଳ୍ପୋଦ୍ୟୋଗୀ ସମାବେଶ ଅନୁଷ୍ଠିତ ହେବ ବୋଲି ନିଗମର ପରିଚାଳନା ନିର୍ଦ୍ଦେଶିକାଙ୍କ ସୂତ୍ରରୁ ପ୍ରକାଶ ।

## ଶିକ୍ଷକମାନେ ଭଲ ମଣିଷ ଗଢ଼ିବା ଦିଗରେ କାର୍ଯ୍ୟ କରନ୍ତୁ

—ମୁଖ୍ୟମନ୍ତ୍ରୀ

ଏକ ସୁସ୍ଥ ଓ ସୁନ୍ଦର ସମାଜ ଗଠନ କରିବା ପାଇଁ ପିଲାମାନଙ୍କୁ ଭବିଷ୍ୟତର ଭଲ ମଣିଷ ଗଢ଼ି ତୋଳିବା ସଙ୍ଗେ ସଙ୍ଗେ ମିଳିମିଶି କାର୍ଯ୍ୟ କରିବା ପାଇଁ ପ୍ରେରଣା ଦେବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଶିକ୍ଷକମାନଙ୍କୁ ପରାମର୍ଶ ଦେଇଛନ୍ତି ।

ଆଜି ସ୍ଥାନୀୟ ରାଜ୍ୟ ସମବାୟ ବ୍ୟାଙ୍କ୍ ସମ୍ମିଳନୀ କକ୍ଷରେ ଓଡ଼ିଶା ରାଜ୍ୟ ମାଧ୍ୟମିକ ଶିକ୍ଷକ ସଙ୍ଘ ଓ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର ଯୁଗ୍ମ ଆନୁକୂଲ୍ୟରେ ଆୟୋଜିତ ପ୍ରଥମ ଶ୍ରେଣୀଠାରୁ ଦ୍ୱାଦଶ ଶ୍ରେଣୀ ପର୍ଯ୍ୟନ୍ତ ସମନ୍ୱିତ ଶିକ୍ଷା ବ୍ୟବସ୍ଥାର ଗୁଣାତ୍ମକ ବିକାଶ ଶୀର୍ଷକ ଏକ ଆଲୋଚନା ଚକ୍ର ଉଦ୍‌ଘାଟନ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଆମ ସମାଜର ନୈତିକ ଅଧୋପତନ ଖୁବ୍ ଦ୍ରୁତ ହୋଇଯାଉଛି । ପ୍ରାଚୀନ ଗୁରୁକୁଳ ଶିକ୍ଷା ବ୍ୟବସ୍ଥା ସମ୍ପର୍କରେ ଉଲ୍ଲେଖ କରି ସେ କହିଲେ ଯେ ସେ କାଳର ଗୁରୁକୁଳ ଓ ଗୁରୁ ଶିଷ୍ୟ ସମ୍ପର୍କ ଆଜି ଉଭେଇ ଗଲାଣି । ଏକାଠି ଚିନ୍ତା କରିବା ଓ ଏକାଠି କାମ କରିବା ପାଇଁ କେହି ପ୍ରସ୍ତୁତ ନୁହନ୍ତି । ବ୍ୟକ୍ତିଗତ ଭାବରେ କିଏ କେତେ ଆଗେଇ ପାରିବ, ତାହା ହିଁ ହେଉଛି ବର୍ତ୍ତମାନ ଲୋକଙ୍କର ଚିନ୍ତା । କିନ୍ତୁ ମନେ ରଖିବାକୁ ହେବ ଯେ ଗବେଷଣା ଓ ବୈଜ୍ଞାନିକ ଉଦ୍ଭାବନ ଫଳରେ ଗୋଟିଏ ଜିନିଷ ବାହାର କରିବା ପାଇଁ ହଜାର ହଜାର ଲୋକ ଲାଗନ୍ତି । ସେ କହିଲେ ଯେ, ଚରିତ୍ର ଗଠନ ସାଙ୍ଗକୁ ମନର ବିକାଶ ଦ୍ୱାରା ଦାରିଦ୍ର୍ୟ ବିରୁଦ୍ଧରେ ବିଜୟ ଲାଭ କରି ଆତ୍ମନିର୍ଭରଶୀଳତା ହାସଲ କରାଯାଇ ପାରିବ । ଦେଶ ଓ ରାଜ୍ୟର ଆର୍ଥିକ ସଙ୍କଟ ସମ୍ପର୍କରେ ଉଦ୍‌ବେଗ ପ୍ରକାଶ କରି ସେ କହିଲେ ଯେ ଆମ ରାଜ୍ୟରେ ରାଜସ୍ୱ ବାବଦରେ ୯୨୦ କୋଟି ଟଙ୍କା ସଂଗ୍ରହ ହୋଇଥିଲା ବେଳେ କର୍ମଚାରୀମାନଙ୍କର ଦରମା ବାବଦକୁ ୧,୦୭୦ କୋଟି ଟଙ୍କା ଖର୍ଚ୍ଚ ହେଉଛି । ସମସ୍ତେ ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ପଛରେ ଗୋଡ଼ାଉଥିଲା ବେଳେ ସାମୂହିକ ଉନ୍ନତି ପାଇଁ କାହାର ଧ୍ୟାନ ନାହିଁ । ବ୍ରିଟିଶ୍ ସମୟଠାରୁ ଗଢ଼ି ଆସିଥିବା ଉପନିବେଶବାଦୀ ଶିକ୍ଷାର କଡ଼ା ସମାଲୋଚନା କରି ସେ କହିଲେ ଯେ ଏହାଦ୍ୱାରା ଆମର ମନ କ୍ଷୁଦ୍ରରୁ କ୍ଷୁଦ୍ରତର ହୋଇଯାଇଛି । ଆମକୁ ଏହାକୁ ସଜାଡ଼ିବା ଦିଗରେ ଉଦ୍ୟମ ଆରମ୍ଭ କରିବାକୁ ପଡ଼ିବ । ସେ ଶିକ୍ଷକମାନଙ୍କୁ ପରାମର୍ଶ ଦେଇ କହିଲେ ଯେ ପିଲାମାନଙ୍କୁ ବୟସ ଭେଦରେ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇ ସେମାନଙ୍କୁ ଆତ୍ମବିଶ୍ୱାସ ଓ ପ୍ରାଣ ପ୍ରାଚୁର୍ଯ୍ୟରେ ଭରିଦେବା ପାଇଁ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଲେ, ତାକୁ ସରକାର କାର୍ଯ୍ୟକାରୀ କରିବେ ।

ଏହି ସେମିନାର୍‌ରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ସୁପ୍ରିମ୍ କୋର୍ଟର ପ୍ରାକ୍ତନ ମୁଖ୍ୟ ନ୍ୟାୟାଧୀଶ ଶ୍ରୀ ରଙ୍ଗନାଥ ମିଶ୍ର କହିଲେ ଯେ ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ନୀତିବୋଧ, ମାନବିକ ମୂଲ୍ୟବୋଧ, ଜାଗତିକ ମୂଲ୍ୟବୋଧ ଓ ଦେଶାତ୍ମବୋଧ ଜାଗ୍ରତ କରିବାକୁ ପଡ଼ିବ । ସମ୍ବିଧାନ ପ୍ରଚଳିତ ହେବାର ୪୭ ବର୍ଷ ପରେ ମଧ୍ୟ ଏହାର ମୁଖ୍ୟ ଉଦ୍ଦେଶ୍ୟ ଭଲ ନାଗରିକ ଗଠନ କରିବା ଏ ପର୍ଯ୍ୟନ୍ତ ସାଧିତ ହୋଇ ପାରିନଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ । ଧର୍ମ ଓ ନୈତିକତା ଉପରେ ପ୍ରତିଷ୍ଠିତ ସାଧୁତାକୁ ମଣିଷର ପ୍ରାଣ ଭିତରକୁ ଆଣି ଭଲ ନାଗରିକ ତିଆରି କରିବା ଦ୍ୱାରା ଶିକ୍ଷକ ସମାଜରେ ସମ୍ମାନର ଅଧିକାରୀ ହୋଇପାରିବେ ବୋଲି ସେ ମତ ପ୍ରକାଶ କରିଥିଲେ ।

ବିଶିଷ୍ଟ ଶିକ୍ଷାବିତ୍ ପ୍ରଫେସର୍ ଶମ୍ଭୁ ନାଥଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଉଦ୍‌ଘାଟନୀ ଉତ୍ସବରେ ଓଡ଼ିଶାର ମାଧ୍ୟମିକ ଶିକ୍ଷକ ସଙ୍ଘର ସାଧାରଣ ସମ୍ପାଦକ ଶ୍ରୀ ବିବେକାନନ୍ଦ ଦାସ ସ୍ୱାଗତ ଭାଷଣ ଦେଇଥିଲେ । ଦୁଇଦିନ ଧରି ଅନୁଷ୍ଠିତ ହେଉଥିବା ଏହି ଆଲୋଚନା ଚକ୍ରରେ ଶିକ୍ଷାର ବିଭିନ୍ନ ଦିଗ, ନୈତିକ ଶିକ୍ଷା, ପରୀକ୍ଷା ସଂସ୍କାର ଓ ସମନ୍ୱିତ ଶିକ୍ଷା ବ୍ୟବସ୍ଥାର ଗୁଣାତ୍ମକ ବିକାଶ ସମ୍ପର୍କରେ ବିଭିନ୍ନ ଦିଗରୁ ଆଲୋଚନା କରାଯିବ । ଏହି ଅବସରରେ ଶିକ୍ଷା ସଚିବ ଶ୍ରୀ ଅଭୟାନନ୍ଦ ରଥଙ୍କ ସମେତ ଶିକ୍ଷା ବିଭାଗର ବହୁ ପଦାଧିକାରୀ ଓ ରାଜ୍ୟର ବିଶିଷ୍ଟ ଶିକ୍ଷାବିତ୍‌ମାନେ ଅଂଶ ଗ୍ରହଣ କରିଛନ୍ତି ।

## କଲିକତାଠାରେ ଓଡ଼ିଶା ସରକାରଙ୍କ ସୂଚନା କେନ୍ଦ୍ର ଉଦ୍‌ଘାଟିତ

କଲିକତାଠାରେ ଓଡ଼ିଶା ସରକାରଙ୍କ ପକ୍ଷରୁ ପ୍ରତିଷ୍ଠିତ ସୂଚନାକେନ୍ଦ୍ର ଓଡ଼ିଶା ଓ ପଶ୍ଚିମ ବଙ୍ଗ ଜନସାଧାରଣଙ୍କର ସାଂସ୍କୃତିକ ବନ୍ଧନକୁ ସୁଦୃଢ଼କରଣ କରିବ ବୋଲି ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଆଶା ପ୍ରକାଶ କରିଛନ୍ତି । ଗତକାଲି ସନ୍ଧ୍ୟାରେ ଏହି ନବ ପ୍ରତିଷ୍ଠିତ ସୂଚନାକେନ୍ଦ୍ର ଉଦ୍‌ଘାଟନ କରି ମନ୍ତ୍ରୀ ଶ୍ରୀ କର କଲିକତାଠାରେ ଏକ ପୂର୍ବାଞ୍ଚଳ ସାଂସ୍କୃତିକ କେନ୍ଦ୍ର ସ୍ଥାପନ କରିବା ଉପରେ ଗୁରୁତ୍ୱ ଦେଇ ଏଥି ପାଇଁ ପଶ୍ଚିମ ବଙ୍ଗ ସରକାର ସ୍ଥାନ ଯୋଗାଇ ଦେବା ଉଚିତ୍ ବୋଲି ମତ ଦେଇଥିଲେ ।

ପଶ୍ଚିମ ବଙ୍ଗ ସରକାରଙ୍କର କ୍ରୀଡ଼ା ଓ ପର୍ଯ୍ୟଟନ ବିଭାଗ ମନ୍ତ୍ରୀ ଶ୍ରୀ ସୁଭାଷ ଚନ୍ଦ୍ର ଚକ୍ରବର୍ତ୍ତୀ ଏହି ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ କଳିଙ୍ଗର ଉଚ୍ଚ ସାଂସ୍କୃତିକ ପରମ୍ପରା ଓ ଐତିହ୍ୟ ସମ୍ପର୍କରେ ସୂଚନା ଦେଇ କହିଲେ ଯେ ସାହିତ୍ୟ, ସଂସ୍କୃତି, କଳା, ଶୌର୍ଯ୍ୟ ଓ ନୌବାଣିଜ୍ୟ ପ୍ରଭୃତି କ୍ଷେତ୍ରରେ ଓଡ଼ିଶା ଦିନେ ଶୀର୍ଷ ସ୍ଥାନରେ ଥିଲା । ରାଜ୍ୟର ଉଚ୍ଚ ସାଂସ୍କୃତିକ ପରମ୍ପରା ତଥା ବର୍ତ୍ତମାନର ପ୍ରଗତି ସମ୍ପର୍କରେ ଏହି ସୂଚନା କେନ୍ଦ୍ର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବ ବୋଲି ସେ ଆଶା ପ୍ରକାଶ କରିଥିଲେ । ଉଦ୍‌ଘାଟନ ଉତ୍ସବରେ ସମ୍ମାନିତ ଅତିଥି ରୂପେ ଯୋଗ ଦେଇ ପଶ୍ଚିମ ବଙ୍ଗର ସମବାୟ ମନ୍ତ୍ରୀ ଶ୍ରୀ ସରଳ ଦେବ ପଶ୍ଚିମ ବଙ୍ଗ ଓ ଓଡ଼ିଶାର ସଂସ୍କୃତି, ଭାଷା ଓ ଜୀବନ ନିର୍ବାହ ପ୍ରଣାଳୀର ସାମଞ୍ଜସ୍ୟ ସମ୍ପର୍କରେ ସୂଚନା ଦେଇ ଉଭୟ ରାଜ୍ୟର ଜନସାଧାରଣଙ୍କର ମୈତ୍ରୀ ଅଧିକ ସୁଦୃଢ଼ ହୋଇପାରିବ ବୋଲି ଆଶା ପ୍ରକାଶ କରିଥିଲେ ।

ଏହି ଉତ୍ସବରେ ସଭାପତିତ୍ୱ କରି ସୂଚନା ଓ ଲୋକସମ୍ପର୍କ ବିଭାଗ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଓଡ଼ିଶା ସରକାରଙ୍କ ପକ୍ଷରୁ ପ୍ରତିଷ୍ଠିତ ଏହି ସୂଚନା କେନ୍ଦ୍ରର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କରେ ସୂଚନା ଦେବା ସହ ଓଡ଼ିଶା ସରକାରଙ୍କର କଲିକତାଠାରେ ଥିବା ବିଭିନ୍ନ କାର୍ଯ୍ୟାଳୟ ଗୋଟିଏ ସ୍ଥାନରେ କାର୍ଯ୍ୟ କରିବା ଉଚିତ୍ ବୋଲି ମତ ଦେଇଥିଲେ ଓ ଏହି ଉଦ୍ଦେଶ୍ୟରେ ପଶ୍ଚିମ ବଙ୍ଗ ସରକାର ଏକ ସ୍ଥାନ ଯୋଗାଇ ଦେବା ବିଷୟ ବିଚାର କରିବା ଆବଶ୍ୟକ ବୋଲି ପ୍ରକାଶ କରିଥିଲେ ।

ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ରଥ ଧନ୍ୟବାଦ ଅର୍ପଣ କରିବା ସଙ୍ଗେ ସଙ୍ଗେ କଲିକତାଠାରେ ପ୍ରତିଷ୍ଠିତ ସୂଚନା କେନ୍ଦ୍ରର ସୁପରିଚାଳନା ପାଇଁ ପଶ୍ଚିମ ବଙ୍ଗ ସରକାର ତଥା କଲିକତାର ଜନସାଧାରଣଙ୍କର ପୂର୍ଣ୍ଣ ସହଯୋଗ କାମନା କରିଥିଲେ । ଓଡ଼ିଶା ଶିକ୍ଷା ସଂସଦ କଳାକାରମାନେ ପ୍ରାରମ୍ଭିକ ସଙ୍ଗୀତ ପରିବେଷଣ କରିଥିଲେ ।

ଏହି ଉତ୍ସବରେ କଲିକତା ଅଧିବାସୀ ବହୁ ଓଡ଼ିଆଭାଷୀ ଲୋକ ଓ ବିଭିନ୍ନ ବିଭାଗର ପଦସ୍ଥ କର୍ମଚାରୀମାନେ ଯୋଗ ଦେଇଥିଲେ ।

## ଓଡ଼ିଶା ରେଡ଼ିଓ ମେଣ୍ଟେନାନ୍‌ସ୍ ଅଫିସର୍ ସଙ୍ଘର ବାର୍ଷିକ ସମ୍ମିଳନୀ

ବୈଷୟିକ ସେବାର ଉପଯୁକ୍ତ ବିନିଯୋଗ ଉପରେ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଗୁରୁତ୍ୱ ଆରୋପ କରିଛନ୍ତି । ଆଜି ଓଡ଼ିଶା ରେଡ଼ିଓ ମେଣ୍ଟେନାନ୍‌ସ୍ ଅଫିସର୍ ସଙ୍ଘର ନବମ ବାର୍ଷିକ ସମ୍ମିଳନୀ ଉଦ୍‌ଘାଟନ କରି ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ କହିଲେ ଯେ ବୈଷୟିକ ଜ୍ଞାନର ସମନ୍ୱିତ ବିକାଶ ଓ ଅଭିବୃଦ୍ଧି ଏବଂ ଜନସାଧାରଣଙ୍କର ହିତାର୍ଥେ ଏହାର ସଦ୍ ବିନିଯୋଗ ପାଇଁ ବିଧିବଦ୍ଧ ଯୋଜନା ପ୍ରସ୍ତୁତ ହେବା ଆବଶ୍ୟକ । ରାଜ୍ୟର ବର୍ତ୍ତମାନର ଆର୍ଥିକ ସମ୍ବଳକୁ ଦୃଷ୍ଟିରେ ରଖି ସଙ୍ଘ ପକ୍ଷରୁ ଉପସ୍ଥାପିତ ବିଭିନ୍ନ ଦାବୀ ସମ୍ପର୍କରେ ସହାନୁଭୂତି ପୂର୍ଣ୍ଣ ବିଚାର କରାଯିବ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ ।

ଏହି ଉତ୍ସବରେ ମୁଖ୍ୟ ଅତିଥି ରୂପେ ଯୋଗଦେଇ ବିଭାଗୀୟ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ସୂଚନା ଓ ଲୋକ ସମ୍ପର୍କ ବିଭାଗର ରେଡ଼ିଓ ପରିଦର୍ଶକମାନଙ୍କୁ ଇଲେକ୍‌ଟ୍ରୋନିକ୍‌ସ ବିଦ୍ୟାରେ ଉପଯୁକ୍ତ ପ୍ରଶିକ୍ଷଣ ଦେବା ପାଇଁ ଏକ ଯୋଜନା କାର୍ଯ୍ୟକାରୀ କରାଯିବ ବୋଲି କହିଥିଲେ । ସେ କହିଲେ, ବିଜ୍ଞାନର ପ୍ରଗତି ଫଳରେ ଜନସାଧାରଣଙ୍କର ଆବଶ୍ୟକତାରେ ଯେଉଁ ପରିବର୍ତ୍ତନ ଦେଖାଦେଇଛି ତା' ସହ ଖାପ ଖୁଆଇ କାର୍ଯ୍ୟ କରିବା ପାଇଁ ଯୋଜନାବଦ୍ଧ ଉଦ୍ୟମ ହେବା ଉଚିତ୍ । ସମ୍ମାନିତ ଅତିଥି ରୂପେ ଯୋଗଦେଇ ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ କାଳୀ କୁମାର ରଥ କାର୍ଯ୍ୟର ମୂଲ୍ୟାୟନ କରି ରେଡ଼ିଓ ପରିଦର୍ଶନ ଶାଖାରେ ଆବଶ୍ୟକୀୟ ସଂସ୍କାର ଆଣିବା ବିଷୟ ବିଚାର କରାଯିବ । ସଙ୍ଘର ଦାବୀଗୁଡ଼ିକ ସହାନୁଭୂତି ସହ ପରୀକ୍ଷା କରିବେ ବୋଲି ସେ ପ୍ରତିଶ୍ରୁତି ଦେଇଥିଲେ ।

ଏହି ବାର୍ଷିକ ସମ୍ମିଳନୀରେ ଭୁବନେଶ୍ୱରଠାରେ ଅବସ୍ଥାପିତ ବରିଷ୍ଠ ଅନୁରକ୍ଷଣ ଅଧିକାରୀ ଶ୍ରୀ ବିରେନ୍ଦ୍ର କୁମାର ରାୟ ସଭାପତିତ୍ୱ କରିଥିଲେ ଓ ସଙ୍ଘର ସାଧାରଣ ସମ୍ପାଦକ ଶ୍ରୀ ଗୋଲକ ଚନ୍ଦ୍ର ବେହେରା ବାର୍ଷିକ ବିବରଣୀ ପାଠ କରିଥିଲେ । ସଙ୍ଘର ଅଧ୍ୟକ୍ଷ ଶ୍ରୀ ସନ୍ତୋଷ କୁମାର ରାୟ, ପୂର୍ବତନ ସାଧାରଣ ସମ୍ପାଦକ ଶ୍ରୀ ସୁର ପ୍ରସାଦ ଦାଶ ତଥା ସଙ୍ଘର ଅନ୍ୟାନ୍ୟ ସଭ୍ୟମାନେ ଭାଷଣ ଦେଇ ସେମାନଙ୍କର ବିଭିନ୍ନ ଦାବୀ ଉପସ୍ଥାପନ କରିଥିଲେ ।

ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ବିଶ୍ୱଜିତ୍ ଦାସ, ଉପ–ଶାସନ ସଚିବ ଶ୍ରୀ ପୂର୍ଣ୍ଣ ଚନ୍ଦ୍ର ମହାନ୍ତି, ସୂଚନା ଅଧିକାରୀ ଶ୍ରୀ ଗୌରୀ ଶଙ୍କର ମହାପାତ୍ର ପ୍ରମୁଖ ଏହି ବାର୍ଷିକ ସମ୍ମିଳନୀରେ ଯୋଗ ଦେଇଥିଲେ ।

## ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ବିଭାଗର ଉଚ୍ଚ ସ୍ତରୀୟ ବୈଠକ

ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ବିଭାଗର ବରିଷ୍ଠ ଅଧିକାରୀମାନେ କ୍ଷେତ୍ର କର୍ମଚାରୀମାନଙ୍କ କାର୍ଯ୍ୟ ନିରୀକ୍ଷଣ କରିବା ସମୟରେ ସମ୍ପୃକ୍ତ ଅଧିକାରୀଙ୍କ ତତ୍ତ୍ୱାବଧାନରେ ଥିବା ସମ୍ବଳକୁ ସଠିକ୍ ଭାବେ ବିନିଯୋଗ କରିବା ସଙ୍ଗେ ସଙ୍ଗେ କାର୍ଯ୍ୟକ୍ରମଗୁଡ଼ିକୁ ତ୍ୱରାନ୍ୱିତ କରିବା ପାଇଁ ବିଭାଗୀୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ନିର୍ଦ୍ଦେଶ ଦେଇଛନ୍ତି ।

ଗତ ୮ ତାରିଖ ଦିନ ସଚିବାଳୟଠାରେ ବିଭାଗର ୧୯୯୬–୯୭ 'ଆକ୍‌ସନ୍ ପ୍ଲାନ' ସମ୍ପର୍କରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ଅଧ୍ୟକ୍ଷତା କରି ଶ୍ରୀ ପାତ୍ର କହିଲେ ଯେ ସମ୍ପୃକ୍ତ ଅଧିକାରୀମାନେ କାର୍ଯ୍ୟ ନିରୀକ୍ଷଣ ସମୟରେ ଲୋକଙ୍କର ପ୍ରକୃତ ଅସୁବିଧା ହୃଦୟଙ୍ଗମ କରି ତା'ର ବିହିତ ପ୍ରତିକାର ବ୍ୟବସ୍ଥା ଲାଗି ଆର୍ଥିକ ବର୍ଷ ଆରମ୍ଭରୁ କ୍ଷେତ୍ର କର୍ମଚାରୀମାନଙ୍କୁ ଆବଶ୍ୟକ ନିର୍ଦ୍ଦେଶ ଦେବା ଉଚିତ । ସେ କହିଲେ ଯେ ଯୋଜନାଗୁଡ଼ିକ ଏପରି ଭାବେ ହେବା ଉଚିତ୍, ଯଦ୍ୱାରା ଜନସାଧାରଣ ବିଶେଷ ଭାବେ ସୁଫଳ ପାଇପାରିବେ ଏବଂ ଏଥିପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟ ମଧ୍ୟ ପୂରଣ ହୋଇପାରିବ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ବିଭାଗୀୟ ଶାସନ ସଚିବ, ଓମ୍‌ଫେଡ୍‌ର ଅଧକ୍ଷ ତଥା ପରିଗ୍ଳନା ନିର୍ଦ୍ଦେଶକ, ଓମ୍‌ଫାର୍ଡ଼ର ପରିଗ୍ଳନା ନିର୍ଦ୍ଦେଶକ, ଗୋପାଳପୁର ବନ୍ଦର ପ୍ରକଳ୍ପର ନିର୍ମାଣ ମୁଖ୍ୟଯନ୍ତ୍ରୀ, ମତ୍ସ୍ୟ ଯାଆଁଳ ଉନ୍ନୟନ ନିଗମର ପରିଗ୍ଳନା ନିର୍ଦ୍ଦେଶକ ପ୍ରମୁଖ ସମ୍ପୃକ୍ତ ବିଭାଗୀୟ ଅଧିକାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ବଉଦ ସବ୍‌ଡ଼ିଭିଜନ୍‌ର ବିଭିନ୍ନ ଅଞ୍ଚଳରୁ ମିଳିଥିବା ବୁଦ୍ଧ ପ୍ରତିମୂର୍ତ୍ତିଗୁଡ଼ିକର ସଂରକ୍ଷଣ ସମ୍ପର୍କରେ ଆଲୋଚନା

ଫୁଲବାଣୀ ଜିଲ୍ଲା ବଉଦ ସବ୍‌ଡ଼ିଭିଜନ୍‌ର ବଉଦ ସହର, ଶ୍ୟାମସୁନ୍ଦରପୁର ଓ ପରାବଳପୁରରେ ବୁଦ୍ଧ ପ୍ରତିମୂର୍ତ୍ତିଗୁଡ଼ିକର ଉପଯୁକ୍ତ ସଂରକ୍ଷଣ ସମ୍ପର୍କରେ ରାଜ୍ୟ ଯୋଜନା ବୋର୍ଡ଼ ଉପାଧ୍ୟକ୍ଷ ଶ୍ରୀ ରମାକାନ୍ତ ମିଶ୍ର ଗତ ଗୁରୁବାର ଦିନ ରାଜ୍ୟ ସଚିବାଳୟଠାରେ ଜିଲ୍ଲାପାଳଙ୍କ ସଙ୍ଗେ ଆଲୋଚନା କରିଥିଲେ ।

ଆଲୋଚନାରୁ ପ୍ରକାଶ ଯେ ବଉଦଠାରେ ଏକ ବୌଦ୍ଧ ବିହାର ଏବଂ ବୌଦ୍ଧ ଅଧ୍ୟୟନ ଓ ଗବେଷଣା ପାଇଁ ଏକ କେନ୍ଦ୍ର ଖୋଲାଯିବ । କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ବଉଦ ସବ୍‌ଡ଼ିଭିଜନ୍‌ରେ ବୌଦ୍ଧ ଧର୍ମ ତଥା ବୌଦ୍ଧ ପ୍ରାଚୀନ କୀର୍ତ୍ତି ସମ୍ପର୍କରେ ମହାନଦୀର ଦକ୍ଷିଣ କୂଳ ଓ ପୁରୁଣା ଜଗନ୍ନାଥ ସଡ଼କ ପାଖେ ପାଖେ ସର୍ଭେ କରାଯିବା ପାଇଁ ସେମାନଙ୍କୁ ଅନୁରୋଧ କରାଯିବ । ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏହି ସବ୍‌ଡ଼ିଭିଜନ୍‌ର ବିଭିନ୍ନ ସ୍ଥାନରୁ ମିଳିଥିବା ବୁଦ୍ଧମୂର୍ତ୍ତିଗୁଡ଼ିକର ରକ୍ଷଣାବେକ୍ଷଣ ଓ ସଂରକ୍ଷଣ ଦାୟିତ୍ୱ ନେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଅଞ୍ଚଳରେ ଏଥିପାଇଁ ଖନନ କାର୍ଯ୍ୟ ମଧ୍ୟ କରିବେ । ପରେ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ଏ ସମସ୍ତ ଦାୟିତ୍ୱ ହାତକୁ ନେବେ । ଉପରୋକ୍ତ ତିନୋଟି ସ୍ଥାନରେ ପ୍ରତିଷ୍ଠା ହେବାକୁ ଯାଉଥିବା ବୁଦ୍ଧ ବିହାର ସେ ଅଞ୍ଚଳର ପାର୍କ ଏବଂ ବଗିଚାର ରକ୍ଷଣାବେକ୍ଷଣ କରିବେ ଏବଂ ବୌଦ୍ଧଧର୍ମ ସମ୍ପର୍କୀୟ ଅଧ୍ୟୟନ କେନ୍ଦ୍ର, ପୁସ୍ତକାଗାର ଓ ସଂଗ୍ରହାଳୟର ଉନ୍ନତି ପାଇଁ କାର୍ଯ୍ୟ କରିବେ ବୋଲି ଉକ୍ତ ଆଲୋଚନାରେ ସ୍ଥିର କରାଯାଉଛି ।

## ସୂଚନା ଓ ଲୋକ ସମ୍ପର୍କ ବିଭାଗର ନୂତନ ନିର୍ଦ୍ଦେଶକ

ସୂଚନା ଓ ଲୋକ ସମ୍ପର୍କ ବିଭାଗର ନୂତନ ନିର୍ଦ୍ଦେଶକ ରୂପେ ଶ୍ରୀ କାଳୀ କୁମାର ରଥ, ଆଇ. ଏ. ଏସ୍. ଗତ ତିନି ତାରିଖ ଦିନ କାର୍ଯ୍ୟଭାର ଗ୍ରହଣ କରିଛନ୍ତି । ଦାୟିତ୍ୱ ଗ୍ରହଣ ପରେ ଶ୍ରୀ ରଥ ସୂଚନା ଓ ଲୋକ ସମ୍ପର୍କ ବିଭାଗକୁ ଅଧିକ କର୍ମକ୍ଷମ କରିବା ଦିଗରେ ସମ୍ପୃକ୍ତ ବିଭାଗୀୟ କର୍ମକର୍ତ୍ତାମାନଙ୍କ ସହ ଆଲୋଚନା କରିଛନ୍ତି ।

## ଓଡ଼ିଆ ସାହିତ୍ୟକୁ ସର୍ବଭାରତୀୟ ସ୍ତରରେ ପହଞ୍ଚାଇବାକୁ ରାଜ୍ୟପାଳଙ୍କ ଗୁରୁତ୍ୱ

ଭାରତ ଇତିହାସର ମୂଳ ତତ୍ତ୍ୱ ବିଭିନ୍ନ ଶିଳାଲେଖ, ତାଳପତ୍ର ଓ ଭୂର୍ଜପତ୍ରର ପ୍ରାଚୀନ ପୋଥି ଓ ପୁରାଣ ଗ୍ରନ୍ଥମାନଙ୍କ ମଧ୍ୟରେ ଏବେ ବି ଲୁକ୍କାୟିତ ହୋଇ ରହିଛି ଓ ସେସବୁକୁ ଉଦ୍ଧାର କରାଯାଇ ଭାରତବର୍ଷର ସମସ୍ତ ବ୍ୟକ୍ତି ବିଶେଷ ବୁଝିପାରିଲା ଭଳି ଭାଷାମାନଙ୍କରେ ଅନୁବାଦ କରାଯିବାର ଆବଶ୍ୟକତା ରହିଛି ବୋଲି ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା କହିଛନ୍ତି ।

ଗତକାଲି ଅପରାହ୍ନରେ ରାଜଭବନରେ ଅନୁଷ୍ଠିତ ଏକ ଉତ୍ସବରେ ରାଜ୍ୟପାଳ ପଦ୍ମଶ୍ରୀ ଓ ସତ୍ୟନାରାୟଣ ରାଜଗୁରୁଙ୍କ ଦ୍ୱାରା ସମ୍ପାଦିତ "ଇନ୍‌ସ୍କ୍ରିପ୍‌ସନ୍ ଅଫ ଦି ଟେମ୍ପୁଲ୍ ଅଫ ପୁରୀ ଏଣ୍ଡ ଓରିଜିନ୍ ଅଫ ଶ୍ରୀ ପୁରୁଷୋତ୍ତମ ଜଗନ୍ନାଥ" (ପୁରୀର ମନ୍ଦିରମାନଙ୍କର ଶିଳାଲେଖ ଓ ପୁରୁଷୋତ୍ତମ ଶ୍ରୀ ଜଗନ୍ନାଥଙ୍କ ଉତ୍ପତ୍ତି) ପୁସ୍ତକର ପ୍ରଥମ ଖଣ୍ଡକୁ ଉନ୍ମୋଚିତ କରି କହିଛନ୍ତି ଯେ, ପୁରୀର ଶ୍ରୀମନ୍ଦିର ଓ ଅନ୍ୟାନ୍ୟ ମନ୍ଦିରଗୁଡ଼ିକର ଶିଳାଲେଖ ସମ୍ପର୍କରେ ଅଧ୍ୟୟନ କରି ଡଃ ରାଜଗୁରୁ ତା'ର ତତ୍ତ୍ୱକୁ ଏହି ପୁସ୍ତକ ଆକାରରେ ଆମ ଆଗରେ ରଖିପାରିଛନ୍ତି । ଏହାଫଳରେ ଶ୍ରୀ ଜଗନ୍ନାଥ ଭଗବାନ ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଉତ୍ପତ୍ତି ବିଷୟରେ ମଧ୍ୟ ପ୍ରଥମ ଥର ପାଇଁ ଅନେକ ତଥ୍ୟ ଆଲୋକକୁ ଆସିପାରିଛି ।

କେତେକ ଏହିପରି ଗବେଷଣା ପୁସ୍ତକ ସବୁକୁ କେବେ ଇଂରାଜୀ ବ୍ୟତୀତ ହିନ୍ଦି ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ପ୍ରକାଶିତ କରିବାର ଆବଶ୍ୟକତା ରହିଛି ବୋଲି ରାଜ୍ୟ ପାଳ ଗୁରୁତ୍ୱାରୋପ କରିଥିଲେ । ସେ କହିଥିଲେ ଯେ, ଇଂରାଜୀରେ ପ୍ରକାଶିତ ଗ୍ରନ୍ଥ ତତ୍ତ୍ୱକୁ ମାତ୍ର ୨ ଶତାଂଶ ଲୋକ ଗ୍ରହଣ କରିପାରନ୍ତି । ହିନ୍ଦି ଓ ଅନ୍ୟାନ୍ୟ ଚଳନ୍ତି ଭାରତୀୟ ଭାଷାରେ ଏହିପରି ଗ୍ରନ୍ଥ ସବୁ ଅନୁବାଦ କରାଗଲେ ଭାରତର ଅଧିକାଂଶ ଲୋକଙ୍କ ପାଖରେ ଏହାର ତତ୍ତ୍ୱ ସବୁ ପହଞ୍ଚିପାରିବ ବୋଲି ସେ ପ୍ରକାଶ କରିଥିଲେ ।

ଏକ ବୃହତ୍ତମ ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଏକ ସର୍ବଭାରତୀୟ ଭାଷାର ବିକାଶ ଓ ପ୍ରସାରର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରି ସେ କହିଥିଲେ ଯେ, ଆଜିକାଲି ସମସ୍ତେ ଦେଶୀ ଭାଷାଠାରୁ ଦୂରେଇ ଯାଉଛନ୍ତି । ଏହା ଏକ ସର୍ବସାଧାରଣ ଭାଷା ହୋଇ ରହୁନି । ଓଡ଼ିଆ ଭାଷାର ବିକାଶ ପରିପ୍ରେକ୍ଷୀରେ ସେ କହିଥିଲେ ଯେ, ଓଡ଼ିଆ ସାହିତ୍ୟ ଓ ଗ୍ରନ୍ଥ ସବୁକୁ ହିନ୍ଦି ଓ ଅନ୍ୟାନ୍ୟ ଭାରତୀୟ ଭାଷାମାନଙ୍କରେ ଅନୁବାଦ କରିପାରିଲେ ସେଥିରେ ଥିବା ଉପାଦେୟ ତତ୍ତ୍ୱ ସବୁକୁ ସାରା ଭାରତର ଲୋକମାନେ ଗ୍ରହଣ କରିପାରନ୍ତେ ।

ଏହି ପୁସ୍ତକ ଉନ୍ମୋଚନ ଉତ୍ସବରେ ଅଧ୍ୟକ୍ଷତା କରି ସଂସ୍କୃତି ମନ୍ତ୍ରୀ ଶ୍ରୀ କର କହିଲେ ଯେ, ହିନ୍ଦି ଓ ଅନ୍ୟ ଭାରତୀୟ ଭାଷାରେ ଓଡ଼ିଆ ସାହିତ୍ୟର ଅନୁବାଦ ପାଇଁ ସରକାର ତଥା ନିଜେ ମୁଖ୍ୟମନ୍ତ୍ରୀ ଖୁବ ଆଗ୍ରହ ପ୍ରଦର୍ଶନ କରିଛନ୍ତି ଓ ମୁଖ୍ୟମନ୍ତ୍ରୀ ଏ ସମ୍ପର୍କରେ କେତେକ ନିର୍ଦ୍ଦେଶ ମଧ୍ୟ ଦେଇଛନ୍ତି ।

ଡଃ ରାଜଗୁରୁଙ୍କ କାର୍ଯ୍ୟର ଭୂୟସୀ ପ୍ରଶଂସା କରି ସେ କହିଥିଲେ ଯେ, ଏହିପରି କାମ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କରେ ଥିବା ଶିଳାଲେଖ ଓ ବିଭିନ୍ନ ସ୍ଥାନରେ ସଂରକ୍ଷିତ ହୋଇଥିବା ପ୍ରାଚୀନ ପୋଥି ଉପରେ କରାଇବା ଲାଗି ସରକାର ଖୁବ ଆଗ୍ରହୀ ।

ଏଥିପାଇଁ ଡଃ ରାଜଗୁରୁଙ୍କ ପଦାଙ୍କରେ ଅନ୍ୟାନ୍ୟ ଗବେଷକମାନେ ଆଗେଇ ଆସି ଉତ୍କଳର ପ୍ରାଚୀନ ଐତିହ୍ୟ, ସଂସ୍କୃତି ପରମ୍ପରା ତଥା ଇତିହାସକୁ ସର୍ବସାଧାରଣଙ୍କ ଆଗରେ ଉପସ୍ଥାପନ କରନ୍ତୁ ବୋଲି ସେ ମଞ୍ଚ ସେ ପ୍ରତିଶ୍ରୁତି ଦେଇଥିଲେ। ଛାତ୍ରଛାତ୍ରୀ ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କ ଦ୍ୱାରା କରାଯାଇଥିବା ଗବେଷଣା କାର୍ଯ୍ୟକୁ ପ୍ରୋତ୍ସାହିତ କରିବା ପାଇଁ ସରକାର ୟୁ.ଜି.ସି. ଗୋଷ୍ଠୀରୁ ଓ ନିଜେ ମଧ୍ୟ ଆର୍ଥିକ ସହାୟତା କରିବେ ବୋଲି ସେ ଭୂମିକାରେ ସ୍ପଷ୍ଟ କରି ଦେଇଥିଲେ।

ବିଶିଷ୍ଟ ସଂସ୍କୃତ ବିଦ୍ୱାନ, କବି, ଲେଖକ ଓ ସାମ୍ବାଦିକ ପଣ୍ଡିତ ପ୍ରବୋଧ କୁମାର ମିଶ୍ର ଏହି ଉତ୍ସବରେ ବକ୍ତା ଭାବରେ ଯୋଗଦେଇ ଓଡ଼ିଶାର ସଂସ୍କୃତି, ସାହିତ୍ୟ ଓ କଳାର ଉତ୍କର୍ଷତା ଉପରେ ଆଲୋକପାତ କରିଥିଲେ। ସେ ଡଃ ରାଜଗୁରୁଙ୍କ କାର୍ଯ୍ୟର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାଙ୍କର ଏହି କାର୍ଯ୍ୟ (ପୁସ୍ତକ) କେବଳ ଓଡ଼ିଶାକୁ ନୁହେଁ ବରଂ ସାରା ଭାରତ ତଥା ବିଶ୍ୱକୁ ଏକ ନୂତନ ଆଲୋକ ଦେଖାଇବ ବୋଲି ଆଶା ପ୍ରକାଶ କରିଥିଲେ।

୯୦ ବର୍ଷ ବୟସ୍କ ଡଃ ରାଜଗୁରୁ ନିଜେ ଅସୁସ୍ଥତାବଶତଃ ତାଙ୍କର ଏହି ପୁସ୍ତକ ଉନ୍ମୋଚନ ଉତ୍ସବରେ ଯୋଗଦେଇ ପାରିନଥିବାରୁ ଏକ ଲିଖିତ ବାର୍ତ୍ତା ପଠାଇଥିଲେ। ଡଃ ଜୟକୃଷ୍ଣ ମିଶ୍ର ଏହାକୁ ପାଠ କରିଥିଲେ।

## ପ୍ରତି ଜିଲ୍ଲାରେ ମହିଳା ବ୍ୟାଙ୍କ ପ୍ରତିଷ୍ଠା କରାଯିବ

—ମୁଖ୍ୟମନ୍ତ୍ରୀ

ମହିଳାମାନଙ୍କୁ ଆତ୍ମନିର୍ଭରଶୀଳ କରିବା ପାଇଁ ପ୍ରତି ଜିଲ୍ଲାରେ ମହିଳା ବ୍ୟାଙ୍କ ପ୍ରତିଷ୍ଠା କରାଯିବ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କହିଛନ୍ତି।

ଗତ ୨୯ ତାରିଖରେ ବ୍ରହ୍ମପୁର କେନ୍ଦ୍ର ସମବାୟ ବ୍ୟାଙ୍କ ପ୍ରାଙ୍ଗଣରେ ଥିବା ମହିଳା ବ୍ୟାଙ୍କର ସାଧାରଣ ପରିଷଦ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ମୁଖ୍ୟ ଅତିଥି ରୂପେ ଯୋଗଦେଇ କହିଲେ ଯେ ମାନ୍ଦ୍ରାଜ ଗୁଜୁରାଟ ମହାରାଷ୍ଟ୍ରରେ ମହିଳା ବ୍ୟାଙ୍କ ଦ୍ୱାରା ସ୍ଥାନୀୟ ମହିଳାମାନେ ବିଶେଷ ଉପକୃତ ହୋଇ ପାରିଛନ୍ତି। ମହିଳାମାନେ ପୁରୁଷଙ୍କଠାରୁ ଅଧିକ କାର୍ଯ୍ୟକ୍ଷମ ହୋଇପାରୁଥିବା ସେ କହିଥିଲେ।

ସଭାରେ ମହିଳା ବ୍ୟାଙ୍କର ସଭାନେତ୍ରୀ ଶ୍ରୀମତୀ ଉଷା ଦେବୀ ଏମ୍. ଏଲ୍. ଏ. ଅଧ୍ୟକ୍ଷତା କରିଥିଲେ।

ସମବାୟ ବ୍ୟାଙ୍କର ସଭାପତି ଶ୍ରୀ ରାମନାଥ ଦାଶ ସ୍ୱାଗତ ଭାଷଣ ଦେଇ ଏହି ବ୍ୟାଙ୍କ ୬ ମାସ ଭିତରେ ୨୪ ଲକ୍ଷ ଟଙ୍କା ଜମା କରି ପାରିଛି ବୋଲି କହିଥିଲେ।

ସଭାରେ ଖଲିକୋଟ ବିଧାୟିକା ଶ୍ରୀମତୀ ସୁହାସିନୀ ଦେବୀ ଭାଷଣ ଦେଇଥିଲେ। ପ୍ରତି ପଞ୍ଚାୟତରେ ମହିଳା ସମବାୟ ସମିତି ଗଠନ କରିବା ଉପରେ ସେ ଗୁରୁତ୍ୱ ଦେଇଥିଲେ।

ବ୍ୟାଙ୍କର ରିପୋର୍ଟ ଶ୍ରୀମତୀ ଇତିଶ୍ରୀ ପଟ୍ଟନାୟକ ପାଠ କରିଥିଲେ। ଶ୍ରୀମତୀ ଜୟଲକ୍ଷ୍ମୀ ଧନ୍ୟବାଦ ଅର୍ପଣ କରିଥିଲେ।

## ରାଜ୍ୟର ପ୍ରତ୍ୟେକ ଗ୍ରାମାଞ୍ଚଳକୁ ପାନୀୟ ଜଳ ଯୋଗାଇଦେବା ସରକାରଙ୍କ ଲକ୍ଷ୍ୟ

ରାଜ୍ୟର ପ୍ରତ୍ୟେକ ଗ୍ରାମାଞ୍ଚଳକୁ ପାନୀୟ ଜଳ ଯୋଗାଇ ଦେବା ବିଜୁ ପଟ୍ଟନାୟକ ସରକାରଙ୍କ ଲକ୍ଷ୍ୟ ବୋଲି ରାଜ୍ୟ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ରାମକୃଷ୍ଣ ପଟ୍ଟନାୟକ ଦୋରଡ଼ଠାରେ ଭୋଗରା ପ୍ରୋଜେକ୍ଟର ଶୁଭ ଉଦ୍‌ଘାଟନ ଦିବସରେ ପ୍ରକାଶ କରିଛନ୍ତି। ଶ୍ରୀ ପଟ୍ଟନାୟକ କହିଲେ ଯେ ଆମ ସରକାର ଗତ ବର୍ଷ ୨୩୦ ଗୋଟି ଗ୍ରାମକୁ ପାନୀୟ ଜଳ ପାଇପ ଯୋଗେ ଯୋଗାଇ ଦେଇଛି ଏବଂ ଚଳିତ ବର୍ଷ ୫୦୦ଟି ଗ୍ରାମକୁ ପାନୀୟ ଜଳ ଯୋଗାଇ ଦେବା ପାଇଁ ପ୍ରତିଶ୍ରୁତିବଦ୍ଧ। ଶ୍ରୀ ପଟ୍ଟନାୟକ ଅର୍ଥମନ୍ତ୍ରୀ ଥିବାବେଳେ ଗ୍ରାମାଞ୍ଚଳମାନଙ୍କରେ ୫୬ ଭାଗ ଅର୍ଥ ଖର୍ଚ୍ଚ କରିବା ପାଇଁ ଘୋଷଣା କରିଥିଲେ। ଦୀର୍ଘ ୪୦ ବର୍ଷ ଧରି ଯେଉଁ କଂଗ୍ରେସ ସରକାର ରାଜ୍ୟରେ ଓ କେନ୍ଦ୍ରରେ ଶାସନ କରୁଥିଲେ ସେମାନେ ଗ୍ରାମାଞ୍ଚଳମାନଙ୍କରେ ୨୬ ଶତାଂଶ ଅର୍ଥ ଖର୍ଚ୍ଚ କରୁଥିଲେ। ଆମ ସରକାର ଯେତେବେଳେ କ୍ଷମତାକୁ ଆସିଲା ସେତେବେଳେ ବିଜୁ ପଟ୍ଟନାୟକ ସରକାର ପ୍ରଥମ ବଜେଟ ଅଧିବେଶନରେ ଲୋକମାନଙ୍କୁ ଜଳସେଚନର ବିଶେଷ ସୁବିଧା ସୁଯୋଗ ଦିଆଯିବ ଏବଂ ଏହାର ପ୍ରଥମ ନିଦର୍ଶନ ହେଉଛି ଏହି ଭୋଗରା ପ୍ରୋଜେକ୍ଟ।

ଭୋଗରା ପ୍ରୋଜେକ୍ଟ ଖୁବ୍ ଶୀଘ୍ର ଆରମ୍ଭ ହେବ। ସେହି ଭୋଗରା ପ୍ରୋଜେକ୍ଟ ଆଜି ଆରମ୍ଭ ହୋଇଛି ଏବଂ ଆମେ ଯାହା କହୁ ତାହା ଅକ୍ଷରେ ଅକ୍ଷରେ ପାଳନ କରୁ। ଢେଙ୍କାନାଳର ବିଧାୟକ ତଥାଗତ ଶତପଥୀ ଏହି ସଭାରେ ଯୋଗ ଦେଇ କହିଲେ, ଏହି ଭୋଗରା ପ୍ରୋଜେକ୍ଟଟି ହେବା ଦ୍ୱାରା ଆଠଗଡ଼ ଅଞ୍ଚଳର ଦୋରଡ଼, ଚୂନପଦା, ଈଶ୍ୱରା ଏବଂ ଗୋପୀନାଥପୁର ଗ୍ରାମମାନଙ୍କର ଆଠଶହ ଏକର ଏବଂ ଢେଙ୍କାନାଳର ଦେଓପଡ଼ା ଗ୍ରାମର ଦୁଇଶହ ଏକର ଏହି ପରି ଏକ ହଜାର ଏକର ଚାଷ ଜମି ଜଳସେଚିତ ହୋଇପାରିବ। ପାଲହଡ଼ାର ବିଧାୟକ ଡାକ୍ତର ନୃସିଂହ ସାହୁ କହିଲେ ଆପଣମାନେ ଏହି ଅଞ୍ଚଳରେ ଯେଉଁ ବିଧାୟକଙ୍କୁ ପାଇଛନ୍ତି ସେ ଉପଯୁକ୍ତ ବିଧାୟକ ଏବଂ ଯୁବ ନେତା ହୋଇଥିବାରୁ ଜନସାଧାରଣଙ୍କ ସେବା କରି ଆପଣମାନଙ୍କ ପ୍ରିୟପାତ୍ର ହୋଇ ପାରିଛନ୍ତି। ସଭାରେ ସଭାପତିତ୍ୱ କରିଥିଲେ ସ୍ଥାନୀୟ ବିଧାୟକ ଶ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ। ଅନ୍ୟମାନଙ୍କ ମଧ୍ୟରେ କୃଷୀମାନଙ୍କ ମଧ୍ୟରୁ ସୁର ଜେନା, ଉଦ୍ଧବ ଲେଙ୍କା ଏବଂ ଯୁବ ଜନତା ତରଫରୁ ବିଦ୍ୟାଧର ରାଉତ, ବ୍ରହ୍ମାନନ୍ଦ ଲେଙ୍କା ଭାଷଣ ଦେଇଥିଲେ। ସଭାରେ ଧନ୍ୟବାଦ ଦେଇଥିଲେ ପ୍ରଭାସ ବଡ଼ଜେନା।

## ବିରଜା କ୍ଷେତ୍ରକୁ ତୁଳସୀ କ୍ଷେତ୍ର ସହ ସଂଯୋଗ କରାଯିବ

ଓଡ଼ିଶାର ପୁରାତନ ରାଜଧାନୀ ଯାଜପୁର ବିରଜା କ୍ଷେତ୍ରକୁ କେନ୍ଦ୍ରାପଡ଼ା ତୁଳସୀକ୍ଷେତ୍ର ସହିତ ସଂଯୋଗ କରାଯିବା ପାଇଁ ନଦୀନାଳ ପୂର୍ଣ୍ଣ କେନ୍ଦ୍ରାପଡ଼ା ସବଡ଼ିଭିଜନର ବିଭିନ୍ନ ସ୍ଥାନରେ ସେତୁ ପ୍ରତିଷ୍ଠା କରାଯିବ । ଏଥିନିମିତ୍ତ ୩୨ କୋଟି ଟଙ୍କାର ଏକ ମାଷ୍ଟରପ୍ଲାନ କରାଯାଇ ଏହାର ଅନୁମୋଦନ ପାଇଁ କେନ୍ଦ୍ର ସରକାରଙ୍କ ନିକଟକୁ ପଠାଯାଇଛି ବୋଲି ପୂର୍ତ୍ତବିଭାଗ ମନ୍ତ୍ରୀ ଶ୍ରୀ ନଳିନୀ ମହାନ୍ତି ପ୍ରକାଶ କରିଛନ୍ତି । ଗତ ୨୪ ତାରିଖ ଦିନ କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳିର ପୂର୍ବତନ ପାର୍ଲିଆମେଣ୍ଟ ସଦସ୍ୟ ତଥା ଆଳି କନିକାର ଜନପ୍ରିୟ ନେତା ସ୍ୱର୍ଗତ ଶରତ କୁମାର ଦେବଙ୍କ ୪ର୍ଥ ଶ୍ରାଦ୍ଧବାର୍ଷିକ ଉତ୍ସବ ଅବସରରେ ଗୋବିନ୍ଦପୁରଠାରେ ଖରସ୍ରୋତା ସେତୁର ଭୂମି ପୂଜା ଉତ୍ସବରେ ଶ୍ରୀ ମହାନ୍ତି ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଏହି ସୂଚନା ଦେଇଥିଲେ ।

ଏହି ଉପଲକ୍ଷେ ଆୟୋଜିତ ସାଧାରଣ ସଭାରେ ଗୋବିନ୍ଦପୁର ଗୋଦାବରୀଶ ଉଚ୍ଚ ବିଦ୍ୟାଳୟର ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ଶ୍ରୀ ବୈକୁଣ୍ଠନାଥ ମଲ୍ଲିକ ପୌରୋହିତ୍ୟ କରିଥିଲେ । ମୁଖ୍ୟ ଅତିଥି କହିଲେ ଯେ, ଧୋଇଥା ଅଞ୍ଚଳର ଉନ୍ନତି ସ୍ୱର୍ଗତ ଶରତ ଦେବଙ୍କର ସ୍ୱପ୍ନ ଥିଲା । ଗୋବିନ୍ଦପୁର ଫେରିଘାଟ ଓସ୍ୱେଦର ପୋଲ ସ୍ୱର୍ଗତ ଦେବ ଆରମ୍ଭ କରିଥିଲେ । ଏହି ପୋଲକୁ ଏକ ସ୍ଥାୟୀ ପକ୍କା ପୋଲରେ ପରିଣତ କରିବା ପାଇଁ ସେ ଚିନ୍ତା କରିଥିଲେ । ତାଙ୍କର କଳ୍ପନା ଆଜି ସାକାର ହେବାକୁ ଯାଉଛି । ଏହି ଖରସ୍ରୋତା ପୋଲ ନିର୍ମାଣରେ ୨ କୋଟି ୪୪ ଲକ୍ଷ ୭୩ ହଜାର ୯ ଶହ ଟଙ୍କା ଖର୍ଚ୍ଚ ହେବ । ପ୍ରାଥମିକ କାର୍ଯ୍ୟ ପାଇଁ ୧୫ ଲକ୍ଷ ଟଙ୍କା ମଞ୍ଜୁର ହୋଇଛି । ତୁରନ୍ତ ଏହାର କାର୍ଯ୍ୟ ଆରମ୍ଭ ହେବ । ଖରସ୍ରୋତା ସେତୁକୁ ଶରତଦେବ ସେତୁ ନାମରେ ନାମିତ କରାଯିବ ବୋଲି ମନ୍ତ୍ରୀ ପ୍ରକାଶ କରିଥିଲେ ।

ଆଳି ଧୋଇଥା ଅଞ୍ଚଳ ବନ୍ୟା ସମୟରେ ଯୋଗାଯୋଗ କିପରି ବିଚ୍ଛିନ୍ନ ହୋଇ ଏକ ଦ୍ୱୀପାଞ୍ଚଳରେ ପରିଣତ ହୁଏ, ସେ ସମ୍ପର୍କରେ ଶ୍ରମିକ ନେତା ଶ୍ରୀ ବାସୁଦେବ ସାମଲ ବର୍ଣ୍ଣନା କରିଥିଲେ ।

ପରେ ମନ୍ତ୍ରୀ ଶ୍ରୀ ମହାନ୍ତି ହିଞ୍ଜଳ ଉତ୍କଳମଣି ଗୋପବନ୍ଧୁ ଉଚ୍ଚ ବାଳିକା ବିଦ୍ୟାଳୟଠାରେ ପ୍ରତିଷ୍ଠିତ ସ୍ୱର୍ଗତ ଶରତ ଦେବଙ୍କ ଆବକ୍ଷ ପ୍ରତିମୂର୍ତ୍ତି ଉନ୍ମୋଚନ କରି ଆୟୋଜିତ ସଭାରେ ଭାଷଣ ଦେଇଥିଲେ ।

ସମ୍ମାନନୀୟ ଅତିଥି ଭାବେ ଆଳି ନିର୍ବାଚନ ମଣ୍ଡଳିର ବିଧାୟିକା ସୁଶ୍ରୀ ଦେବୀ କହିଲେ ଯେ, ସ୍ୱର୍ଗତ ଶରତ ଦେବଙ୍କ ଅପୂର୍ଣ୍ଣାଙ୍ଗ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରାଯାଇ ପାରିଲେ ତାହା ହେବ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି । ଭାରୀଗଦା ପୋଲ, କାଣୀନଦୀ ପୋଲ ନିର୍ମାଣ କରାଯାଇ ଆଳି-କନିକାକୁ ସଂଯୋଗ କରିବା ଥିଲା ସ୍ୱର୍ଗତ ଶରତ ଦେବଙ୍କ ସ୍ୱପ୍ନ । ସେହି ସ୍ୱପ୍ନ ଆଜି ବାସ୍ତବରେ ପରିଣତ ହେବାକୁ ଯାଉଛି ।

ଶରତଦେବ ସ୍ମୃତି କମିଟିର ଶ୍ରୀ ରସାନନ୍ଦ ଜେନା ଆଳି ଅଞ୍ଚଳରେ ସମସ୍ୟା ଓ ଶରତ ଦେବଙ୍କର ଆଳି କନିକା ଅଞ୍ଚଳର ଲୋକଙ୍କ ପ୍ରତି ଶ୍ରଦ୍ଧା ବିଶ୍ୱାସ ସ୍ମରଣ କରି ଶରତ ଦେବଙ୍କ ସମାଜସେବା ଓ କର୍ମନିଷ୍ଠା ସମ୍ପର୍କରେ ଆଲୋକପାତ କରିଥିଲେ ।

ଧର୍ମଶାଳା ନିର୍ବାଚନ ମଣ୍ଡଳିର ବିଧାୟକ ଶ୍ରୀ ସୁଦ୍ଧଦେବ ଟିକାୟତ ରାଜ୍ୟ ଯୁବଜନତାର ସଭାପତି ଶ୍ରୀ ପ୍ରହ୍ଲାଦ, ବରୀ ପଞ୍ଚାୟତ ସମିତିର ପୂର୍ବତନ ଚେୟାରମ୍ୟାନ ଶ୍ରୀ ନୀଳକଣ୍ଠ ସାମଲ, ଯୁବନେତା କିଶୋର ସାମଲ, ଶ୍ରମିକ ନେତା ଶ୍ରୀ ବାସୁଦେବ ସାମଲ ପ୍ରମୁଖ ସ୍ୱର୍ଗତ ଶରତ ଦେବଙ୍କ ଜୀବନୀ ଆଲୋଚନା କରିଥିଲେ । ଗୋବିନ୍ଦପୁର ଗ୍ରାମ ପଞ୍ଚାୟତର ପୂର୍ବତନ ସରପଞ୍ଚ ଶ୍ରୀ ତ୍ରିଲୋଚନ ସାମଲ ପୌରୋହିତ୍ୟ କରିଥିଲେ । ଅଧ୍ୟାପକ ଶ୍ରୀ ଗଦାଧର ପଡ଼ିଆରୀ ମାନପତ୍ର ପାଠ କରିଥିଲେ ।

ଭୂମି ପୂଜା ଉତ୍ସବରେ ପୂର୍ତ୍ତ ବିଭାଗର ଚିଫ ଇଞ୍ଜିନିୟର, ସୁପରିଟେଣ୍ଡିଂ ଇଂଜିନିୟର ଶ୍ରୀ ଏସ୍. ଏନ୍. ଅଲ୍ଲୀ, ଏକଜିକ୍ୟୁଟିଭ ଇଂଜିନିୟର ଶ୍ରୀ ଦାମୋଦର ବାରିକ, ସହକାରୀ ଯନ୍ତ୍ରୀ ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି ଓ କନିଷ୍ଠ ଯନ୍ତ୍ରୀ ଶ୍ରୀ ଅଭିରାମ ପରିଡ଼ା ପ୍ରମୁଖ ବହୁ ଉଚ୍ଚପଦସ୍ଥ ସରକାରୀ ଅଫିସର ଯୋଗ ଦେଇଥିଲେ ।

## ବହୁତଳ ବିଶିଷ୍ଟ "ବନ ଭବନ"ର ଭିତ୍ତି ପ୍ରସ୍ତର ସ୍ଥାପିତ

ଭୁବନେଶ୍ୱର ଚନ୍ଦ୍ରଶେଖରପୁରଠାରେ ଗତ ମାର୍ଚ୍ଚ ୩୧ ତାରିଖ ଦିନ ଜଙ୍ଗଲ ବିଭାଗ ମନ୍ତ୍ରୀ ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଆନୁଷ୍ଠାନିକ ଭାବେ ବନ ବିଭାଗର ନିଜସ୍ୱ ନୂତନ ଗୃହ "ବନ ଭବନ"ର ଭିତ୍ତି ପ୍ରସ୍ତର ସ୍ଥାପନ କରିଛନ୍ତି । ଏହି ଭବନର ନିର୍ମାଣ ବାବଦରେ ମୋଟ ୨ କୋଟି ୬୧ ଲକ୍ଷ ୨୨ ହଜାର ଟଙ୍କା ବ୍ୟୟ ଅଟକଳ କରାଯାଇଛି ଏବଂ ଏହାର ନିର୍ମାଣ ଦାୟିତ୍ୱ "ଇଡ୍କୋ"କୁ ଦିଆଯାଇଛି । ମୋଟ ୪୪,୪୬୦ ବର୍ଗଫୁଟ ପରିମିତ ଜମି ଉପରେ ନିର୍ମିତ ହେବାକୁ ଥିବା ଆଠ ମହଲା ବିଶିଷ୍ଟ ଏହି ଭବନରେ ମୋଟ ୭୯,୨୩୭ ବର୍ଗଫୁଟ ମେଜିଆ ରହିବ। ଏହି ଭବନରେ ବିଭାଗର ଅଭିଲେଖାଗାର, ସଭାଗୃହ ଓ କର୍ମଚାରୀମାନଙ୍କ ଲାଗି କ୍ୟାଣ୍ଟିନ ସୁବିଧା ମଧ୍ୟ ରହିବ । ଭବନ ପରିସର ମଧ୍ୟରେ ବିଭିନ୍ନ ଯାନ ରଖିବା ଲାଗି ମୋଟ ୩,୫୦୯ ବର୍ଗଫୁଟ ସ୍ଥାନ ରଖାଯିବ । ଏହା ବ୍ୟତୀତ ୩୩,୬୫୯ ବର୍ଗଫୁଟ ଖୋଲାସ୍ଥାନ ରହିବ ।

ଏଥିପାଇଁ ଆୟୋଜିତ ଉତ୍ସବର ମୁଖ୍ୟଅତିଥି ଜଙ୍ଗଲମନ୍ତ୍ରୀ ଶ୍ରୀ ବକ୍ସିପାତ୍ର କହିଲେ ଯେ ଓଡ଼ିଶାର ଅର୍ଥନୈତିକ ସୁଦୃଢ଼ତା ଓ ରାଜସ୍ୱ ବୃଦ୍ଧି ପାଇଁ ଜଙ୍ଗଲର ଆବଶ୍ୟକତା ଅପରିହାର୍ଯ୍ୟ । ଜଙ୍ଗଲର ଅଭିବୃଦ୍ଧି ଓ ଜଙ୍ଗଲ ସମ୍ପଦର ସଦ୍ ବିନିଯୋଗ ଦ୍ୱାରା ହିଁ ରାଜ୍ୟର ଅର୍ଥନୈତିକ ଦୃଢ଼ତା ଓ ରାଜସ୍ୱ ଅଭିବୃଦ୍ଧି ହୋଇପାରିବ ବୋଲି ସେ ମତବ୍ୟକ୍ତ କରିଥିଲେ । ବିଶେଷକରି ଗ୍ରାମାଞ୍ଚଳ ଲୋକମାନଙ୍କର ଅର୍ଥନୈତିକ ମାନଦଣ୍ଡ ଦୃଢ଼ କରିବା ଦିଗରେ ଜଙ୍ଗଲ ସମ୍ପଦ ଏକାନ୍ତ ଆବଶ୍ୟକ ବୋଲି ସେ କହିଥିଲେ ।

ଜଙ୍ଗଲ ଓ ପରିବେଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମଙ୍ଗଳା କିଶାନ୍ ଏହି ଉତ୍ସବରେ ପୌରୋହିତ୍ୟ କରି ତାଙ୍କ ଅଭିଭାଷଣରେ କହିଲେ ଯେ

ସେହି ଅଞ୍ଚଳରେ ରାଜସ୍ୱ ବୃଦ୍ଧି ଦିଗରେ ଏହି ବିଭାଗର ଉଲ୍ଲେଖନୀୟ ସଂସ୍ଥାର ଉଲ୍ଲେଖନୀୟ ଅବଦାନ ରହିଛି । ଏହି ଆଦିବାସୀ ଅଞ୍ଚଳରୁ ଜଙ୍ଗଲର ସୁରକ୍ଷା ଏବଂ ନୂତନ ଜଙ୍ଗଲ ସୃଷ୍ଟି କରିବା ପାଇଁ ଜଙ୍ଗଲର ସୁରକ୍ଷା ଏବଂ ନୂତନ ଜଙ୍ଗଲ ସୃଷ୍ଟି ହେଉଥିଲେ ହେଁ ବିଭିନ୍ନ ଉନ୍ନୟନ କାର୍ଯ୍ୟ ଓ ପ୍ରକଳ୍ପ ନିର୍ମାଣ କରାଯାଉଥିଲେ ହେଁ ବିଭିନ୍ନ ଉନ୍ନୟନ କାର୍ଯ୍ୟ ଓ ପ୍ରକଳ୍ପ ନିର୍ମାଣ ନାମରେ ବନ୍ୟ ସମ୍ପଦକୁ ନଷ୍ଟ କରିଦିଆଯାଉଛି । ଏଣୁ ଏପରି କାର୍ଯ୍ୟ ହାତକୁ ନେବାବେଳେ ଯେପରି ଖୁବ୍ କମ୍ ଜଙ୍ଗଲ ସମ୍ପଦ ନଷ୍ଟ ହୁଏ, ସେଥିପ୍ରତି ସତର୍କ ଦୃଷ୍ଟି ରଖିବାକୁ ସେ ପରାମର୍ଶ ଦେଇଥିଲେ ।

ବିଭାଗୀୟ ଶାସନ ସଚିବ ଶ୍ରୀ ରବୀନ୍ଦ୍ର ମୋହନ ସେନାପତି ପ୍ରାରମ୍ଭିକ ସୂଚନା ଦେଇ କହିଲେ ଯେ ଭୁବନେଶ୍ୱରଠାରେ ଜଙ୍ଗଲ ବିଭାଗର ନିଜସ୍ୱ ଭବନ ନିର୍ମାଣ ଲାଗି ଭିତ୍ତି ପ୍ରସ୍ତର ସ୍ଥାପିତ ହେବା ଦ୍ୱାରା ଏହି ବିଭାଗର ଅର୍ଦ୍ଧ–ଶତାବ୍ଦୀର ସ୍ୱପ୍ନ ସଫଳ ହେବାକୁ ଯାଉଛି । ସ୍ୱିଡେନ ସରକାରଙ୍କ ସହାୟତାରେ ରାଜ୍ୟରେ ୨୦୦ କୋଟି ଟଙ୍କାର ସୁଚିନ୍ତିତ ପ୍ରକଳ୍ପ ପ୍ରସ୍ତୁତ କରାଯାଉଛି । ଏଥିରେ ଜଳବାୟୁ ନିରାକରଣ, ନୂଆ ଜଙ୍ଗଲ ସୃଷ୍ଟି, ଟାଙ୍ଗରା ପାହାଡ଼ରେ ବୃକ୍ଷ ରୋପଣ ଏବଂ ଔଷଧ ଗୁଣ ସମ୍ପନ୍ନ ବୃକ୍ଷଲତା ରୋପଣ, ସୁରକ୍ଷା ଓ ଆମଦାନୀ ପାଇଁ ବିଧିବଦ୍ଧ ଯୋଜନାମାନ ପ୍ରସ୍ତୁତ କରାଯାଇଥିବା ସେ ସୂଚନା ଦେଇଥିଲେ ।

'ଓଡ଼କୋ'ର ଅଧ୍ୟକ୍ଷ ଶ୍ରୀ ସତ୍ୟପ୍ରକାଶ ନନ୍ଦ କହିଲେ ଯେ ଆସନ୍ତା ୧୫ ଦିନ ମଧ୍ୟରେ ଭବନର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଯିବ ଏବଂ ପର୍ଥର ଅଭାବ ନ'ଘଟିଲେ, ଆସନ୍ତା ୧୮ ମାସ ମଧ୍ୟରେ କାର୍ଯ୍ୟ ସମ୍ପନ୍ନ କରାଯିବ । ଏହି କାର୍ଯ୍ୟକୁ ଦୁଇଟି ପର୍ଯ୍ୟାୟରେ ଶେଷ କରାଯିବ ବୋଲି ସେ ପ୍ରକାଶ କରିଥିଲେ । ଭବନରେ ଶୀତ ତାପ ନିୟନ୍ତ୍ରଣ ଓ ଅଗ୍ନି ନିରୋଧକ ବ୍ୟବସ୍ଥା ଆଦି ରହିବ ବୋଲି ସେ ସୂଚନା ଦେଇଥିଲେ ।

## ଶହୀଦ ରଘୁ–ଦିବାକର ସ୍ମୃତି ସଭା

ରଣପୁର ପ୍ରଜା ଆନ୍ଦୋଳନର ବିପ୍ଳବୀ ନେତା ଶହୀଦ ଦିବାକର ପରିଡ଼ା ଓ ରଘୁନାଥ ମହାନ୍ତିଙ୍କର ୬୨ ତମ ଫାଶୀ ଦିବସ ଗଡ଼ବାଣୀକିଲୋ, ତାରିଆ ଓ ରଣପୁରଗଡଠାରେ ପାଳିତ ହୋଇଯାଇଛି । ଗଡବାଣୀକିଲୋ ଓ ତାରିଆଠାରେ ଛାତ୍ର, ଶିକ୍ଷକ, ଜନସାଧାରଣ ଓ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ଶୋଭାଯାତ୍ରା ଗ୍ରାମ ପରିକ୍ରମା କରିଥିଲା । ବିଦ୍ରୋହୀ ଦିବାକର ପରିଡ଼ାଙ୍କ ଘରୁ ଜ୍ୟୋତି ଆସି ଶହୀଦ ରଘୁ–ଦିବାକର ସ୍ମୃତି ମଣ୍ଡପଠାରେ ସ୍ଥାପିତ ହୋଇଥିଲା । ସେଠାରେ ପତାକା ଉତ୍ତୋଳନ କରି ଗଡବାଣୀକିଲୋ ମହାବିଦ୍ୟାଳୟର ପ୍ରତିଷ୍ଠାତା କାଳିଚରଣ ଜୟସିଂହ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ରଣପୁରଗଡଠାରେ ଅନୁଷ୍ଠିତ ରାଜ୍ୟ ଶହୀଦ ରଘୁ–ଦିବାକର ସ୍ମୃତି ପରିଷଦର ସମ୍ପାଦକ ଆଡଭୋକେଟ. ଗିରିଜାକାନ୍ତ ମହାପାତ୍ର ସଭାପତିତ୍ୱ କରିଥିଲେ । ମୁଖ୍ୟଅତିଥି ରୂପେ ଯୋଗଦେଇ ରଣପୁର ବିଧାୟକ ଶରତ ଚନ୍ଦ୍ର ମିଶ୍ର ଶହୀଦ ରଘୁ ଦିବାକରଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ନିସ୍ୱାର୍ଥପର ଜନସେବା କରିବାକୁ ଆହ୍ୱାନ ଦେଇଥିଲେ । ମୁଖ୍ୟବକ୍ତା ରୂପେ ରଣପୁର ବ୍ଲକର ପୂର୍ବତନ ଚେୟାରମାନ ପୂର୍ଣ୍ଣଚନ୍ଦ୍ର ସାମନ୍ତରାୟ ଯୋଗଦେଇ ଶହୀଦ ରଘୁ–ଦିବାକରଙ୍କ ସଂଗ୍ରାମ ଭୂମିକା ଅବତାରଣା କରିଥିଲେ । ସତ୍ୟବାଦୀ ବଳିଆର ସିଂ, ଚକ୍ରଧର ପରିଡ଼ା, ରାଜନ ସ୍ୱାଇଁ, ସାଧୁଚରଣ ପରିଡା ଓ ଅଧ୍ୟାପକ ଜ୍ୟୋତିରଞ୍ଜନ ଦାସ ପ୍ରମୁଖ ଶହୀଦ ରଘୁ–ଦିବାକରଙ୍କ ସ୍ମୃତିଚାରଣ କରିଥିଲେ । ଆଜାଦ୍ ହିନ୍ଦ ଫୌଜ ସଙ୍ଘର ସଭାପତି ଚକ୍ରଧର ପରିଡା,ବିଦ୍ରୋହୀ ଦିବାକରଙ୍କ ଭ୍ରାତା ରତ୍ନାକର ପରିଡା, ସ୍ୱାଧୀନତା ସଂଗ୍ରାମୀ ଭୋବନି ପ୍ରଷ୍ଟି ଓ ଜୟକୃଷ୍ଣ ଜେନାଙ୍କୁ ମୁଖ୍ୟଅତିଥି ସଭା ମଞ୍ଚରେ ପୁଷ୍ପମାଲ୍ୟ ଦେଇ ସମ୍ମାନିତ କରିଥିଲେ ।

ତାରିଆଠାରେ ଅନୁଷ୍ଠିତ ସଭାରେ ରଣପୁର ବି.ଡି.ଓ. ବିବେକାନନ୍ଦ ପଟ୍ଟନାୟକ ସଭାପତିତ୍ୱ କରିଥିଲେ । ବିଧାୟକ ଶରତ ଚନ୍ଦ୍ର ମିଶ୍ର ଗଡ଼ବାଣୀକିଲୋ ମହାବିଦ୍ୟାଳୟର ପ୍ରତିଷ୍ଠାତା କାଳିଚରଣ ଜୟସିଂହ, ଐତିହାସିକ ସତ୍ୟବାଦୀ ବଳିଆର ସିଂହ ଯଥାକ୍ରମେ ମୁଖ୍ୟଅତିଥି ମୁଖ୍ୟବକ୍ତା ଓ ସମ୍ମାନିତ ଅତିଥି ରୂପେ ଯୋଗ ଦେଇଥିଲେ । ରାଜନ ସ୍ୱାଇଁ ବିବରଣୀ ପାଠ କରିଥିଲେ । ଚଳିତ ବର୍ଷ ପ୍ରଥମଥର ପାଇଁ ସରକାରୀ ସ୍ତରରେ ଶହୀଦ ରଘୁ–ଦିବାକର ସ୍ମୃତିସଭା ପାଳିତ ହେଉଥିବାରୁ ଖୋର୍ଦ୍ଧା ଲୋକସମ୍ପର୍କ ଅଧିକାରୀ ଶ୍ୟାମ ଚରଣ ପାଠୀ ଉଭୟ ଗଡ଼ବାଣୀକିଲୋ ଓ ତାରିଆ ସଭା ପରିଚାଳନା ଦାୟିତ୍ୱ ନେଇଥିଲେ । ସୂଚନା ଓ ଲୋକସମ୍ପର୍କ ବିଭାଗ ପକ୍ଷରୁ ଚଳଚ୍ଚିତ୍ର ଓ ଦାସକାଠିଆ ପ୍ରଦର୍ଶନ କରାଯାଇଥିଲା ।

## ୮ମ ଯୋଜନା ଶେଷ ସୁଦ୍ଧା ରାଜ୍ୟରେ ବିଦ୍ୟୁତ୍ ଉତ୍ପାଦନ ୨୦୯୬ ମେଗାୱାଟ ହେବ

ସପ୍ତମ ଯୋଜନା ଶେଷ ସୁଦ୍ଧା ରାଜ୍ୟରେ ବିଦ୍ୟୁତ ନିଅଣ୍ଟ ହାର ଶତକଡ଼ା ୪୩·୩ ଭାଗ ଥିବା ବେଳେ ଅଷ୍ଟମ ଯୋଜନା ଶେଷ ବେଳକୁ ଏହା ଶତକଡ଼ା ୨୬·୭ ଭାଗକୁ ହ୍ରାସ ପାଇବ ବୋଲି ଶକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାଳନ୍ଦୀ ବେହେରା ଆଶା ପ୍ରକାଶ କରିଛନ୍ତି ।

ନିକଟରେ ପ୍ରଜାତନ୍ତ୍ର ପ୍ରଚ୍ଚାର ସମିତି ଆନୁକୂଲ୍ୟରେ ଆୟୋଜିତ 'ରାଜ୍ୟରେ ବିଦ୍ୟୁତ୍ ସଙ୍କଟ' ଶୀର୍ଷକ ଆଲୋଚନାଚକ୍ରରେ ଯୋଗଦେଇ ସେ କହିଲେ, ସପ୍ତମ ଯୋଜନା ଶେଷ ବେଳକୁ 'ପ୍ରକଳ୍ପମାନଙ୍କରୁ ମିଳୁଥିବା ଅଂଶକୁ ମିଶାଇ ରାଜ୍ୟର ସଂସ୍ଥାପିତ ବିଦ୍ୟୁତ୍ ଉତ୍ପାଦନ କ୍ଷମତା ୧୬୬୫ ମେଗାୱାଟ ଥିବାସ୍ଥଳେ ପ୍ରକୃତ ଉତ୍ପାଦନ ଥିଲା ୬୨୮ ମେଗାୱାଟ । କିନ୍ତୁ ଏହି ସମୟରେ ବିଦ୍ୟୁତ୍ ଚାହିଦା ଥିଲା ୧୨୭୮ ମେଗାୱାଟ ସେ ସମୟରେ ସର୍ବଭାରତୀୟ ନିଅଣ୍ଟ ଦ୍ୱାରା ଶତକଡ଼ା ୭·୯ ଭାଗ ଥିବା ବେଳେ ଓଡ଼ିଶାରେ ନିଅଣ୍ଟ ହାର ଥିଲା ୪୩·୩ ଭାଗ ।

ସେ କହିଲେ, ଏବକାର ସରକାର କ୍ଷମତାକୁ ଆସିବା ପରେ ହୀରାକୁଦ ସପ୍ତମ ୟୁନିଟ ଚାଲୁ ହୋଇ ଆଉ ୨୫ ମେଗାୱାଟ ବିଦ୍ୟୁତ୍ ମିଳିଲା । ଅଷ୍ଟମ ଯୋଜନାରେ କମ ସମୟରେ କାର୍ଯ୍ୟକ୍ଷମ ହୋଇପାରିବା ଭଳି ଯୋଜନାଗୁଡ଼ିକ ହାତକୁ ନିଆଯାଇଛି । ଏହି ଯୋଜନା କାଳରେ ସଂସ୍ଥାପିତ କ୍ଷମତାକୁ

୮୪୪ ମେଗାୱାଟକୁ ଓ ପ୍ରକୃତ ଉତ୍ପାଦନ ୯୯୮ ମେଗାୱାଟକୁ ବୃଦ୍ଧି କରାଯିବା ଲକ୍ଷ୍ୟ ରହିଛି । ଏହି ସମୟରେ କେନ୍ଦ୍ରୀୟ ପ୍ରକଳ୍ପଗୁଡ଼ିକରୁ ରାଜ୍ୟର ଅଂଶ ବାବଦକୁ ୪୭୩ ମେଗାୱାଟ ଦେବାପାଇଁ ରାଜ୍ୟ ସରକାର କେନ୍ଦ୍ର ଉପରେ ଚାପ ପ୍ରୟୋଗ କରିଛନ୍ତି । କେନ୍ଦ୍ରୀୟ ପ୍ରକଳ୍ପରୁ ପ୍ରକୃତ ବିଦ୍ୟୁତ୍ ଉତ୍ପାଦନ ୨୮୬ ମେଗାୱାଟ ହେବ । ଏଣୁ ପ୍ରାଥମିକ ହିସାବ ଅନୁସାରେ ଅଷ୍ଟମ ଯୋଜନା ଶେଷ ବେଳକୁ ରାଜ୍ୟରେ ବିଦ୍ୟୁତ୍ ଚାହିଦା ୨୭୨୦ ମେଗାୱାଟ ଓ ପ୍ରକୃତ ଉତ୍ପାଦନ ୨୦୯୬ ମେଗାୱାଟରେ ପହଞ୍ଚିବା ଫଳରେ ନିଅଣ୍ଟ ଧାର ଶତକଡ଼ା୨୨·୭ ଭାଗକୁ ହ୍ରାସ ପାଇବ ।

ସେ କହିଲେ, ୮୪୦ ମେଗାୱାଟ୍‌ର ଇବ ତାପଜ ପ୍ରକଳ୍ପ ସ୍ଥାପନ ଲାଗି ପୂର୍ବ ସରକାର ଉଦ୍ୟମ ଆରମ୍ଭ କରିଥିଲେ ମଧ୍ୟ ୧୯୯୦ ଯାଏଁ ଏହାର ଅଗ୍ରଗତି ହୋଇନଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ବ୍ୟକ୍ତିଗତ ଉଦ୍ୟମ ଫଳରେ ଏହି ପ୍ରକଳ୍ପକୁ ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରି ୬୫୦ କୋଟି ଟଙ୍କା ବ୍ୟୟରେ ପ୍ରଥମ ପର୍ଯ୍ୟାୟର ୨୧୦ ମେଗାୱାଟ ସଂସ୍ଥାପନ କ୍ଷମତା ବିଶିଷ୍ଟ ଦୁଇଟି ୟୁନିଟ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ଭିତ୍ତିଭୂମି ସଂପୂର୍ଣ୍ଣ କରିବା ପାଇଁ ନିଷ୍ପତ୍ତି ହୋଇଛି । ବାସଚ୍ୟୁତ ହେଉଥିବା ୩୧୮ଟି ପରିବାରଙ୍କୁ ଦ୍ୱିଗୁଣିତ ହାରରେ କ୍ଷତିପୂରଣ ଦେବା ସହ ୨୯୪ ପରିବାରଙ୍କର ଜଣେ ଲେଖାଏଁ ବ୍ୟକ୍ତିଙ୍କୁ ପ୍ରକଳ୍ପ ଅଧୀନରେ କର୍ମସଂସ୍ଥାନ ଯୋଗାଇ ଦିଆଯାଇଛି । ୬୦୦ ମେଗାୱାଟ କ୍ଷମତା ବିଶିଷ୍ଟ ଅପର ଇନ୍ଦ୍ରାବତୀ ଜଳବିଦ୍ୟୁତ୍ ପ୍ରକଳ୍ପ ୧୯୯୫ ଏପ୍ରିଲରେ ସରିବ । ରେଙ୍ଗାଲି ପ୍ରକଳ୍ପର ପଞ୍ଚମ ୟୁନିଟ ଆସନ୍ତା ଅଗଷ୍ଟରୁ ଶୁରୁ ହେବ । ୩୨୦ ମେଗାୱାଟ ସଂସ୍ଥାପନ କ୍ଷମତା ବିଶିଷ୍ଟ ଅପର କୋଲାବ ପ୍ରକଳ୍ପ କାମ ଗତ ମାର୍ଚ୍ଚରେ ସରିଛି । ୧୩·୬୪ କୋଟି ଟଙ୍କାରେ ୬ ମେଗାୱାଟର ପୋଟେରୁ ଜଳବିଦ୍ୟୁତ ପ୍ରକଳ୍ପ କାମ ୧୯୯୪-୯୫ ସରିବ ।

ଶ୍ରୀ ବେହେରା କହିଲେ, ଏହାବାଦ୍ କେତେକ କ୍ଷୁଦ୍ର ଓ ଅତିକ୍ଷୁଦ୍ର ଜଳବିଦ୍ୟୁତ୍ ପ୍ରକଳ୍ପ କାମ ହାତକୁ ନିଆଯାଇଛି । ପ୍ରାଥମିକ ପର୍ଯ୍ୟାୟରେ କଟକ ଜିଲ୍ଲାର କେନ୍ଦୁପାଟଣା, ବାଙ୍କଡବୋରିଆ, ବିରିବାଟି, ଗଞ୍ଜାମ ଜିଲ୍ଲାର ଦରଭଙ୍ଗୀ, କୋରାପୁଟର ବଡ଼ନଲା, ବଲାଙ୍ଗୀର ଜିଲ୍ଲାର ଅଙ୍ଗାରଭଙ୍ଗୀ, ପୁରୀ ଜିଲ୍ଲାର ବାଣପୁରଠାରେ ୬ଟି ପ୍ରକଳ୍ପର ନିର୍ମାଣ କାମ ହାତକୁ ନିଆଯାଇ ୧୯୯୩ ସୁଦ୍ଧା ଶେଷ କରାଯିବାର ଲକ୍ଷ୍ୟ ରହିଛି ।

ସେ କହିଲେ, କେତେକ ପ୍ରକଳ୍ପର ଆଧୁନିକୀକରଣ ଓ ସମ୍ପ୍ରସାରଣ କରାଯିବ । ତାଳଚେର ତାପଜ ବିଦ୍ୟୁତ୍ ପ୍ରକଳ୍ପର ସଂପ୍ରସାରଣ ଲାଗି ୮୫୦ କୋଟି ଟଙ୍କା ଅଟକଳ ହୋଇଛି । ୯୨-୯୩ରେ ଏହାର କାମ ଆରମ୍ଭ କରାଯାଇ ୧୯୯୭-୯୮ରେ ଶେଷ କରାଯିବ । ୯ ମେଗାୱାଟ ସଂସ୍ଥାପନ କ୍ଷମତା ବିଶିଷ୍ଟ ବରଗଡ଼ ଜଳବିଦ୍ୟୁତ୍ ପ୍ରକଳ୍ପ କାମ ୧୯୯୭ ସୁଦ୍ଧା ଶେଷ କରାଯିବ । ଏଥିରେ ୨୯·୬୭ କୋଟି ଟଙ୍କା ଖର୍ଚ୍ଚ ହେବ । ବାଲିମେଳା ଜଳବିଦ୍ୟୁତ୍ ପ୍ରକଳ୍ପରେ ୬୦ ମେଗାୱାଟ ସଂସ୍ଥାପନ କ୍ଷମତା ବିଶିଷ୍ଟ ଆଉ ଦୁଇଟି ୟୁନିଟ ସଂଯୋଗ କରାଯିବ । ଏଥିରେ ୯୭·୬୮ କୋଟି ଟଙ୍କା ଖର୍ଚ୍ଚ ହେବ ।

ଘରୋଇ ଉଦ୍ୟୋଗରେ ବିଦ୍ୟୁତ୍ ଉତ୍ପାଦନ ଲାଗି ସମ୍ଭାବନା ସମ୍ପର୍କରେ ସେ କହିଲେ, ଆମେରିକାର ସଦନ ଇଣ୍ଟରନ୍ୟାସନାଲ ୪୨୦ ମେଗାୱାଟ ଶକ୍ତି ବିଶିଷ୍ଟ ତାପଜ ବିଦ୍ୟୁତ୍ ପ୍ରକଳ୍ପ କରିବାକୁ ଯାଉଛନ୍ତି । କଳିଙ୍ଗ ପାୱାର କର୍ପୋରେସନ କଟକ ଜିଲ୍ଲାର ଡୁବୁରିଠାରେ ୫୦୦ ମେଗାୱାଟ କ୍ଷମତା ସମ୍ପନ୍ନ ତାପଜ ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ ଲାଗି ନିଷ୍ପତ୍ତି ନେଇଛନ୍ତି । ବାଙ୍ଗାଲୋରର ଏଲ୍. କେ: ପାୱାର କର୍ପୋରେସନ ନାମକ କମ୍ପାନୀ ଢେଙ୍କାନାଳ ଜିଲ୍ଲାର ଦୁର୍ଗାପୁରଠାରେ ୨୫୦ ମେଗାୱାଟ କ୍ଷମତା ବିଶିଷ୍ଟ ଏକ ତାପଜ ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି । ନିକଟରେ ଦିଲ୍ଲୀରେ ହୋଇଥିବା ଶକ୍ତିମନ୍ତ୍ରୀ ସମ୍ମିଳନୀରେ ଜଣାଯାଇଛି ଯେ, ଶତକଡ଼ା ୭୫ ଭାଗ ସୁଧରେ ଜର୍ମାନୀ ସଂସ୍ଥା ଓଡ଼ିଶାକୁ ୪୦ ବର୍ଷିଆ କିସ୍ତିରେ ଋଣ ଦେବାକୁ ରାଜି ଥିଲାବେଳେ ଦିଲ୍ଲୀର ପାୱାର ଫାଇନାନ୍ସ କର୍ପୋରେସନ ଏଥିପାଇଁ ସର୍ବୋଚ୍ଚ ୧୮·୭ ଭାଗ ସୁଧ ଦେବାକୁ କହିବାରୁ ବିଦେଶୀ ପୁଞ୍ଜି ଆଣିବାରେ ଅସୁବିଧା ହେଉଛି । ୫୦୦ ମେଗାୱାଟ ଶକ୍ତି ସମ୍ପନ୍ନ ୩ଟି ତାପଜ କେନ୍ଦ୍ର ଏସ: ଇ: ଇ: ସହାୟତାରେ ହେବାକୁ ଯାଉଛି । ପାହାଡ଼ ଓ ନାଳରୁ ବହି ଯାଉଥିବା ଉଦ୍ବୃତ୍ତ ଜଳରୁ ରୁଷର ଏକ ଘରୋଇ ସଂସ୍ଥା ଶକ୍ତି ଉତ୍ପାଦନ କରିବ ବୋଲି ରାଜ୍ୟ ସରକାରଙ୍କୁ ପ୍ରତିଶ୍ରୁତି ଦେଇଛି ।

## ଦାଦନ ଶ୍ରମିକଙ୍କ ସମସ୍ୟା ସମାଧାନ ପାଇଁ ବିହାର ଓ ଓଡ଼ିଶାର ଶ୍ରମମନ୍ତ୍ରୀଙ୍କ ମିଳିତ ବିବୃତି

ବିଭିନ୍ନ ରାଜ୍ୟରେ ଦାଦନ ଶ୍ରମିକ ଭାବେ କାର୍ଯ୍ୟ କରୁଥିବା ପ୍ରବାସୀ ଶ୍ରମିକଙ୍କ ସମସ୍ୟା ଦୂରୀକରଣ ଦିଗରେ ଦୃଢ଼ ପଦକ୍ଷେପ ନେବା ଲାଗି ସମ୍ପ୍ରତି ଓଡ଼ିଶା ଗସ୍ତରେ ଆସିଥିବା ବିହାରର ଶ୍ରମ ନିଯୋଜନ ଓ ତାଲିମ ବିଭାଗ ମନ୍ତ୍ରୀ ଶ୍ରୀ ବଶିଷ୍ଠ ନାରାୟଣ ସିଂହ ଏବଂ ଓଡ଼ିଶାର ଶ୍ରମ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ନିମ୍ନୋକ୍ତ ପ୍ରସ୍ତାବରେ ଏକମତ ହୋଇଛନ୍ତି ।

ସେମାନେ ଏକ ମିଳିତ ବିବୃତିରେ କହିଛନ୍ତି ଯେ ଦାଦନ ଶ୍ରମିକମାନଙ୍କର ସମସ୍ୟା ସମ୍ପର୍କରେ ଅନୁଧ୍ୟାନ ଲାଗି ରାଜ୍ୟସ୍ତରରେ 'ଆନ୍ତଃରାଜ୍ୟ ସମନ୍ୱୟ ପ୍ରକୋଷ୍ଠ' ଗଠନ କରିବା ସଙ୍ଗେ ସଙ୍ଗେ କେନ୍ଦ୍ର ଶ୍ରମ ମନ୍ତ୍ରଣାଳୟରେ ମଧ୍ୟ ଅନୁରୂପ ସେଲ୍ ଗଠନ ହେବା ଅବଶ୍ୟକ । ଅନ୍ୟ ରାଜ୍ୟକୁ ଯାଇଥିବା ଶ୍ରମିକମାନଙ୍କର ନିଯୁକ୍ତି କାର୍ଯ୍ୟ ପରିବେଶ ଏବଂ ଅନ୍ୟାନ୍ୟ ଅବସ୍ଥା ସମ୍ପର୍କରେ ସ୍ଥାନୀୟ ଅଫିସରମାନେ ସର୍ବେକ୍ଷଣ କରି ସଂପୃକ୍ତ ରାଜ୍ୟଗୁଡ଼ିକୁ ଜଣାଇଦେବା ଉଚିତ । ନିଜ ରାଜ୍ୟକୁ ଫେରିଆସିବା ପରେ ଦାଦନ ଶ୍ରମିକମାନଙ୍କଠାରୁ ଶ୍ରମ ଅଧିକାରୀମାନଙ୍କୁ ସାକ୍ଷ୍ୟ ଗ୍ରହଣ ନିମନ୍ତେ ଅଧିକାର ଦେବା ଏବଂ ସେମାନଙ୍କର ଅସୁବିଧାଗୁଡ଼ିକ ସମ୍ପର୍କରେ ସମ୍ପୃକ୍ତ ରାଜ୍ୟଗୁଡ଼ିକର ଶ୍ରମ ଅଧିକାରୀଙ୍କୁ ଜଣାଇ ଦେବା ସଙ୍ଗେ ସଙ୍ଗେ ଅସାଧୁ କଣ୍ଟ୍ରାକ୍ଟର ଓ ନିଯୁକ୍ତିଦାତାମାନଙ୍କ ବିରୁଦ୍ଧରେ କଠୋର ଦଣ୍ଡବିଧାନର ବ୍ୟବସ୍ଥା ରଖିବାକୁ ମନ୍ତ୍ରୀଦ୍ୱୟ ପ୍ରସ୍ତାବ ଦେଇଛନ୍ତି । ବିହାର ଓ ଓଡ଼ିଶାରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କ କାର୍ଯ୍ୟ ତଥା ସମସ୍ୟା ସମ୍ପର୍କରେ ତଦାରଖ କରିବା

ଲାଗି ଉଭୟ ରାଜ୍ୟର ଶ୍ରମ ଅଧିକାରୀମାନଙ୍କୁ ଅଧିକାର ଦେଇଥିବାରୁ ମନ୍ତ୍ରୀଦ୍ୱୟ ସମ୍ମତି ପ୍ରକାଶ କରିଛନ୍ତି । ଶିଘ୍ର ସମ୍ପର୍କ ରଖିବାସହ ପ୍ରବାସୀ ଶ୍ରମିକମାନଙ୍କ ସମ୍ପର୍କରେ ଆଲୋଚନା କରିବା ଲାଗି ଆସନ୍ତା ମଇ ମାସ ମଧ୍ୟରେ ପୂର୍ବାଞ୍ଚଳ ରାଜ୍ୟ ଶ୍ରମମନ୍ତ୍ରୀମାନଙ୍କର ଏକ ବୈଠକ ଡାକିବା ଲାଗି ମନ୍ତ୍ରୀଦ୍ୱୟ ଇଚ୍ଛା ପ୍ରକାଶ କରିଛନ୍ତି ।

ଉଭୟ ମନ୍ତ୍ରୀ ଖୋର୍ଦ୍ଧା ଓ ବାଲୁଗାଁଠାରେ ପଞ୍ଜାବ, କର୍ଣ୍ଣାଟକ, ଦିଲ୍ଲୀ, ଉତ୍ତରପ୍ରଦେଶ ଓ ଅନ୍ୟାନ୍ୟ ରାଜ୍ୟରୁ ଫେରିଥିବା ଦାଦନ ଶ୍ରମିକମାନଙ୍କଠାରୁ କଣ୍ଟ୍ରାକ୍ଟର ଓ ନିଯୁକ୍ତିଦାତାମାନଙ୍କର ଦୁର୍ବ୍ୟବହାର ସମ୍ପର୍କରେ ଅଭିଯୋଗମାନ ଶୁଣିଥିଲେ । ବିଶିଷ୍ଟ ଶ୍ରମିକ ନେତା ଶ୍ରୀ ଗଙ୍ଗାଧର ପାଇକରାୟ, ବିଭିନ୍ନ ରାଜ୍ୟରେ ପ୍ରବାସୀ ଶ୍ରମିକମାନଙ୍କୁ ଅଳ୍ପ ମଜୁରି ଦେଇ ଓ ଧମକ ଚମକ ଦେଇ ଦୀର୍ଘ ସମୟ ଧରି କାମ କରାଉଥିବା, ସେମାନଙ୍କୁ ଶୀତ ଲୁଗା ଦିଆଯାଉନଥିବା ଏବଂ ବିଭିନ୍ନ ଭାବରେ ଶୋଷଣ କରାଯାଉଥିବା ସମ୍ପର୍କରେ ମନ୍ତ୍ରୀଦ୍ୱୟଙ୍କୁ ଅବଗତ କରାଇଥିଲେ । ଶ୍ରମିକମାନଙ୍କର ଅସୁବିଧା ସମ୍ପର୍କରେ ଶୁଣିବା ପରେ ସେମାନଙ୍କର ସୁରକ୍ଷା ପାଇଁ କେବଳ ସରକାରଙ୍କ ଉପରେ ନିର୍ଭର ନକରି ଗାଁ ମୁଖିଆ, ସମ୍ମାନ୍ୟ ବ୍ୟକ୍ତି, ସରପଞ୍ଚ ଓ ସ୍ଥାନୀୟ ଲୋକମାନେ ପ୍ରଚେଷ୍ଟା କରିବାକୁ ମନ୍ତ୍ରୀଦ୍ୱୟ କହିଥିଲେ । ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ କୁହୁଡ଼ିଆ ଗ୍ରାମପଞ୍ଚାୟତରୁ ବହୁ ସଂଖ୍ୟକ ଲୋକ ଅନ୍ୟ ରାଜ୍ୟରେ ଦାଦନ ଶ୍ରମିକ ରୂପେ କାର୍ଯ୍ୟ କରୁଥିବାରୁ ଏହାକୁ ନମୁନା ଅଞ୍ଚଳ ଭାବେ ନିଆଯାଇ ସେମାନଙ୍କ ସମ୍ପର୍କରେ ବାଲୁଗାଁ ଦାଦନ ସେଲ୍‌ର ସହକାରୀ ଶ୍ରମ କମିଶନରଙ୍କ ନେତୃତ୍ୱରେ ଖୋର୍ଦ୍ଧା ଶ୍ରମ ଅଧିକାରୀ ଏବଂ ଏହି ସେଲ୍‌ର ନିରୀକ୍ଷକ ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ କରିବାକୁ ମନ୍ତ୍ରୀଦ୍ୱୟ ପ୍ରସ୍ତାବ ଦେଇଥିଲେ । ଏହି ଅଞ୍ଚଳର କେତେକ ଅସାଧୁ ବ୍ୟକ୍ତି ଦାଦନ ଶ୍ରମିକ ଆଇନର ଖିଲାପ କରିଥିବା ହେତୁ ସେମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଉଭୟ ମନ୍ତ୍ରୀ ଏକମତ ହୋଇଛନ୍ତି ।

ମନ୍ତ୍ରୀଦ୍ୱୟଙ୍କର ଏହି କ୍ଷେତ୍ର ପରିଦର୍ଶନ ସମୟରେ ରାଜ୍ୟ ଶ୍ରମ କମିଶନର ଶ୍ରୀ ବିନୟ ଭୂଷଣ ମିଶ୍ରଙ୍କ ସମେତ ବିଭାଗୀୟ ପଦସ୍ଥ ଅଧିକାରୀମାନେ ଉପସ୍ଥିତ ଥିଲେ ।

## ଦକ୍ଷିଣାଞ୍ଚଳ ପାଇଁ ବ୍ରହ୍ମପୁରରେ ପ୍ରଶାସନିକ ଟ୍ରିବ୍ୟୁନାଲ ଖୋଲିଲା

(ପ୍ରତ୍ୟେକ ମାସରେ ପ୍ରଥମ ସୋମବାର କୋର୍ଟ)

ବ୍ରହ୍ମପୁରରେ ଦକ୍ଷିଣାଞ୍ଚଳ ଜୋନ ପାଇଁ ପ୍ରଶାସନିକ ଟ୍ରିବ୍ୟୁନାଲ ଗତ ୩୦-୩-୧୯୯୨ଠାରୁ ଖୋଲାଯାଇଛି । ଦୀର୍ଘ ଦିନ ଧରି ଗଞ୍ଜାମ ବାର୍ ଆସୋସିଏସନ ପକ୍ଷରୁ ଜନସାଧାରଣଙ୍କ ସମ୍ମେଳନରେ ଏହି ଟ୍ରିବ୍ୟୁନାଲ ପାଇଁ ଦାବୀ କରାଯାଇଥିଲା । ସ୍ଥାନୀୟ ଆର୍. ଡି. ସି.ଙ୍କ କୋର୍ଟ ହଲରେ ପ୍ରତ୍ୟେକ ମାସର ପ୍ରଥମ ସୋମବାର ଟ୍ରିବ୍ୟୁନାଲବସିବ ବୋଲି ବିଭାଗୀୟ ସୂତ୍ରରୁ ଜଣାପଡ଼ିଛି ।

ରାଜ୍ୟ ପ୍ରଶାସନିକ ଟ୍ରିବ୍ୟୁନାଲର ୨ ଜଣ ସଦସ୍ୟ ଆସି ଏଠାରେ କୋର୍ଟ କାର୍ଯ୍ୟ କରିଛନ୍ତି । କୋର୍ଟ ଉଦ୍‌ଘାଟନ ଉପଲକ୍ଷେ ସ୍ଥାନୀୟ ଗଞ୍ଜାମ ବାର ଆସୋସିଏସନଠାରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ସଭାରେ ଆସୋସିଏସନର ସଭାପତି ବସନ୍ତ କୁମାର ପାଣିଗ୍ରାହୀ ଅଧ୍ୟକ୍ଷତା କରିଥିଲେ ।

## ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ପର୍କରେ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ କରାଯିବ

ଓଡ଼ିଶାର ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ବିଶେଷ ଖ୍ୟାତିସମ୍ପନ୍ନ ବ୍ୟକ୍ତିମାନଙ୍କ ସମେତ ସ୍ୱାଧୀନତା ସଂଗ୍ରାମ ଏବଂ ସାଧାରଣ ଜୀବନ କ୍ଷେତ୍ରରେ ବିଶେଷତ୍ୱ ଲାଭ କରିଥିବା ବ୍ୟକ୍ତି ବିଶେଷଙ୍କ ସମ୍ପର୍କରେ ରାଜ୍ୟ ସରକାର ପ୍ରାମାଣିକ ଚଳଚ୍ଚିତ୍ରମାନ ପ୍ରସ୍ତୁତ କରିବା ପାଇଁ ଏକ କାର୍ଯ୍ୟକ୍ରମ ଶୁରୁ କରିଛନ୍ତି ବୋଲି ରାଜ୍ୟ ବିଧାନସଭାରେ ଲୋକସମ୍ପର୍କ ଓ ସଂସ୍କୃତି ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କର ପ୍ରକାଶ କରିଛନ୍ତି ।

ଶ୍ରୀ ଯଜ୍ଞେଶ୍ୱର ବାବୁ ଓ ଶ୍ରୀ ଅଜୟ କୁମାର ଜେନାଙ୍କ ମିଳିତ ପ୍ରଶ୍ନର ଉତ୍ତର ଦେଇ ମନ୍ତ୍ରୀ ଶ୍ରୀ କର ଜଣାଇଥିଲେ ଯେ ଡଃ ହରେକୃଷ୍ଣ ମହତାବ, ଶ୍ରୀ ବିଜୁ ପଟ୍ଟନାୟକ ଓ ଡଃ ରାଧାନାଥ ରଥଙ୍କ ସମ୍ପର୍କରେ ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ ପାଇଁ ଦାବୀ' ଶୀର୍ଷକ ଏକ ସମ୍ବାଦ ଗତ ୨୯-୨-୧୯୯୨ ତାରିଖ ଦୈନିକ 'ଆଶା'ରେ ପ୍ରକାଶ ପାଇଥିବାର ରାଜ୍ୟ ସରକାରଙ୍କ ଦୃଷ୍ଟିକୁ ଆସିଛି । ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ପର୍କରେ ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତ କରିବା କାର୍ଯ୍ୟକ୍ରମ ଆରମ୍ଭ ହୋଇଛି ।

ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ଜୟଦେବ, ବୈଷ୍ଣବ ପାଣି, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପ୍ରମୁଖଙ୍କ ସମ୍ପର୍କରେ ଚଳଚ୍ଚିତ୍ର ନିର୍ମାଣ କରାଯାଉଛି । ପଣ୍ଡିତ ନୀଳକଣ୍ଠ ଦାସ, ଗଙ୍ଗାଧର ମେହେର, ବକ୍‌ସି ଜଗବନ୍ଧୁ, ସୁରେନ୍ଦ୍ର ସାଏ, ଲକ୍ଷ୍ମଣ ନାୟକ ପ୍ରମୁଖଙ୍କ ସମ୍ପର୍କରେ ମଧ୍ୟ ଏହି ଚଳଚ୍ଚିତ୍ର ସଫଳକୁ ଦେଖି ନିର୍ମାଣ କରାଯିବ । ୧୯୯୦-୯୧ ମସିହାରେ ଏଥିପାଇଁ ସାଢ଼େ ୮ ଲକ୍ଷ ଟଙ୍କା ଦିଆଯାଇଥିଲା । ୧୯୯୧-୯୨ ମସିହାରେ ୯ ଲକ୍ଷ ଟଙ୍କା ଦିଆଯାଇଛି ବୋଲି ମନ୍ତ୍ରୀ ଶ୍ରୀ କର ଜଣାଇଥିଲେ ।

## ଗୋପାଳପୁର ଓ ପାଲୁରଠାରେ ୨ଟି ମତ୍ସ୍ୟ ପ୍ରକଳ୍ପ ପ୍ରତିଷ୍ଠା ହେବ

ଗଞ୍ଜାମ ଜିଲ୍ଲାର ଉନ୍ନତିକଳ୍ପେ ମତ୍ସ୍ୟ ବିଭାଗ ତରଫରୁ ଦୁଇଟି ପ୍ରକଳ୍ପ କାର୍ଯ୍ୟକାରୀ କରାଯିବ ବୋଲି ମତ୍ସ୍ୟ ଓ ପଶୁପାଳନ ମନ୍ତ୍ରୀଙ୍କଠାରୁ ପ୍ରକାଶ । ଗଞ୍ଜାମ ଜିଲ୍ଲାର ଗୋପାଳପୁର ଓ ପାଲୁରଠାରେ ଦୁଇଟି ମତ୍ସ୍ୟ ପ୍ରକଳ୍ପ ନିର୍ମାଣ କରାଯିବାର ସୂଚନାଦେଇ ମତ୍ସ୍ୟ ଓ ପଶୁପାଳନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର କହିଛନ୍ତି ଯେ, ଉପରୋକ୍ତ ଦୁଇଟି ଅଞ୍ଚଳରେ ମତ୍ସ୍ୟ ପ୍ରକଳ୍ପ ସ୍ଥାପନ କରାଗଲେ ସ୍ଥାନୀୟ ଅଧିବାସୀମାନେ ବିଶେଷ ଉପକୃତହେବା ସଙ୍ଗେ ସଙ୍ଗେ ଅନେକ ଯୁବକ କର୍ମ ନିଯୁକ୍ତି ପାଇପାରିବେ ।

ପାଲୁରଠାରେ ସମୁଦ୍ରକୁ ବାଟ ଥିବାରୁ ସେଠାରେ ସାଆଁଳ ଧରା ଯିବାର ବ୍ୟବସ୍ଥା କରାଯିବବୋଲି ମନ୍ତ୍ରୀ ଶ୍ରୀ ପାତ୍ରଙ୍କଠାରୁ ପ୍ରକାଶ ।

ମନ୍ତ୍ରୀ କହିଲେ ଯେ ଚିଲିକାରେ ମତ୍ସ୍ୟ କାରବାରର ଅଧିକ ସୁଯୋଗ ସୃଷ୍ଟି କରିବା ପାଇଁ ସରକାର ଯୋଜନା କରିଛନ୍ତି ।

ପାଲୁର ଓ ଗୋପାଳପୁରଠାରେ ଦୁଇଟି ନୂତନ ପ୍ରକଳ୍ପ କାର୍ଯ୍ୟକାରୀ ହେଲେ ସମଗ୍ର ଅଞ୍ଚଳର ଅର୍ଥନୀତି ସୁଦୃଢ଼ ହେବା ସଙ୍ଗେ ସଙ୍ଗେ ଚିଲିକାର ମଧ୍ୟ ବିକାଶ ସମ୍ଭବ ହୋଇପାରିବ ଏବଂ ମତ୍ସ୍ୟ ସୁବିଧା ପ୍ରଚଳନ କରିବାରେ ଏହା ସହାୟକ ହୋଇପାରିବ ବୋଲି ଶ୍ରୀ ପାତ୍ର ପ୍ରକାଶ କରିଥିଲେ ।

## ମହିଳାମାନଙ୍କୁ ସମାଜରେ ସମାନ ଅଧିକାର ଦିଆଯିବ

ମହିଳାମାନଙ୍କୁ ପୁରୁଷଙ୍କ ଭଳି ସମାଜରେ ସମାନ ଅଧିକାର ଦିଆଯିବ ବୋଲି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଗତ ୨୯ ତାରିଖ ଦିନ ଏଠାରେ ଘୋଷଣା କରିଛନ୍ତି । ସେ କହିଥିଲେ ଯେ ସେଥିପାଇଁ ଗତ ପୌର ନିର୍ବାଚନରେ ମହିଳା ପ୍ରାର୍ଥୀଙ୍କୁ ଅଗ୍ରାଧିକାର ଦେବା ସହ ସେମାନଙ୍କ ପାଇଁ ୩୦ ଭାଗ ସ୍ଥାନ ସଂରକ୍ଷଣ କଲି । ଶ୍ରୀ ପଟ୍ଟନାୟକ ମହିଳାମାନଙ୍କ ଉପରେ ଗୁରୁତ୍ୱ ଦେଇ ଛତ୍ରପୁରଠାରେ ତାଙ୍କୁ ଦିଆଯାଇଥିବା ନାଗରିକ ସମ୍ବର୍ଦ୍ଧନାର ଭିତ୍ତିରେ ଏହି କଥା କହିଥିଲେ । ସେ ପୁଣି କହିଲେ ଯେ, ମହିଳା ପ୍ରାର୍ଥୀଙ୍କୁ ପୌର ସଭାର ଉପ-ନଗରପାଳ କରିବା ପାଇଁ ସ୍ଥିର କରିଛି । ପୁରୁଣା କଂଗ୍ରେସ ସରକାର ଭଳି ଯିଏଯେଉଠି ଭିତ୍ତିପ୍ରସ୍ତର ସ୍ଥାପନ ନକରିବା ପାଇଁ ସେ ମନ୍ତ୍ରୀମାନଙ୍କୁ ତାଗିଦ୍ କରିଛନ୍ତି । ଛତ୍ରପୁର ସହରର ଉନ୍ନତିରେ ମୁଁ ଖୁସି, ଆପଣମାନଙ୍କ ସହଯୋଗରେ ଓଡ଼ିଶାର ଟେକ ରଖିବା ପାଇଁ ସେ ସଂକଳ୍ପ ବଦ୍ଧ । ସମ୍ମାନିତ ଅତିଥିଭାବେ ସଂସ୍କୃତି ବିଭାଗ ମନ୍ତ୍ରୀ ଶ୍ରୀ ଶରତ କୁମାର କର ଓ ମତ୍ସ୍ୟ, ପଶୁସମ୍ପଦ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଏଥିରେ ଉଦ୍‌ବୋଧନ ଦେଇଥିଲେ । ସଭାରେ ଛତ୍ରପୁର ନବ ନିର୍ବାଚିତ ନଗରପାଳ ଶ୍ରୀ ଦୁର୍ଯ୍ୟୋଧନ ସାହୁ ସଭାପତିତ୍ୱ କରିଥିବାବେଳେ ଛତ୍ରପୁର ବିଧାୟକ ଶ୍ରୀ ପର୍ଶୁରାମ ପଣ୍ଡା ଧନ୍ୟବାଦ ଦେଇଥିଲେ ଏବଂ ଗୋପାଳପୁର ବିଧାୟକ ଶ୍ରୀ ରାମଚନ୍ଦ୍ର ସେଠୀ, ଗଞ୍ଜାମ ଜିଲ୍ଲାପାଳ, ଜଗଦାନନ୍ଦ ପଣ୍ଡା ସଭାରେ ଯୋଗ ଦେଇଥିଲେ ।

ଏନ୍ ଏ: ସି: କାର୍ଯ୍ୟନିର୍ବାହୀ ଅଧିକାରୀ ଶ୍ରୀ ଧ୍ରୁବ ଚରଣ ସେଠ ସ୍ୱାଗତ ଭାଷଣ ଦେଇଥିଲେ । ସୁନିତା ଶତପଥୀଙ୍କ ସାକ୍ଷରତା ଗୀତ ମୁଖ୍ୟମନ୍ତ୍ରୀଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ଛତ୍ରପୁର କଲ୍ୟାଣ ମଣ୍ଡପ ଓ ଟାଉନହଲ୍‌ର ଭିତ୍ତିପ୍ରସ୍ତର ସ୍ଥାପନ ଓ ଭୂମିପୂଜା ସ୍ଥାନୀୟ ନଗରପାଳ କରିଥିଲେ । ବସ୍ ଷ୍ଟାଣ୍ଡରେ ଏକ ଯାତ୍ରୀନିବାସ ମତ୍ସ୍ୟ ଓ ପଶୁସମ୍ପଦ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ଉଦ୍‌ଘାଟନ କରିଥିଲେ ।

## ବଲାଙ୍ଗୀରରେ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ

ବଲାଙ୍ଗୀରସ୍ଥିତ ପୁରୁରାଜ ହାଇସ୍କୁଲ ପଡ଼ିଆଠାରେ ମାର୍ଚ୍ଚ ୧୧ ତାରିଖ ଠାରୁ ମାର୍ଚ୍ଚ ୧୩ ତାରିଖ ପର୍ଯ୍ୟନ୍ତ ତିନିଦିନ ଧରି ଏକ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀର ଆୟୋଜନ ଜିଲ୍ଲା ପ୍ରଶାସନ ତରଫରୁ କରାଯାଇଥିଲା । ଏହି ପ୍ରଦର୍ଶନୀଟି ମାର୍ଚ୍ଚ ୧୧ ତାରିଖ ସନ୍ଧ୍ୟା ... ଘଣ୍ଟା ସମୟରେ ଉଦ୍‌ଘାଟନ କରିଥିଲେ ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଲିଭିନ୍‌ସ୍ କିଣ୍ଡୋ । ଦ୍ୱିତୀୟ ଏବଂ ତୃତୀୟ ଦିନ ପ୍ରଦର୍ଶନୀ ଅପରାହ୍ନ ୨ ଘଣ୍ଟା ସମୟରୁ ରାତ୍ର ୧୦ ଘଣ୍ଟା ପର୍ଯ୍ୟନ୍ତ ଖୋଲିଥିଲା । ଏହି ପ୍ରଦର୍ଶନୀର ଉଦ୍‌ଘାଟନ ଉତ୍ସବରେ ଉଦ୍‌ବୋଧନ ଦେଇ ଶ୍ରୀଯୁକ୍ତ କିଣ୍ଡୋ କହିଥିଲେ ଯେ, ଏହି ପ୍ରଦର୍ଶନୀ ସରକାରଙ୍କର ବିଭିନ୍ନ ବିଭାଗ ଦ୍ୱାରା ଖୋଲିଥିବା ଉନ୍ନୟନ ମୂଳକ କାର୍ଯ୍ୟକ୍ରମ ସମ୍ପର୍କରେ ଜନସାଧାରଣଙ୍କୁ ଅବଗତ କରାଇବା ସଙ୍ଗେ ସଙ୍ଗେ ସେମାନଙ୍କର ଜୀବନରେ ଆନନ୍ଦ ଖେଳାଇଦେବ ଏବଂ ସେମାନଙ୍କର ଜ୍ଞାନ ଦିଗନ୍ତକୁ ଆହୁରି ବ୍ୟାପକ କରିପାରିବ । ଏହି ସଭାରେ ସଭାପତିତ୍ୱ କରିଥିଲେ ଜିଲ୍ଲାପାଳ ଶ୍ରୀଯୁକ୍ତ ନିରଞ୍ଜନ ସନ୍ୟାଲ । ପ୍ରାରମ୍ଭରେ ପ୍ରଦର୍ଶନୀ ସମ୍ପର୍କରେ ସମ୍ୟକ ସୂଚନା ପ୍ରଦାନ କରିଥିଲେ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ଶ୍ରୀଯୁକ୍ତ ଶଶାଙ୍କ ଶେଖର ପଣ୍ଡା ଏବଂ ସଭା ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ, ଜିଲ୍ଲା ଗ୍ରାମ୍ୟ ଉନ୍ନୟନର ପ୍ରକଳ୍ପ ଅଧିକାରୀ ଶ୍ରୀଯୁକ୍ତ ବେଣୁଗୋପାଳ ଶର୍ମା । ଏହି ପ୍ରଦର୍ଶନୀରେ କୃଷି, ପଶୁପାଳନ, ସାମାଜିକ ବନୀକରଣ, କେନ୍ଦୁପତ୍ର ବନ ମଣ୍ଡଳ, ଜିଲ୍ଲା ପରିବେଶ ସମିତି, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ଖଦି, ଜିଲ୍ଲା ଶିଳ୍ପ କେନ୍ଦ୍ର, ସୂଚନା ଓ ଲୋକ ସମ୍ପର୍କ, ମତ୍ସ୍ୟଚାଷ, ନେହେରୁ ଯୁବ କେନ୍ଦ୍ର, କ୍ରୀଡ଼ା, ସାମାଜିକ କଲ୍ୟାଣ, ସ୍ୱଳ୍ପ ସଞ୍ଚୟ, ମୃତ୍ତିକା ସଂରକ୍ଷଣ, ପର୍ଯ୍ୟଟନ, ଆୟୁର୍ବେଦ, ବେସାମରିକ ଯୋଗାଣ, ଜନଶିକ୍ଷା, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା କେନ୍ଦ୍ର ସମବାୟ ବ୍ୟାଙ୍କ୍ ଆଦି ପ୍ରାୟ ... ଷ୍ଟଲ୍‌ମାନ ଖୋଲାଯାଇଥିଲା । ଏତଦ୍ ବ୍ୟତୀତ ଟିଟିଲାଗଡ଼ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସର୍ଭିସ୍ ସେଣ୍ଟର୍ ଫର୍ ଡିସେବୁଲ୍ ... ବଲାଙ୍ଗୀରର ସର୍ବ କଲ୍ୟାଣ ପରିଷଦ ଏବଂ ପୁନି ... ପ୍ରଭୃତି ସମୁଦାୟ ୫୨ ଗୋଟି ଷ୍ଟଲ୍ ପ୍ରଦର୍ଶିତ ହୋଇଥିଲା । ପ୍ରତ୍ୟେକ ପ୍ରାୟ ୧୦ରୁ ୧୫ ହଜାର ଲୋକ ପ୍ରଦର୍ଶନୀ ଷ୍ଟଲ୍ ବୁଲି ଦେଖିଥିଲେ ।

ପ୍ରତିଦିନ ସନ୍ଧ୍ୟାରେ ପାଲା, ଦାସକାଠିଆ, ସଙ୍ଗୀତ ... ଲୋକନୃତ୍ୟ ଆଦି କୋଡ଼ିଏଟି ସାଂସ୍କୃତିକ ଅନୁଷ୍ଠାନ ପ୍ରଦର୍ଶନ କରିଥିଲେ । ଉଦ୍‌ଯାପନ ଦିବସରେ ଜିଲ୍ଲାପାଳ ଶ୍ରୀଯୁକ୍ତ ସନ୍ୟାଲ ମୁଖ୍ୟ ଅତିଥି ଭାବରେ ଯଥାକ୍ରମେ ପ୍ରଥମ ଦ୍ୱିତୀୟ ଏବଂ ତୃତୀୟ ପୁରସ୍କାର ଜିଲ୍ଲା ଶିଳ୍ପ କେନ୍ଦ୍ର, ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଓ ସେଣ୍ଟର୍ ଫର୍ ଡିସେବୁଲ୍‌କୁ ଏବଂ ସାନ୍ତ୍ୱନା ପୁରସ୍କାର ... ପ୍ରଦାନ କରିଥିଲେ । ଏହି ସଭାରେ ସଭାପତିତ୍ୱ କରିଥିଲେ ... ଅତିରିକ୍ତ ଜିଲ୍ଲାପାଳ ଶ୍ରୀଯୁକ୍ତ ଭାସ୍କର ମହାପାତ୍ର ଏବଂ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲେ ମୁଖ୍ୟ ଜିଲ୍ଲା ... ଉନ୍ନୟନ ଅଧିକାରୀ ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ପଣ୍ଡା । ... ଶେଷରେ ସମସ୍ତଙ୍କୁ ସେମାନଙ୍କର ସହଯୋଗ ପାଇଁ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ, ବଲାଙ୍ଗୀର ଧନ୍ୟବାଦ ଅର୍ପଣ କରିଥିଲେ ।

## କେନ୍ଦୁଝରରେ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ ଓ ମେଳା

ଗତ ୩୦-୩-୯୨ ରିଖ ଠାରୁ ୨-୪-୯୨ ରିଖ ... କେନ୍ଦୁଝର କାଳିପଡ଼ିଆଠାରେ ଏକ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ ...

... ରାଜ୍ୟ ଅଭିଯୋଗ ଓ ପେନ୍‌ସନ୍ ବିଭାଗ ମନ୍ତ୍ରୀ ଶ୍ରୀପ୍ରଦୀପ ପାଟ୍ଟଣାୟକଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଯାଇଛି । ଏହି ଉପଲକ୍ଷେ ଆୟୋଜିତ ଏକ ଉତ୍ସବରେ ଶ୍ରୀ ପାଟ୍ଟଣାୟକ କହିଲେ ଯେ, କେନ୍ଦୁଝର ଖଣିଜ ସମ୍ପଦର ଭରା ସ୍ୱର୍ଣ୍ଣପ୍ରସୂ ଭୂମି ଅଟେ । ଏଠାରେ ଥିବା ଖଣିଜ ସମ୍ପଦର ସଦ୍‌ବିନିଯୋଗ କରାଯାଇ ପାରିଲେ ଦେଶ ତଥା ଜାତିର ସମ୍ମାନ ବୃଦ୍ଧି ଘଟିବ । ସୁଯୋଗରେ ଏହି ଜିଲ୍ଲାସ୍ତରୀୟ ପ୍ରଦର୍ଶନୀରେ ଜିଲ୍ଲାର ବିଭିନ୍ନ ସରକାରୀ, ବେସରକାରୀ ଓ ଶିଳ୍ପାନୁଷ୍ଠାନଗୁଡ଼ିକ ଦ୍ୱାରା ସେମାନଙ୍କର ଉନ୍ନୟନମୂଳକ କାର୍ଯ୍ୟକ୍ରମର ନମୁନାଗୁଡ଼ିକ ପ୍ରଦର୍ଶନୀ ମାଧ୍ୟମରେ ଲୋକମାନଙ୍କ ଅବଗତି ନିମନ୍ତେ ପ୍ରଦର୍ଶିତ କରିଥିବା ନେଇ ସନ୍ତୋଷ ପ୍ରକାଶ କରିଥିଲେ । ସମ୍ମାନିତ ଅତିଥି ଭାବେ ରାଜ୍ୟ ଗ୍ରାମ୍ୟ ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସହରାଇ ଓରାମ କହିଥିଲେ ଯେ, ଏହି ପ୍ରଦର୍ଶନୀରେ ବିଭିନ୍ନ ବିଭାଗଗୁଡ଼ିକ ସେମାନଙ୍କର ଜନକଲ୍ୟାଣ କାର୍ଯ୍ୟର ନମୁନା ଅତି ଆକର୍ଷଣୀୟ ହୋଇପାରିଛି ।

ଏଥିରେ ସଭାପତିତ୍ୱ କରି ଜିଲ୍ଲାପାଳ ଶ୍ରୀ ଅରୁଣ କୁମାର ପଣ୍ଡା କହିଥିଲେ ଯେ, ଏହି ଜିଲ୍ଲାରେ ଅର୍ଥନୈତିକ ଅଭିବୃଦ୍ଧି ନିମନ୍ତେ ବିଭିନ୍ନ ଯୋଜନା କାର୍ଯ୍ୟକାରୀ ହେଉଥିବା ସମ୍ପୂର୍ଣ୍ଣ ସାକ୍ଷରତା ଅଭିଯାନରେ ସମ୍ମିଳିତ ଭାବେ କାର୍ଯ୍ୟ କରିପାରିଲେ ଏହା ସଫଳତା ଅର୍ଜନରେ ପାରିବ ବୋଲି ସେ ଗୁରୁତ୍ୱ ଆରୋପ କରିଥିଲେ ।

ଏହି ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ ଓ ମେଳା ୧୯୯୭ରେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ଜିଲ୍ଲା ଶିଳ୍ପ କେନ୍ଦ୍ର, କୃଷି ପଶୁ ମତ୍ସ୍ୟ ପାଳନ, ସାମାଜିକ ବନ ବିଭାଗ, ଜିଲ୍ଲା କାରିଗରୀ, ଜିଲ୍ଲା ସମାଜ ମଙ୍ଗଳ ବିଭାଗ, ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ବିଭାଗ, ନାରୀ ସମାଜ, ସେରେଙ୍ଗ ମାଇନିଂ, କଳିଙ୍ଗ ଆଇରନ୍ ୱାର୍କସ୍, ବଡ଼ବିଲ ଆଇରନ୍ ଲିମିଟେଡ୍ ପ୍ରଭୃତି ବିଭିନ୍ନ ସଂସ୍ଥା ଅଂଶ ଗ୍ରହଣ କରିଥିଲେ ।

ଏହି ଉତ୍ସବରେ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ଅଧିକାରୀ ଶ୍ରୀ ସୁରେଶ ଚନ୍ଦ୍ର ପଟ୍ଟନାୟକ ପ୍ରାରମ୍ଭିକ ସୂଚନା ଦେଇଥିଲେ । ଶେଷରେ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ବିଭାଗ ଅଧିକାରୀ ଶ୍ରୀ ଉମାକାନ୍ତ ନାୟକ ଧନ୍ୟବାଦ ଅର୍ପଣ କରିଥିଲେ । ପରିଶେଷରେ ମନୋରଞ୍ଜନ ସାଂସ୍କୃତିକ କାର୍ଯ୍ୟକ୍ରମ ଉପସ୍ଥାପନ କରାଯାଇଥିଲା ।

## ଓଡ଼ିଶାର କଳାକୁ ବିଶ୍ୱ ଦରବାରରେ ପହଞ୍ଚାଇବା ପାଇଁ ବିଜୁଙ୍କ ଆହ୍ୱାନ

ଗତ ଏପ୍ରିଲ ମାସରେ ସ୍ଥାନୀୟ ରବୀନ୍ଦ୍ର ମଣ୍ଡପଠାରେ ଆୟୋଜିତ ଏକ ମନୋଜ୍ଞ ଉତ୍ସବରେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ଡଃ ଜଗନ୍ନାଥ ଟାଲିଙ୍କ ଓଡ଼ିଶା ଲଳିତ କଳା ଏକାଡେମୀ ପକ୍ଷରୁ ମୁଖ୍ୟମନ୍ତ୍ରୀଙ୍କ ଧର୍ମପଦ ପୁରସ୍କାର ପ୍ରଦାନ କରାଯାଇଛି ।

ଏହାଛଡ଼ା ଅନ୍ୟ ୫ ଜଣ ବିଶିଷ୍ଟ ଶିଳ୍ପୀଙ୍କୁ ଉତ୍ସବରେ ସମ୍ମାନିତ କରାଯାଇଛି । ଏହି ଶିଳ୍ପୀମାନେ ହେଲେ ସର୍ବଶ୍ରୀ ସୁରେଶଚନ୍ଦ୍ର ମହାନ୍ତି, ମଦନମୋହନ ମହାପାତ୍ର, ବଂଶୀଧର ପ୍ରତିହାରୀ, ଧ୍ରୁବଚରଣ ମହାରଣା ଓ ବିଚିତ୍ରାନନ୍ଦ ମହାନ୍ତି । ପ୍ରତ୍ୟେକ ଶିଳ୍ପୀଙ୍କୁ ନଗଦ ୫ ହଜାର ଟଙ୍କା ସହ ମାନପତ୍ର ଓ ଉପଢୌକନ ଦିଆଯାଇ ସମ୍ବର୍ଦ୍ଧିତ କରାଯାଇଥିଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉତ୍ସବରେ ମୁଖ୍ୟଅତିଥି ରୂପେ ଯୋଗଦେଇ ଓଡ଼ିଶାର କଳା ସଂସ୍କୃତି ଓ ସାହିତ୍ୟକୁ ସାରାବିଶ୍ୱର ଶ୍ରେଷ୍ଠ ସ୍ଥାନରେ ପହଞ୍ଚାଇବା ପାଇଁ ଶିଳ୍ପୀ, କଳାକାର ଓ ସାହିତ୍ୟିକମାନେ ସମ୍ମିଳିତ ଉଦ୍ୟମ କରିବା ନିମନ୍ତେ ଆହ୍ୱାନ ଦେଇଥିଲେ ।

ମୁଖ୍ୟମନ୍ତ୍ରୀ ବୟୋବୃଦ୍ଧ ଶିଳ୍ପୀ ଡଃ ଟାଲିଙ୍କ ଧର୍ମପଦ ପୁରସ୍କାର ବାବଦରେ ନଗଦ ୨୫ ହଜାର ଟଙ୍କା, ଉପଢୌକନ, ମାନପତ୍ର ଓ ପୁଷ୍ପଗୁଚ୍ଛ ପ୍ରଦାନ କରି ସମ୍ବର୍ଦ୍ଧନା କରାଯାଇଥିଲା । ଶିଳ୍ପୀ ସୁରେଶଚନ୍ଦ୍ର ମହାନ୍ତି ଅସୁସ୍ଥତାବଶତଃ ଉତ୍ସବରେ ଯୋଗ ଦେଇପାରି ନଥିଲେ ଏବଂ ତାଙ୍କ ସହଧର୍ମିଣୀ ମୁଖ୍ୟମନ୍ତ୍ରୀଙ୍କଠାରୁ ପୁରସ୍କାର ଗ୍ରହଣ କରିଥିଲେ ।

ପୁରସ୍କାର ପ୍ରଦାନ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଓଡ଼ିଶାର କଳା ଓ ସଂସ୍କୃତିକୁ ପୁନର୍ବିନ୍ୟାସ ଓ ପୁନରୁଜ୍ଜୀବିତ କରିବାକୁ ପଡ଼ିବ । ଏଥିପାଇଁ ଶିଳ୍ପୀ ଓ ସଂସ୍କୃତି ଅନୁରାଗୀ ବ୍ୟକ୍ତିମାନେ ଏକଜୁଟ ହେବା ଆବଶ୍ୟକ । ଏ ଜାତି ତା'ର ଅତୀତର ଗୌରବ ରକ୍ଷା ପାଇଁ ଯଦି ପୁଣି ଥରେ କୋଣାର୍କ ନିର୍ମାଣ କରିବାକୁ ଇଚ୍ଛା କରେ ତାହା ଅସମ୍ଭବ ବ୍ୟାପାର ହେବନାହିଁ । ଆମର ନୃତ୍ୟ, ସଙ୍ଗୀତ, କଳା ଓ ଭାସ୍କର୍ଯ୍ୟ ବିଶ୍ୱବିଖ୍ୟାତ ହୋଇପାରିଛି ଏବଂ ଏହାପଛରେ ଶିଳ୍ପୀ ଓ ସାଧକମାନଙ୍କର ଅବଦାନ ରହିଛି । କଳିଙ୍ଗର ପ୍ରାଚୀନ କଳା ଓ ଐତିହ୍ୟର ପୁନଃପ୍ରତିଷ୍ଠା ପାଇଁ ଏକ କଳାପ୍ରତିଷ୍ଠାନ ସ୍ଥାପନ କରାଯିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ଏହାଦ୍ୱାରା କଳିଙ୍ଗର ଗୌରବ ଅଧିକ ଉଜ୍ଜ୍ୱଳିତ ହେବ ବୋଲି ସେ ଆଶାପ୍ରକାଶ କରିଥିଲେ ।

ରାଜ୍ୟ ସଂସ୍କୃତି, ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ ଶ୍ରୀ ଶରତକୁମାର କର ଉତ୍ସବରେ ସମ୍ମାନିତ ଅତିଥିରୂପେ ଯୋଗଦେଇ କହିଲେ ଯେ ଓଡ଼ିଶାର ପୁରପଲ୍ଲୀରେ ଏବେ ମଧ୍ୟ ଏହିଭଳି ମହାନ୍ କଳାକାର ରହିଛନ୍ତି ଯେଉଁମାନେ ଗୋଟିଏ ଗୋଟିଏ ନୂତନ କୋଣାର୍କ ତିଆରି କରିବାପାଇଁ ସକ୍ଷମ ହୋଇପାରିବେ । ସେମାନଙ୍କୁ ଖୋଜି ବାହାର କରାଯାଇ ସେମାନଙ୍କ କଳାର ବିକାଶ ପାଇଁ ଉଦ୍ୟମ ହେବା ଆବଶ୍ୟକ ।

ଏହି ଉତ୍ସବରେ ଓଡ଼ିଶା ଲଳିତ କଳା ଏକାଡେମୀର ସଭାପତି ଶ୍ରୀ ବିନୋଦ ରାଉତରାୟ ଅଧ୍ୟକ୍ଷତା କରିଥିଲେ । ଏକାଡେମୀର ସମ୍ପାଦକ ଶ୍ରୀ ଜଗଦୀଶଚନ୍ଦ୍ର କୁନ୍ଦନ୍‌ରୋ ସ୍ୱାଗତଭାଷଣ ଦେଇ ଏକାଡେମୀ ପକ୍ଷରୁ ମୁଦ୍ରଣ କରାଯାଇଥିବା ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେଇଥିଲେ । ଏହି ଅବସରରେ ରବୀନ୍ଦ୍ରମଣ୍ଡପ ପରିସର ମଧ୍ୟରେ ଏକ ଚିତ୍ର ପ୍ରଦର୍ଶନୀ ଆୟୋଜିତ ହୋଇଥିଲା ।




ଲକ୍ଷ୍ମୀସାଗରଠାରେ ଓଡ଼ିଶା କୃଷି ଶିଳ୍ପ ନିଗମ ଦ୍ୱାରା ପ୍ରତିଷ୍ଠିତ ରିଜୋବିୟମ୍ ବାୟୋ ଫର୍ଟିଲାଇଜର୍ ପ୍ଲାଣ୍ଟକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି । ନିଗମର ଅଧ୍ୟକ୍ଷ ଶ୍ରୀ ଜୟଦେବ ପଣ୍ଡା ଉପସ୍ଥିତ ଅଛନ୍ତି ।(୮/୪) ।



ଭୁବନେଶ୍ୱରଠାରେ ଅନୁଷ୍ଠିତ ଭାରତୀୟ ସାଧାରଣ ପ୍ରଶାସନିକ ଅନୁଷ୍ଠାନର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି ।

*ଜୁଟର ଭଲ ଲାଗିଲା । ଅନେକ ପ୍ରାଚୀନ ଐତିହାସିକ ଲେଖାଗୁଡ଼ିକ ଭଲ ଲାଗିଲା । ମୋ ଲେଖା – ଐତିହାସିକ କାହିଁକି – କ'ଣ ହେଉଅଛି ? ଛାପ ଉପଯୋଗୀ ନୁହେଁ ।*

** ଆପଣଙ୍କ ଲେଖା ଆମ ପାଖରେ ପହଞ୍ଚିନାହିଁ । ନିର୍ଦ୍ଦିଷ୍ଟ ଠିକଣା ଦେଇ ଆଗେଇରେ ପଠାଇଲେ ଆମେ ବିଚାର କରିବୁ ।

ଶ୍ରୀ ଲକ୍ଷ୍ମୀକାନ୍ତ ଖୁଣ୍ଟିଆ, ଶିକ୍ଷକ,
ସରକାରୀ ଉଚ୍ଚ ବିଦ୍ୟାଳୟ,
ଶହୀଦନଗର, ଭୁବନେଶ୍ୱର, ଜିଲ୍ଲା–ପୁରୀ ।

• *ମୁଁ ଉତ୍କଳ ପ୍ରସଙ୍ଗର ନିୟମିତ ପାଠକ । ଏଥିରେ ପ୍ରକାଶିତ ଗବେଷଣା ଧର୍ମୀ ପ୍ରବନ୍ଧମାନ ମୋର ବହୁତ ଭଲରେ ଲାଗୁଛି । ଏହିପରି କେତେକ କଥା ପଢ଼ୁଛି, ଗତ ୧୯୯୯ ମାର୍ଚ୍ଚ ସଂଖ୍ୟା 'ଜଗନ୍ନାଥ ଧାମ' ବିଶେଷାଙ୍କଟି ମୁଁ ପାଇପାରିନି । ଆପଣଙ୍କ ନିକଟରୁ ଏହା କେଉଁଠାରେ ଯଦି ମୋର ବହୁତ ଉପକାର ହୁଅନ୍ତା ।*

** ସବୁ ଜୁଟିର ସ୍ୱାଦ ପରିବେଷଣ ହେଉଥିବାରୁ ଉତ୍କଳ ପ୍ରସଙ୍ଗ ପ୍ରକାଶ-ପାଇବାର ଅଳ୍ପଦିନ ଭିତରେ ହିଁ ବିକ୍ରି ହୋଇଯାଇଥାଏ । ବିଶେଷ କରି ଅତୀବ ଜଗନ୍ନାଥ ବିଶେଷାଙ୍କଟି ଅଧିକ ଆକର୍ଷଣୀୟ ଥିବାରୁ ସେହି ସଂଖ୍ୟାଟି ବିରଳ ହୋଇଯାଇଛି ।

ଶ୍ରୀ ହରେକୃଷ୍ଣ ପଣ୍ଡା,
ଗ୍ରାମ–ଟିଗିରିଆ, ଭାୟା–ମହଙ୍ଗା, ଜିଲ୍ଲା–କଟକ ।

• *ଉତ୍କଳ ପ୍ରସଙ୍ଗରେ ପ୍ରତ୍ୟେକ ବିଭାଗ ପାଇଁ ଦିନାଙ୍କରେ ବିଶିଷ୍ଟ ପାଠକୀୟଙ୍କ ପ୍ରକାଶ କରାଯାଉ । ଲୋକେ ଏବଂ ସଂଗ୍ରହଯୋଗ୍ୟ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ ହେଉ ।*

** ପ୍ରସ୍ତାବ ମନ୍ଦ ନୁହେଁ । ଆପଣଙ୍କ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ ଚେଷ୍ଟା କରିବୁ ।

ଶ୍ରୀ ରମେନ୍ଦ୍ର ପଟ୍ଟନାୟକ, କିରାଣି,
ତହସିଲ କାର୍ଯ୍ୟାଳୟ, ମାଧପୁର,
ପୋଷ୍ଟ/ଭାୟା–କେନ୍ଦ୍ରାପଡ଼ା, ଜିଲ୍ଲା–କଟକ ।

• *ଉତ୍କଳ ପ୍ରସଙ୍ଗରେ ଶିଶୁ, କିଶୋର ଲେଖା ଏବଂ ସ୍ୱତନ୍ତ୍ର ବିଭାଗ ଏବଂ ମହିଳା ବିଭାଗ ଖୋଲା ଯାଉ ।*

** ମତାମତ ପାଇଁ ଧନ୍ୟବାଦ । ସ୍ୱତନ୍ତ୍ର ବିଭାଗ ନଥିଲେ ମଧ୍ୟ ଶିଶୁ ଓ ମହିଳାମାନଙ୍କ ପାଇଁ ଲେଖା ପ୍ରକାଶ ପାଉଛି ।

ଶ୍ରୀ ଚତୁର୍ଭୁଜ ପରିଡ଼ା,
ଗ୍ରାମ–ମଣିକୁଣ୍ଡା(ଗୋଇଲୋ ବାଲିକୁଦା),
ପୋଷ୍ଟ–ସାଇଲୋ ବଡ଼ବିଲ,
ଭାୟା–ବ୍ରାହ୍ମଣ ସାଇଲୋ, ଜିଲ୍ଲା–କଟକ ।

• *ଓଡ଼ିଶାରେ ପ୍ରତିମାସରେ ଘଟୁଥିବା ଘଟଣାକୁ ନେଇ 'ଓଡ଼ିଶାର ଘଟଣାବଳୀ' ନାମରେ ସଂଖ୍ୟାରେ ଧାରାବାହିକ ପ୍ରକାଶ କଲେ ପତ୍ରିକାଟି ଅଧିକ ଆଦୃତ ହୁଅନ୍ତା ।*

** ଟିଗିରିଆ, କଟକରୁ ଶ୍ରୀ ହରିକୃଷ୍ଣ ପଣ୍ଡା ମଧ୍ୟ ଏହି ପ୍ରସ୍ତାବ ଦେଇଛନ୍ତି । ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ ଉଦ୍ୟମ କରିବୁ ।

ମନୋଜ କୁମାର ମହାପାତ୍ର,
ବନ୍ଦମା ସାଗଡ଼ିଆ ଶେଖ ରାମଚନ୍ଦ୍ରପୁର,
ପୋଷ୍ଟ–ରଘୁଡ଼ି, ଭାୟା–ବାଙ୍କୀ, ଜିଲ୍ଲା–କଟକ ।

• *ମହାଶୟ, ଆପଣଙ୍କର ଜାନୁଆରୀ ୧୯୯୯ ସଂଖ୍ୟାଟିକୁ ପଢ଼ି ଆନନ୍ଦିତ ହେଲି । ଏଥିପାଇଁ ଆପଣଙ୍କୁ ଧନ୍ୟବାଦ ଚିଠି ମାଧ୍ୟମରେ ଜଣାଉଛି । ଉତ୍କଳ ପ୍ରସଙ୍ଗରେ ଆମ ଜିଲ୍ଲା ବାଙ୍କୀର ଖବର କିପରି ପ୍ରକାଶ ପାଇବ ତାହା ଦୟାକରି ଜଣାଇବାକୁ ଅନୁରୋଧ ।*

** ସବୁ ଅଞ୍ଚଳର ଖବର ପ୍ରକାଶ ପାଉଛି । ତେଣୁ ବାଙ୍କୀ ଅଞ୍ଚଳ ବାଦ ପଡ଼ିବା ପ୍ରଶ୍ନ ଉଠୁନାହିଁ । ଆପଣ ଯଦି କିଛି ପଠାଇବାକୁ ଚାହାଁନ୍ତି, ତେବେ ଆମ ନିକଟକୁ କିମ୍ବା ସୂଚନା ଓ ଲୋକ ସମ୍ପର୍କ ଅଧିକାରୀଙ୍କ ନିକଟକୁ ପଠାନ୍ତୁ ।

## ପ୍ରଶ୍ନ କର୍ତ୍ତାଙ୍କ ପାଇଁ କୁପନ

ପ୍ରଶ୍ନ କର୍ତ୍ତାଙ୍କ ଠିକଣା

ନାମ .................................
ଗ୍ରାମ .................................
ପୋଷ୍ଟ .................................
ଭାୟା .................................
ଜିଲ୍ଲା .................................

କେବଳ ୩୦/୬/ ୨୦୦୭ ପୂର୍ବରୁ ବ୍ୟବହାର ପାଇଁ

ମତାମତ ବା ପ୍ରଶ୍ନ

..............................................................................
..............................................................................
..............................................................................
..............................................................................
..............................................................................
..............................................................................
..............................................................................
..............................................................................
..............................................................................
..............................................................................
..............................................................................
..............................................................................

ସ୍ୱାକ୍ଷର

ପ୍ରଳୟପୟୋଧିଜଳେ ଧୃତ ବାନସି ବେଦମ୍
ବିହିତ ବହିତ୍ର ଚରିତ୍ର ମଖେଦମ୍
କେଶବ ! ଧୃତ ମୀନ ଶରୀର, ଜୟ ଜଗଦୀଶ ହରେ.....

କ୍ଷିତିରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ
ଧରଣୀ ଧରଣ କିଣ ଚକ୍ର ଗରିଷ୍ଠେ
କେଶବ ! ଧୃତ କଚ୍ଛପରୂପ, ଜୟ ଜଗଦୀଶ ହରେ.....



# ଜୟଦେବଙ୍କ ଜନ୍ମସ୍ଥଳୀ ସମ୍ପର୍କରେ ଜାତୀୟ ସେମିନାର ଅନୁଷ୍ଠିତ ହେବ

ଜୟଦେବଙ୍କ ଜନ୍ମସ୍ଥଳୀ ସମ୍ପର୍କରେ ପ୍ରାମାଣିକ ତଥ୍ୟକୁ ଭିତ୍ତିକରି ଜାତୀୟ ସେମିନାର ଖୁବ୍ ଶୀଘ୍ର ଭୁବନେଶ୍ୱରଠାରେ ଅନୁଷ୍ଠିତ ହେବ ବୋଲି ରାଜ୍ୟ କ୍ରୀଡ଼ା, ସଂସ୍କୃତି, ଯୁବ ସେବା ଏବଂ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ ଶରତ କୁମାର କର ପ୍ରକାଶ କରିଛନ୍ତି ।

ଏ ସମ୍ପର୍କରେ ଏକ ଆଲୋଚନା ବୈଠକ ରାଜ୍ୟ ସଚିବାଳୟଠାରେ ମନ୍ତ୍ରୀ ଶ୍ରୀ କରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ପ୍ରଫେସର ଗୌରୀ କୁମାର ବ୍ରହ୍ମା, ଡଃ ବନମାଳି ରଥ, ପଣ୍ଡିତ ପ୍ରବୋଧ କୁମାର ମିଶ୍ର, ପଣ୍ଡିତ ନୀଳମଣି ମିଶ୍ର, ରବି ନାରାୟଣ ମିଶ୍ର, ଡଃ ପ୍ରମୋଦ ଚନ୍ଦ୍ର ମିଶ୍ରଙ୍କ ସମେତ ସଂସ୍କୃତି ବିଭାଗ ଉପଶାସନ ସଚିବ ଜି. କେ. ଶ୍ରୀଚନ୍ଦନ, ନିର୍ଦ୍ଦେଶକ ପି. କେ. ମିଶ୍ର ଏବଂ ବିଭାଗୀୟ ଅନ୍ୟାନ୍ୟ ଅଧିକାରୀବୃନ୍ଦ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

ବୈଠକରେ ବିଶଦ ଆଲୋଚନା କରାଯାଇ ଉତ୍କଳ ବିଶ୍ୱବିଦ୍ୟାଳୟ ସହଯୋଗରେ ଏହି ସେମିନାର ଅନୁଷ୍ଠିତ କରାଯିବା ସ୍ଥିର ହୋଇଛି । ଏହି ସେମିନାର ପାଇଁ ଦିନ ଧାର୍ଯ୍ୟ କରିବା ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କ ସହ ପରାମର୍ଶ କରି ନିଷ୍ପତ୍ତି ନେବା ପାଇଁ ପ୍ରଫେସର ବ୍ରହ୍ମା ଏବଂ ପଣ୍ଡିତ ନୀଳମଣି ମିଶ୍ରଙ୍କୁ ଦାୟିତ୍ୱ ଅର୍ପଣ କରାଯାଇଛି । ଜୟଦେବଙ୍କ ସମ୍ପର୍କରେ ଯାହା ସବୁ ଗବେଷଣାତ୍ମକ ଲେଖା ଆଜିଯାଏ ପ୍ରକାଶ ପାଇଛି, ସେ ସମସ୍ତ ଏହି ସେମିନାରରେ ଆଲୋଚିତ ହେବ । ଜୟଦେବଙ୍କ ସମ୍ପର୍କରେ ଯେଉଁସବୁ ଗବେଷକ ଓଡ଼ିଶା ବାହାରେ ଅଛନ୍ତି, ସେମାନଙ୍କୁ ଏହି ସେମିନାରରେ ଭାଗ ନେବା ଲାଗି ନିମନ୍ତ୍ରଣ କରାଯିବା ସ୍ଥିର ହୋଇଛି । ଏହି ସେମିନାର ଦ୍ୱାରା ଜୟଦେବଙ୍କ ଜନ୍ମ ଓଡ଼ିଶାରେ ବୋଲି ଯେଉଁ ପ୍ରାମାଣିକ ତଥ୍ୟ ସବୁ ମିଳିବ, ସେସବୁ ଉଭୟ ଓଡ଼ିଆ ଓ ଇଂରାଜୀରେ ପୁସ୍ତକମାନ ପ୍ରକାଶ କରାଯିବା ନେଇ ବୈଠକରେ ନିଷ୍ପତ୍ତି ନିଆଯାଇଛି । ଏହା ବ୍ୟତୀତ ରାଜ୍ୟରେ ଏକ "ଜୟଦେବ ଗବେଷଣା ପରିଷଦ" ମଧ୍ୟ ଗଠନ କରାଯିବ ଏବଂ ଏହାର ରୂପରେଖ ସ୍ଥିର କରିବା ପାଇଁ ବିହିତ ପଦକ୍ଷେପ ନେବା ଲାଗି ପ୍ରଫେସର ବ୍ରହ୍ମା ଏବଂ ପଣ୍ଡିତ ନୀଳମଣି ମିଶ୍ରଙ୍କୁ ଆବାହକ ରୂପେ ମନୋନୀତ କରାଯାଇଛି । ଜୟଦେବଙ୍କ ଜନ୍ମସ୍ଥଳୀଠାରେ ଜନସାଧାରଣଙ୍କ ଦ୍ୱାରା ପାଳିତ ହେଉଥିବା "ଜୟଦେବ ମେଳା"କୁ ଉତ୍ସାହିତ କରିବା ପାଇଁ ଚଳିତ ବର୍ଷଠାରୁ ରାଜ୍ୟ ସଂସ୍କୃତି ବିଭାଗ ତରଫରୁ ସହାୟତା କରାଯିବ ବୋଲି ମଧ୍ୟ ବୈଠକରେ ନିଷ୍ପତ୍ତି ହୋଇଛି ।

# "ଗୀତଗୋବିନ୍ଦର ବିଶ୍ଳେଷଣ"

ଶ୍ରୀ ଅଜିତ୍ କୁମାର ତ୍ରିପାଠୀ

ବେଦାନ୍ତ ବାକ୍ୟ ଦ୍ୱାରା ଯେଉଁ ପୁରୁଷଙ୍କ ତତ୍ତ୍ୱ ବୁଝା ଯାଇଥାଏ, ଯେ ସୃଷ୍ଟିର ସମସ୍ତ ଜ୍ଞାନ ଓ ଚେତନାର ପ୍ରେରକ, ମହାଯୋଗୀ, ଅନ୍ତର୍ଯ୍ୟାମୀ, ପରଂବ୍ରହ୍ମ, ଯାହାଙ୍କ ଦ୍ୱାରା ସୃଷ୍ଟି ଓ ଧେନୁ ପାଳିତ ହେଉଛନ୍ତି ସେହି ପରମ ଜ୍ୟୋତିର୍ମୟ ପୁରୁଷଙ୍କୁ ଗୋବିନ୍ଦ କୁହାଯାଏ ଓ ତାଙ୍କ ନିମନ୍ତେ ଉଦ୍ଦିଷ୍ଟ ସଙ୍ଗୀତର ଆବେଶ ହିଁ "ଗୀତଗୋବିନ୍ଦ"।

କାବ୍ୟ ଆରମ୍ଭରେ ଗୀତଗୋବିନ୍ଦର ପ୍ରଥମ ଶ୍ଳୋକରେ ବର୍ଣ୍ଣିତ ଅଛି ଯେ ମେଘ ଦ୍ୱାରା ଆଚ୍ଛାଦିତ ଶ୍ୟାମ ବନ ଭୂମିରେ ରାତି ଭଳି ଅନ୍ଧକାର ହୋଇଯିବାରୁ ଡରୁଥିବା କୃଷ୍ଣଙ୍କୁ ଘରେ ପହଞ୍ଚାଇ ଦେବାକୁ ନନ୍ଦ ନିର୍ଦ୍ଦେଶରେ ରାଧା ମାଧବଙ୍କୁ ନେଇ ଯିବା ପଥରେ ଥିବା ଯମୁନା କୂଳ କୁଞ୍ଜରେ ନେଇ ଗୋପନ କେଳି ରଚନା କଲେ।

ଏ ସୃଷ୍ଟିରେ ବଳିଷ୍ଠାନ ଜୀବ ମନରେ ଭଗବତ ବାସନାର ଅର୍ଥ ସତ୍ତା ନାହିଁ। ନିଜ ସୃଷ୍ଟିର ଏପରି ଭାବରେ ସୃଷ୍ଟି ହୋଇଛନ୍ତି ସ୍ରଷ୍ଟା। ଜୀବ ମଧ୍ୟରେ ଭଗବତ୍ ସତ୍ତା ଦେଦୀପ୍ୟମାନ ଥିଲେ ମଧ୍ୟ ମାୟାର ଘନ କୁହେଳିକାରେ ତାହା ଆଚ୍ଛାଦିତ। କେବଳ ବିବେକର ନିର୍ଦ୍ଦେଶରେ ସାଧନ ମାର୍ଗ ଦ୍ୱାରା ମନ ମଧ୍ୟରେ ଥିବା ଆହ୍ଲାଦିନୀ ଶକ୍ତି ଭାବର ଜାଗ୍ରତରେ ହିଁ ସେହି ଅନ୍ଧକାର ଭେଦ ହୋଇ ପାରିବ, ଫଳରେ ଜୀବନ ଯମୁନାର ବେଳାଭୂମିରେ ସୃଷ୍ଟି ହେବ ଫୁଲ କୁସୁମିତ ବୃନ୍ଦାବନ। ନିତ୍ୟାନନ୍ଦଙ୍କ ସହ ନିତ୍ୟ ଲୀଳା କରି ଜୀବ ପରମ ସୁଖ ପାଇପାରିବ।

ଏହି ପ୍ରଥମ ଶ୍ଳୋକରେ ହିଁ ଗୀତଗୋବିନ୍ଦର ସମସ୍ତ ତତ୍ତ୍ୱ ନିହିତ ଅଛି। କ୍ରମାନ୍ୱୟରେ ଏହାର ବିସ୍ତୃତି ପର ଅଧ୍ୟାୟମାନଙ୍କରେ ଦିଆ ଯାଇଛି। ଦ୍ୱିତୀୟ ଶ୍ଳୋକରେ କବି "ଶ୍ରୀ ବାସୁଦେବଙ୍କ ରତି କେଳି କଥା' ବର୍ଣ୍ଣନା କରିଛନ୍ତି। ବିଷ୍ଣୁ ପୁରାଣ ପ୍ରଥମ ଅଂଶ ଦ୍ୱିତୀୟ ଅଧ୍ୟାୟରେ ଅଛି।

"ବାସଃ ସର୍ବ ନିବାସଶ୍ଚ ବିଶ୍ୱାନି ଯସ୍ୟ ଲୋମସୁ
ତସ୍ୟ ଦେବ ପରଂ ବ୍ରହ୍ମ ବାସୁଦେବ ଇତି ରତଃ"

ସେହି ବାସୁଦେବ ହିଁ ସର୍ବତ୍ର ବିଦ୍ୟମାନ। ସେ ସମସ୍ତ ତତ୍ତ୍ୱର କାରଣ ଓ ସର୍ବ ବ୍ୟାପକ। କେହି ତାଙ୍କୁ ଦେଖି ନାହିଁ ତେଣୁ ସେ ଅରୂପ, ବାକ୍ୟ ଦ୍ୱାରା ପ୍ରକାଶିତ ହେଉ ନ ଥିବାରୁ ସେ ଅତିନ୍ଦ୍ରିୟ। ଏ ଭଳି ଶକ୍ତିର ପୁଣି ରତି କେଳି କଥା କ'ଣ? ଯଦି ହରି ସ୍ମରଣରେ ମନ ଥାଏ ଓ ଯଦି ବିଳାସ କଳା ପ୍ରତି ଆଗ୍ରହ ଥାଏ ତେବେ ଗୀତ ଗୋବିନ୍ଦ ଶୁଣିବା ପାଇଁ କାବ୍ୟକାର କାବ୍ୟ ଆରମ୍ଭରେ ତୃତୀୟ ଶ୍ଳୋକରେ କହିଛନ୍ତି। ବିଳାସ କଳା ମାଧ୍ୟମରେ ହରି କଥା ଶ୍ରବଣ ନିମନ୍ତେ ପରୋକ୍ଷରେ କୁହାଯାଇଛି। ଅତିନ୍ଦ୍ରିୟ ଓ ଅପ୍ରକାଶିତ ଶକ୍ତିର ଅପ୍ରାକୃତ ଲୀଳା ଭକ୍ତଜନମାନେ ଶୁଣିବା ପାଇଁ କବିଙ୍କର ନିର୍ଦ୍ଦେଶ।

ଅପ୍ରାକୃତ ଜଗତର ଲୀଳା ହିଁ ପ୍ରାକୃତ ଜଗତରେ ବିକଶିତ। ତା' ନ ହେଲେ ସ୍ରଷ୍ଟାର ସୃଷ୍ଟି ରହିବ ନାହିଁ। ଜୀବ ସୃଷ୍ଟିଠାରୁ ତା'ର ଶେଷ ଯାଏ ଏହି ଅନନ୍ତ ଲୀଳା ଲାଗି ରହିଥିବ। ଲୀଳାମୟଙ୍କ ଇଚ୍ଛାକୁ ପ୍ରାକୃତ ଜଗତରେ ଫୁଟାଇ ଜୀବକୁ ଭଗବନ୍ମୁଖୀ କରିବା ହିଁ ଗୀତଗୋବିନ୍ଦର ଲକ୍ଷ୍ୟ। ଭାବ ଜଗତର ଲୀଳାକୁ ରସମୟ ରୂପରେ ଫୁଟାଇବା ବ୍ୟକ୍ତି ସାଧାରଣ ନୁହନ୍ତି। ତେଣୁ ବାଖ୍ୟାକାରମାନେ ଶ୍ରୀ ଜୟଦେବଙ୍କୁ ଜଗନ୍ନାଥ ଓ ବ୍ୟାସଦେବଙ୍କ ଅବତାର ଭାବେ ବର୍ଣ୍ଣନା କରିଛନ୍ତି। ସେହି ମହାନ ଆତ୍ମା ସମଗ୍ର ମାନବ ଜାତିର ଚଲାପଥ ପୁଷ୍ପିତ କରନ୍ତୁ ଏହା ହିଁ ତାଙ୍କର ଚରଣରେ ପ୍ରତ୍ୟେକଙ୍କର ପ୍ରାର୍ଥନା ହେଉ।

---

*କମିଶନର ତଥା ଶାସନ ସଚିବ,*
*ଗ୍ରାମ୍ୟ ଉନ୍ନୟନ ବିଭାଗ,*
*ଓଡ଼ିଶା।*



ଭୁବନେଶ୍ୱରଠାରେ ଅନୁଷ୍ଠିତ ଭାରତୀୟ ସାଧାରଣ ପ୍ରଶାସନିକ ଅନୁଷ୍ଠାନର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ବୋଧନ ଦେଉଛନ୍ତି।

# ବୈଷ୍ଣବ ଗୀତିକାବ୍ୟ ଗୀତଗୋବିନ୍ଦ

ଡକ୍ଟର ଭଗବାନ ପଣ୍ଡା

ଶ୍ରୀକୃଷ୍ଣ ଜଗନ୍ନାଥଙ୍କ ଅନନ୍ୟ ଭକ୍ତ ସନ୍ଥଶିରୋମଣି କବିରାଜ ଜୟଦେବଙ୍କ (୧୧୪୭–୧୧୭୦ ଖ୍ରୀ:ଅ:) ପ୍ରଣୀତ ଶ୍ରୀରାଧାମାଧବ 'ରହଃକେଳି' ବର୍ଣ୍ଣନାପରକ 'ଗୀତଗୋବିନ୍ଦ ମହାକାବ୍ୟ'। ଏକ ଆଦର୍ଶ ସ୍ଥାନୀୟ ବୈଷ୍ଣବ କାବ୍ୟଗ୍ରନ୍ଥ। ଭକ୍ତିହୀନ ଅଜ୍ଞାନ ଜନସାଧାରଣଙ୍କ ଦ୍ୱାରା ଏହା ଏକ ମାନବ ସୁଲଭ ରତିଲୀଳା ପ୍ରଖ୍ୟାପକ କାବ୍ୟ ରୂପେ ବିବେଚିତ। ଅନେକ ଏହାକୁ କାମଭାବୋଦ୍ଦୀପକ ଅଶ୍ଳୀଳ କାବ୍ୟ ବୋଲି ବିଚାର କରିଥାନ୍ତି। ପର ପ୍ରତ୍ୟୟନେୟବୁଦ୍ଧିଶୀଳ ସାମ୍ପ୍ରତିକ ବିଶିଷ୍ଟ ଆଲୋଚକଙ୍କ ଦ୍ୱାରା ଏହି ବିଚାର ପ୍ରଖ୍ୟାପିତ ହେଉଥିବାରୁ 'ଗୀତଗୋବିନ୍ଦ ଏକ ଅଶ୍ଳୀଳ କାବ୍ୟ'–ଏହି ଧାରଣା ଅନେକଙ୍କ ମନରେ ଦୃଢ଼ୀଭୂତ ହୋଇ ରହିଛି। କିନ୍ତୁ ଏହା ଠିକ୍ ମନେ ହୁଏ ନାହିଁ। କାରଣ, କୌଣସି ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ କବିଙ୍କ ସମକାଳୀନ ଧର୍ମୀୟ ପରିବେଶ, କାବ୍ୟ ରଚନାର ପୃଷ୍ଠଭୂମି ଓ କାବ୍ୟର ପ୍ରତିପାଦ୍ୟ ତତ୍ତ୍ୱ ସମ୍ପର୍କରେ ସମ୍ୟକ୍ ସମୀକ୍ଷା ଏକାନ୍ତ ଆବଶ୍ୟକ। ଏଠାରେ ସେ ସମ୍ପର୍କୀୟ ତଥ୍ୟ ଓ ତତ୍ତ୍ୱର ବିସ୍ତୃତ ଆଲୋଚନା କରିବାର ଅବକାଶ ନାହିଁ। ତେଣୁ ଗୀତଗୋବିନ୍ଦ ରଚନାର ପୃଷ୍ଠଭୂମି ବିଷୟରେ ଏକ ସଂକ୍ଷିପ୍ତ ସୂଚନା ଦିଆଯାଇପାରେ।

ଓଡ଼ିଶାରେ ଯେତେବେଳେ ବୌଦ୍ଧ, ଶୈବ ଓ ବୈଷ୍ଣବ ଭକ୍ତମାନଙ୍କ ମଧ୍ୟରେ ଗୁରୁତର ଅନ୍ତର୍ବିବାଦ ହେତୁ ସାଧାରଣ ଜୀବନ ଯାତ୍ରା ଅସ୍ତବ୍ୟସ୍ତ ଏବଂ ବୌଦ୍ଧ ସହଜଯାନୀଙ୍କ ପ୍ରଭାବରେ ଭକ୍ତଜନ ସମାଜ ଅଧିକରୁ ଅଧିକ ପ୍ରଭାବିତ ହୋଇପଡ଼ିଥିଲା। ସେତିକିବେଳେ କବିରାଜ ଜୟଦେବଙ୍କ ଆବିର୍ଭାବ ଘଟିଥିଲା। ଭଗବାନ୍ ବୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ପ୍ରତୀକ ସ୍ୱରୂପ ଆରାଧିତ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କୁ ଉପଜୀବ୍ୟ କରି କବିରାଜ ଜୟଦେବ ଏହି ବିବାଦର ସହଜ ସମାଧାନ ଓ ଏକ ଧର୍ମୀୟ ସମନ୍ୱୟ ପ୍ରତିପାଦନ ପାଇଁ ଯେଉଁ ଉଦ୍ୟମ କରିଥିଲେ, ତାହାରି ଫଳରେ ଗୀତଗୋବିନ୍ଦ ପରି ଏକ ଅପୂର୍ବ ଓ ଅନୁପମ କାବ୍ୟ ସୃଷ୍ଟି ହେଲା। କେବଳ ବୌଦ୍ଧ, ଶୈବ ବା ବୈଷ୍ଣବ ନୁହେଁ ଓଡ଼ିଶାର ଶାକ୍ତ, ସୌର, ଗାଣପତ୍ୟାଦି ପ୍ରମୁଖ ଧର୍ମମତବାଦରେ ବି ଗୀତଗୋବିନ୍ଦ ଏକ ଧର୍ମଗ୍ରନ୍ଥ ରୂପେ ସ୍ୱୀକୃତି ଲାଭ କଲା। ଫଳରେ, ଓଡ଼ିଶାର ସମସ୍ତ ଦେବଦେବୀ ମନ୍ଦିରରେ ଗୀତଗୋବିନ୍ଦ ପାରାୟଣର ବ୍ୟବସ୍ଥା ପ୍ରଚଳିତ ହେଲା। ଅଦ୍ୟାବଧି ଏହି ପରମ୍ପରା କେତେକ କ୍ଷେତ୍ରରେ ଅକ୍ଷୁଣ୍ଣ ରହିଛି। ତେଣୁ ଗୀତଗୋବିନ୍ଦର ଅଶ୍ଳୀଳତା ବିଷୟ ଆଲୋଚନା କଲାବେଳେ ଗବେଷକମାନେ ଏହି କାବ୍ୟଗ୍ରନ୍ଥ ରଚନାର ପୃଷ୍ଠଭୂମି, ପ୍ରଭାବ ଓ ପ୍ରତିଷ୍ଠା ପ୍ରତି ସଚେତନ ହେବା ବାଞ୍ଛନୀୟ। ଗୀତଗୋବିନ୍ଦକୁ ଅଶ୍ଳୀଳ କାବ୍ୟ ବୋଲି କହିଲେ ପ୍ରାଚୀନ ଓ ଆଧୁନିକ ଭାରତୀୟ ସାହିତ୍ୟର ସର୍ବୋତ୍ତମ ସୃଷ୍ଟିରତ୍ନ ଯେ ପ୍ରତ୍ୟାଖ୍ୟାତ ହୋଇଯିବ, ଏଥିରେ ସନ୍ଦେହ ନାହିଁ। ଶ୍ରୀଗୀତଗୋବିନ୍ଦର ମଙ୍ଗଳାଚରଣରେ କବି "ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃକେଳୟଃ" (୧–୧) ପଙ୍‌କ୍ତିରେ କାବ୍ୟାଦର୍ଶ ଅନୁଯାୟୀ ଆଶୀର୍ବାଦ, ନମସ୍କ୍ରିୟା ଓ ବସ୍ତୁନିର୍ଦ୍ଦେଶାତ୍ମକ ତ୍ରିବିଧ ମଙ୍ଗଳର ଅବତାରଣା ପୂର୍ବକ ରହଃକେଳି ପଦଦ୍ୱାରା ବାଳକୃଷ୍ଣଙ୍କର ଲୋକୋତ୍ତର ଚରିତ୍ରହିଁ ସୂଚନା ଦେଇଛନ୍ତି। ଏହା ସାଧାରଣ ରତିଲୀଳା ନୁହେଁ। ମଙ୍ଗଳାଚରଣ ପରେ ନିମ୍ନୋକ୍ତ ଶ୍ଳୋକରେ କବି କହିଛନ୍ତି – ହେ ସହୃଦୟ! ହରିସ୍ମରଣ ଦ୍ୱାରା ଯଦି ଆପଣମାନେ ମନକୁ ସରସ କରିବାକୁ ଚାହାନ୍ତି, ଶ୍ରୀବାସୁଦେବଙ୍କ ରାସଲୀଳାର ରସମାଧୁରୀ ଅନୁଭବ କରିବାର ଯଦି ଆନ୍ତରିକ ଆଗ୍ରହ ଅଛି, ତେବେ ମଧୁର କୋମଳ କାନ୍ତପଦାବଳୀ ମଣ୍ଡିତ ଜୟଦେବଙ୍କର ଏହି ରଚନା ଶୁଣନ୍ତୁ–

ଯଦି ହରିସ୍ମରଣେ ସରସଂମନୋ
ଯଦି ବିଳାସ କଳାସୁ କୁତୂହଳମ୍।
ମଧୁର କୋମଳକାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍। (୧–୩)

ସାହିତ୍ୟ ଶାସ୍ତ୍ରର ଘୋଷଣା ଅନୁସାରେ 'ଦେବାଦିବିଷୟା ରତିଃ'। ଅର୍ଥାତ୍ କାବ୍ୟରେ ଇଷ୍ଟଦେବଦେବୀଙ୍କ ରତି ବର୍ଣ୍ଣନା ଆଦୌ ଦୋଷାବହ ନୁହେଁ। କାବ୍ୟ ରଚନା କ୍ଷେତ୍ରରେ ଦେବଦେବକୀଙ୍କ ରତିବର୍ଣ୍ଣନା ଏକ ପରମ୍ପରା ରୂପେ ବହୁ ପ୍ରାଚୀନ କାଳରୁ ଗୃହୀତ ହୋଇଥିବାରୁ ଗୀତଗୋବିନ୍ଦକୁ ଅଶ୍ଳୀଳ କାବ୍ୟ ବୋଲି ପ୍ରଚାର କରିବା ଆଦୌ ଯୁକ୍ତିଯୁକ୍ତ ନୁହେଁ। କାରଣ ସେପରି ବିଚାର ମନରେ ପୋଷଣ କଲେ ସର୍ବବିଧ କଳାତ୍ମକ ରଚନା ବିଶେଷ ଓ ଜୀବସତ୍ତା ବା ଜୀବନ ଚିରଦିନ ପାଇଁ ଧରାପୃଷ୍ଠରୁ ଅପସୃତ ହୋଇଯିବ ଏବଂ ସତ୍ୟ, ଶିବ ଓ ସୁନ୍ଦରର ଅସ୍ତିତ୍ୱ [illegible] କିଛି ଆଉ ରହିବ ନାହିଁ। ସୃଜନାତ୍ମକ କଳା ଓ କାବ୍ୟରେ ଅଶ୍ଳୀଳ ଭାବ ପୋଷଣ କରିବା ଅଦୂରଦର୍ଶିତା ଓ ଅବିବେକିତାର ପରିଚାୟକ।

କବିରାଜ ଜୟଦେବ ଜଣେ ପରମ ବୈଷ୍ଣବ ଥିଲେ। ଭଗବତ୍ ଗୁଣଗାନ କରିବା ଥିଲା ତାଙ୍କ ଜୀବନର ପରମ ଓ ଚରମ ଲକ୍ଷ୍ୟ। ଗୀତଗୋବିନ୍ଦର ବିଭିନ୍ନ ସ୍ଥଳରେ ସେ ନିଜକୁ ହରିସ୍ମରଣ [illegible] କୁତହରିସେବ, ହରିଚରଣଶରଣ, [illegible] ମଧୁରିପୁପଦସେବକ ରୂପେ ପ୍ରଖ୍ୟାପନ କରିଛନ୍ତି। ଶ୍ରୀକୃଷ୍ଣମାନସ ଜୟଦେବଙ୍କ ପରି କବିଙ୍କ ସୃଷ୍ଟିକୁ ଅଶ୍ଳୀଳ ବୋଲି ମତବ୍ୟକ୍ତ କରିବା ଧୃଷ୍ଟତା ବ୍ୟତୀତ ଅନ୍ୟ କିଛି ନୁହେଁ। ଗୀତଗୋବିନ୍ଦର ପ୍ରଥମ ପ୍ରବନ୍ଧ ଗୀତରେ କବି, ଜଗତ୍ପତି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ରଚିତ "ଦଶାବତାର ସ୍ତୁତି" [illegible]

...ଶ୍ରୀଜୟଦେବଙ୍କୁ ଦଶାକୃତିକୃତ୍ ପରଂବ୍ରହ୍ମ ଶ୍ରୀକୃଷ୍ଣ ରୂପେ (୧–୫) ପ୍ରତିପାଦନ କରିଛନ୍ତି । ହରିଭକ୍ତ କବିଙ୍କ ପ୍ରଣୀତ ଓ ହରିଗୁଣ ... ସମ୍ପନ୍ନ କାବ୍ୟକୁ ଏକ ଧର୍ମଗ୍ରନ୍ଥ ବ୍ୟତୀତ ଅନ୍ୟ କିଛି ଭାବିବା ସର୍ବଥା ଅନୁଚିତ । କବି ସ୍ୱୟଂ ପ୍ରାର୍ଥନା କରିବାକୁ ଯାଇ କହିଛନ୍ତି–

ପ୍ରଭୁ:– ମୋ ରଚିତ ଏହି ଦୋଷ ରହିତ ଗୀତ ଶ୍ରୋତାମାନଙ୍କର ଆନନ୍ଦ ବର୍ଦ୍ଧନ କରୁ–

ଶ୍ରୀଜୟଦେବ କବେରିଦଂ କୁରୁତେ ମୁଦଂ
ମଙ୍ଗଳ ମୁଜ୍ଜ୍ୱଳଗୀତଂ ଜୟ ଜୟ ଦେବ ହରେ ।
(୨–୮)

ଶ୍ରୀହରିଚରଣ ସ୍ମରଣ ନିମିତ୍ତ ଶ୍ରେଷ୍ଠ ସ୍ତୁତିସ୍ୱରୂପ 'ଗୀତଗୋବିନ୍ଦ' ରଚିତ ହୋଇଥିବା ନିମ୍ନୋକ୍ତିରୁ ପ୍ରତିପାଦିତ ହୁଏ–

ଶ୍ରୀଜୟଦେବ ଭଣିତମିଦମୁଦୟତି
ହରି ଚରଣସ୍ମୃତିସାରମ୍ ।
ସରସବସନ୍ତ ସମୟବନ ବର୍ଣ୍ଣମନୁଗତ
ମଦନ ବିକାରମ୍ ।
(୩–୮)

କେଶବ କେଳିରହସ୍ୟ ବର୍ଣ୍ଣନାତ୍ମକ ଏହି ଗୀତଗୋବିନ୍ଦ ସଂସାରରେ ଯଶ ଓ କଲ୍ୟାଣ ବିସ୍ତାର କରୁ ଏବଂ ସମସ୍ତେ ସୁଖୀ ଓ ସମୃଦ୍ଧ ହୁଅନ୍ତୁ ବୋଲି ଆଶା ପ୍ରକାଶ କରିବାକୁ ଯାଇ କବି କହିଛନ୍ତି–

ଶ୍ରୀଜୟଦେବ ଭଣିତ ମିଦମଦ୍ଭୁତ
କେଶବକେଳି ରହସ୍ୟମ୍ ।
ବୃନ୍ଦାବନ ବିପିନେ ଲଳିତଂ ବିତନୋତୁ
ଶୁଭାନି ଯଶସ୍ୟମ୍ ।
(୪–୮)

ପୁଣ୍ୟବାନ୍ ଓ ଭକ୍ତି ପରାୟଣ ଲୋକେ କଳିକଲୁଷହାରୀ ମୋହନ ମଧୁରିପୁଙ୍କ ରୂପ ଓ ଶ୍ରୀଚରଣ କମଳ ସ୍ମରଣ କରି ସୁଖୀ ହୁଅନ୍ତୁ–

ଶ୍ରୀଜୟଦେବ ଭଣିତାମତି ସୁନ୍ଦରମୋହନ
ମଧୁରି ପୁରୂପମ୍ ।
ହରିଚରଣସ୍ମରଣଂ ପ୍ରତି ସମ୍ପ୍ରତି
ପୁଣ୍ୟବତାମନୁରୂପମ୍ ।
(୫–୮)

ସମୁଦ୍ରରୁ ଜାତ ଯଶସ୍ୱୀ ଓ ସର୍ବ ଜନମନୋହାରୀ ରୋହିଣୀ ରମଣ ଚନ୍ଦ୍ରଙ୍କ ପରି କବିରାଜ ଜୟଦେବ 'କେନ୍ଦୁବିଲ୍ୱ ଶାସନରେ (ପୁରୀ ଜିଲ୍ଲା) ଆବିର୍ଭୂତ ହୋଇ ଏହି ଧର୍ମଗ୍ରନ୍ଥ 'ଗୀତଗୋବିନ୍ଦ' ରଚନା କରିଛନ୍ତି (୭–୮) । ପ୍ରତ୍ୟେକ ହରିଭକ୍ତଙ୍କ ପକ୍ଷରେ ଏହା ପଠନୀୟ (୮–୮) । କେଶବ ପଦପଙ୍କଜ ଲାଭ ପାଇଁ ଏହାର ପାରାୟଣ ଏକାନ୍ତ ବାଞ୍ଛନୀୟ (୯–୮) । ଗୀତଗୋବିନ୍ଦ ପାରାୟଣରେ ସମସ୍ତଙ୍କ ହୃଦୟରେ ହରିଭାବନା ଜାତ ହେବ ବୋଲି କବି ଆଶା କରିଛନ୍ତି–

ଭଣତି କବି ଜୟଦେବେ
ବିରହି ବିଳସିତେନ ।
ମନସି ରଭସବିଭବେ
ହରିରୁଦୟତୁ ସୁ କୃତେନ
(୧୦–୮)

ଶ୍ରୀହରି ପାଦ ସେବକ କବି ଜୟଦେବ ପରମ ରମଣୀୟ, ପ୍ରମୁଦିତ ହୃଦୟ ଓ ଅତି ଦୟାଳୁ ହରିଙ୍କୁ ପ୍ରଣାମ ଓ ତାଙ୍କଠାରେ ଆତ୍ମସମର୍ପଣ କରିବା ପାଇଁ ସମସ୍ତଙ୍କୁ ନିବେଦନ କରିବାକୁ ଯାଇ କହିଛନ୍ତି–

ଶ୍ରୀଜୟଦେବେ କୃତ ହରିସେବେ ଭଣତି
ପରମ ରମଣୀୟମ୍ ।
ପ୍ରମୁଦିତ ହୃଦୟଂ ହରିମତି ସଦୟଂ
ନମତି ସୁକୃତ କମନୀୟମ୍ । (୧୧–୮)

ଗୀତଗୋବିନ୍ଦ କେବଳ ହରିଭକ୍ତମାନଙ୍କୁ ନୁହେଁ, ରସିକ ଜନସାଧାରଣଙ୍କୁ ମଧ୍ୟ ଆନନ୍ଦ ପ୍ରଦାନ କରେ (୧୨–୮) । ଶ୍ରୀହରିଚରଣ ସେବକ କବି ଜୟଦେବଙ୍କ ଏହି କାବ୍ୟ, କଳାବତୀ ଯୁବତୀ ନାରୀ ସଦୃଶ ସମସ୍ତଙ୍କ ଚିତ୍ତକୁ ଆହ୍ଲାଦିତ କରୁ ବୋଲି କବି ଆଶା କରିଛନ୍ତି (୧୩–୮) । ଏହା ପାଠ କଲେ କଳିଯୁଗୋଚିତ ଦୁରାଚରଣ ମନରୁ ଦୂର ହୋଇଯାଏ (୧୫–୮) ଲଳିତ ପଦାବଳୀ ମଣ୍ଡିତ ଏହି ହରିରଚିତାସ୍କ ଗୀତ ରସିକଜନମାନସକୁ ପ୍ରମୁଦିତ କରୁ ବୋଲି କବି ଇଚ୍ଛା ପ୍ରକାଶ କରିଛନ୍ତି (୧୮–୮) । କବିରାଜ ରାଜ ଜୟଦେବ ଶ୍ରୀକୃଷ୍ଣ ମୁରାରିଙ୍କୁ ପ୍ରାର୍ଥନା କରିବାକୁ ଯାଇ କହିଛନ୍ତି–

ବିହିତ ପଦ୍ମାବତୀ ସୁଖ ସମାଜେ ।
କୁରୁ ମୁରାରେ ମଙ୍ଗଳଶତାନି
ଭଣତି ଜୟଦେବ କବିରାଜ ରାଜେ
(୨୮–୮)

ହେମୁରାରେ : ନୃତ୍ୟପ୍ରବୀଣା ପତ୍ନୀ ପଦ୍ମାବତୀଙ୍କ ସୁଖ ସନ୍ଦେହ ପ୍ରଦାନକାରୀ କବିରାଜ ଜୟଦେବଙ୍କ ରଚିତ ଗୀତ ଶ୍ରୋତୃବର୍ଗଙ୍କ ଶତ ଶତ ମଙ୍ଗଳ ବିଧାନ କରୁ ।

ପୁଣ୍ୟଜନଙ୍କ ଓ ପୁଣ୍ୟପ୍ରଦାୟକ ହରିଙ୍କୁ ପ୍ରଣାମ ପୂର୍ବକ ଚିରକାଳ ହୃଦୟରେ ସ୍ଥାପନ କରିବା ପାଇଁ କବି ସମସ୍ତଙ୍କୁ ନିବେଦନ କରିଛନ୍ତି (୨୨–୮) । ସର୍ବଶେଷ ପ୍ରବନ୍ଧରେ କବି କହିଛନ୍ତି–

ଶ୍ରୀଜୟଦେବ ବଚସି ରୁଚିରେ ହୃଦୟଂ
ସଦୟଂ କୁରୁ ମଣ୍ଡନେ ।
ହରିଚରଣ ସ୍ମରଣାମୃତ କୃତ କଳି କଲୁଷ
ଭବଜ୍ୱର ଖଣ୍ଡନେ ।
(୨୪–୮)

ହେ ସ୍ୱଜନବର୍ଗ ! ଶ୍ରୁତି ସୁଖକର ହରିଚରଣ ସ୍ମରଣ ରୂପକ ଅମୃତ ଦ୍ୱାରା କଳିକଲୁଷ ରୂପ ଜ୍ୱରତାପ ଦୂରୀକରଣରେ ସମର୍ଥ ଜୟଦେବଙ୍କ ରଚିତ ଗୀତରେ ସଦୟ ହୋଇ ମନୋନିବେଶ କରନ୍ତୁ । ଆଦର ସହକାରେ ଏହା ଶୁଣିବାକୁ ଓ ପଢ଼ିବାକୁ କବି ସମସ୍ତଙ୍କୁ ନିବେଦନ କରିଛନ୍ତି ।

ସମଗ୍ର ଗୀତଗୋବିନ୍ଦ ଏହିପରି ଭକ୍ତିଭାବ ପରିପୂରିତ ପଦାବଳୀରେ ମଣ୍ଡିତ ହୋଇଥିବାର ଦେଖାଯାଏ । ଗୀତଗୋବିନ୍ଦ ମହା କାବ୍ୟର ଉପସଂହାରରେ କବିରାଜ ଜୟଦେବ ସୁଧୀବର୍ଗଙ୍କୁ ନିବେଦନ କରିବାକୁ ଯାଇ କହିଛନ୍ତି–

ଯଦ୍ ଗାନ୍ଧର୍ବକଳାସୁ କୌଶଳମନୁଧ୍ୟାନଂ ଚ
ଯଦ୍‌ବୈଷ୍ଣବଂ ।
ଯଚ୍ଛୃଙ୍ଗାର ବିବେକତତ୍ତ୍ୱମପି
ଯତ୍କାବ୍ୟେଷୁ ଲୀଳାୟିତମ୍ ।
ତତ୍ସର୍ବଂ ଜୟଦେବ ପଣ୍ଡିତ କବେଃ
କୃଷ୍ଣୈକତାନାତ୍ମନଃ
ସାନନ୍ଦାଃ ପରିଶୋଧୟନ୍ତୁ ସୁଧିୟଃ
ଶ୍ରୀଗୀତଗୋବିନ୍ଦତଃ ।
(୧୨–୮)

ହେ ସୁଧୀ ବୃନ୍ଦ! କୃଷ୍ଣୈକଚିତ୍ତ ପଣ୍ଡିତ କବି ଜୟଦେବଙ୍କ 'ଗୀତଗୋବିନ୍ଦ' ଗାନ୍ଧର୍ବକଳା ସମ୍ବନ୍ଧୀୟ କୌଶଳ ଅର୍ଥାତ୍ ସଙ୍ଗୀତ ଗାନନୈପୁଣ୍ୟଯୁକ୍ତ ବୈଷ୍ଣବ ଜନସୁଲଭ ଧ୍ୟାନ ଧାରଣା ଓ ଶୃଙ୍ଗାରତତ୍ତ୍ୱ' ସମ୍ବନ୍ଧୀୟ ଜ୍ଞାନରେ ଲୀଳାୟିତ । ଆପଣମାନେ ତାହାକୁ ଅନୁଶୀଳନ କରିବା ସଙ୍ଗେ ସଙ୍ଗେ ନିଜ ନିଜର ବିଚାର ଅନୁସାରେ ପରିଶୋଧନ କରନ୍ତୁ । ଏଥିରେ ପାଣ୍ଡିତ୍ୟ ଓ କବିତ୍ୱର ପରାକାଷ୍ଠା ଯୁଗପଦତ୍ ପ୍ରତିପାଦିତ ହୋଇଛି । ଯେଉଁମାନେ ସଙ୍ଗୀତ, ବିଷ୍ଣୁସାଧନ ଓ ଶୃଙ୍ଗାର ରସକୁ ଏକତ୍ର ଆସ୍ୱାଦନ କରିବା ପାଇଁ ଅଭିଳାଷୀ ସେମାନଙ୍କ ପକ୍ଷରେ ଗୀତଗୋବିନ୍ଦ ପଠନ ଏକାନ୍ତ ଆବଶ୍ୟକ ।

ଉପଯୁକ୍ତ ସୂଚନାରୁ ଜୟଦେବଙ୍କ ଅଲୌକିକ କାବ୍ୟ ପ୍ରତିଭା, ସଙ୍ଗୀତ ନୈପୁଣ୍ୟ ଓ ହରିଭକ୍ତିର ପରିଚୟ ମିଳେ । ଗୀତଗୋବିନ୍ଦ ଯେ ଭକ୍ତି, ପ୍ରୀତି ଓ ଗୀତିରସରୂପକ ତ୍ରିଧାରାର ସମନ୍ୱୟାତ୍ମକ ଏକ ଅପୂର୍ବ ଓ ଅଦ୍ୱିତୀୟ କାବ୍ୟ ସଙ୍ଗମ, ତାହା ପ୍ରମାଣିତ ହୁଏ । ସେହି ଚିର ଅମର ସନ୍ଥକବି ଜୟଦେବ ଓ ତାଙ୍କର ଅମର ବୈଷ୍ଣବ ଗୀତି କାବ୍ୟ ଗୀତଗୋବିନ୍ଦକୁ ଓଡ଼ିଶାର ପ୍ରତ୍ୟେକ ବ୍ୟକ୍ତି ଶ୍ରଦ୍ଧା ଓ ସଭକ୍ତିକ ପ୍ରଣାମ ନିବେଦନ କରିବା ବାଞ୍ଛନୀୟ । ଏଣୁ ଶ୍ରୀଜଗନ୍ନାଥ, ଜୟଦେବ ଓ ଗୀତଗୋବିନ୍ଦକୁ ପରସ୍ପରଠାରୁ ପୃଥକ କରିବାର ଚିନ୍ତା, ଗବେଷଣା ଓ ପାଣ୍ଡିତ୍ୟ ଗୌରବବହ ନୁହେଁ, ଐତିହ୍ୟ ଓ ପରମ୍ପରାର ପୋଷକ ନୁହେଁ ଘାତକ ବୋଲି ବିବେଚିତ, ଏଥିରେ ସନ୍ଦେହ ନାହିଁ । ଜୟନ୍ତୁ ଶ୍ରୀଜଗନ୍ନାଥ ସ୍ୱାମୀ, ଜୟତୁ ଶ୍ରୀଜୟଦେବ, ଜୟତୁ ଶ୍ରୀ ଗୀତଗୋବିନ୍ଦମ୍ ।


ସମ୍ପାଦକ,
ସଂସ୍କୃତି ନିର୍ଦ୍ଦେଶାଳୟ,
ଭୁବନେଶ୍ୱର, ଓଡ଼ିଶା ।






ଭୁବନେଶ୍ୱରଠାରେ ପିଲାମାନଙ୍କ ପାଇଁ ନିର୍ମିତ ପୂର୍ଣ୍ଣାଙ୍ଗ ଶିକ୍ଷା କେନ୍ଦ୍ରର ଏକ ଗୃହକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି (ଫଟୋ/ସୂଚନା) ।

# କୃଷ୍ଣ ସେ କେଳି ଭକ୍ତ ହୃଦୟେ......

— ପ୍ରହରାଜ ସତ୍ୟନାରାୟଣ ନନ୍ଦ

ସାନ୍ଦ୍ର ମେଘର ଆଚ୍ଛନ୍ନତେ ଦେଖ ସାରାଟା ଆକାଶ ସମାବୃତ୍ତ ।
ସେବେ କୃଷ୍ଣ ଶ୍ୟାମଳ ତମାଳ ଦ୍ରୁମରେ, ଦ୍ରୁମରେ ତିମିର ସ୍ଥାତ,
ରାତ୍ରି ଏଇ ନିର୍ଜନ ପଥେ ଭୀରୁ ସୁକୁମାର ନନ୍ଦସୁତ,
ଏକା ଫିରାଇ ନୁହେଁ ସମର୍ଥ: ଗୃହ ଅଭିମୁଖେ ସମୁଦ୍ୟତ,
ତୁମେ ଯାଅ ରାଧା ସାଥେ ନେଇ ସାଥ ହେବାରୁ ନନ୍ଦ ନିର୍ଦ୍ଦେଶିତ
ତାହା ପରେ ପଥ ପ୍ରାନ୍ତର ବୃକ୍ଷମୂଳରେ ସମାଶ୍ରିତ,
ଯମୁନା କୂଳରେ ରାଧା ଓ କୃଷ୍ଣ କେଳି କଲ୍ଲୋଳେ ଉଲ୍ଲସିତ
କୃଷ୍ଣ ସେ କେଳି ଭକ୍ତ ହୃଦୟେ ହେଉ ଆହ୍ଲାଦେ ପ୍ରକୀର୍ତ୍ତିତ ।।

କବି ଜୟଦେବଙ୍କର ଶ୍ରୀଗୀତଗୋବିନ୍ଦ ଏକ ଭକ୍ତି ରସାୟକ କାବ୍ୟ । ମୁହୁର୍ମୁହୁ ଭକ୍ତିର ପ୍ଲାବନ ସୃଷ୍ଟି କରିବା ଭଳି ସାଙ୍ଗୀତିକ ବ୍ୟଞ୍ଜନାରେ ଭାସ୍ୱର ଏଇ ଗ୍ରନ୍ଥ ନିରସ ପ୍ରାଣରେ ମଧ୍ୟ ରସ ଓ ଅନ୍ତର ଉଚ୍ଛ୍ୱାସ ସଞ୍ଚାର କରେ । ନିତ୍ୟ ଲୀଳାର ମହୋତ୍ସବରେ ଅନ୍ତରକୁ ନିମଜ୍ଜିତ କରେ । ପ୍ରତି କ୍ଷଣ ଆନନ୍ଦର ସ୍ଫୁରଣ, ଆଲୋକର ସ୍ଫୁରଣ, ଉଚ୍ଛଳିତ ଭାବାବେଗର ଉଦ୍ଗିରଣ, ବିରହର ଦଗ୍ଧ ମଧୁର ସ୍ମୃତି ଚିତ୍ତବୃତ୍ତିକୁ ଏପରି ମାର୍ଜିତ କରେ ଯେ ଇନ୍ଦ୍ରିୟ ଅଭୀପ୍ସା ସାଙ୍ଗୀତିକ ସୂକ୍ଷ୍ମ ନିର୍ଦ୍ଦେଶରେ ଦିବ୍ୟାୟିତ ହୁଏ । ଏପରି କେଳି କଥାର ସାର୍ଥକ ଦୃଷ୍ଟାନ୍ତ ବିଶ୍ୱ ସାହିତ୍ୟ ଦରବାରରେ ଦୁର୍ଲ୍ଲଭ । ଧର୍ମ ଦର୍ଶନ କ୍ଷେତ୍ରରେ ମଧ୍ୟ ଯୁଗାନ୍ତକାରୀ ଚଳଚପଳତା ନାହିଁ, ଉଚ୍ଛଳତା ନାହିଁ । କିନ୍ତୁ ଏପରି ଅଛି ଯେ ଅନ୍ୟ କେଉଁଠି ନାହିଁ । ସାଙ୍ଗୀତିକ ମାଧୁର୍ଯ୍ୟ ମଧ୍ୟରେ ଆବେଗ ଦିବ୍ୟାୟନର ଯେଉଁ ଏମିତି ପ୍ରକାର ଜୟଦେବ ପ୍ରକଟିତ କରିଛନ୍ତି ମଣିଷ ସେଭଳି ଅନୁଭୂତିକୁ ଅନ୍ତରରେ ନିବର କରିପାରେ ନାହିଁ । ସବୁ ଯେମିତି ଅନ୍ତଜଗତର ଅନ୍ୱେଷା । ଭାବ ବିହ୍ୱଳା ରାଧା ଯେତେବେଳେ ଦେଖନ୍ତି ଶ୍ୟାମବିନୋଦିଆକୁ ।

ମନ୍ଦୁଲବଲୋକିତ ମଣ୍ଡନ ଲୀଳା,
ମଧୁରିପୁ ରହମିତି ଭାବନ ଶୀଳା ।
ହରିର ମୁସେତି ନ କଥ ମଭିସାରଂ,
ସେହିରିତି ବଦତି ସଖୀ ମନୁବାରଂ ।
ଶ୍ଳିଷ୍ୟାବିନ୍ଦୁସ୍ପତି ଜଳଧରକଳ୍ପ,
ହରିବିରହଗତ ଇତି ତିମିରମନଳ୍ପଂ ।

—ହେ କୃଷ୍ଣ ଆମର ପ୍ରିୟ ସଖି ତୁମ ପରି ବେଶଭୂଷାଧାରଣ କରି ଥରକୁ ଥର ଶୁଙ୍ଘୁଛନ୍ତି । ସେ ନିଜକୁ କୃଷ୍ଣ ବୋଲି ଚିନ୍ତା କରୁଛନ୍ତି । କୃଷ୍ଣ ଆସୁ ନଥିବାରୁ ଉଦ୍‌ଭ୍ରାନ୍ତା ପରି ମେଘରଙ୍ଗର ଅନ୍ଧକାରକୁ ଆଲିଙ୍ଗନ କରୁଛନ୍ତି ଓ ଚୁମ୍ବନ ଦେଉଛନ୍ତି ।

ଏଭଳି ବର୍ଣ୍ଣନା ଉତ୍ତରଣ ଚେତନାରେ ନିଜକୁ ପ୍ରତିଷ୍ଠା କରିବା ପାଇଁ ଉଦ୍ୟତ । ପୌରାଣିକ ଆଖ୍ୟାୟିକା ଅନୁଯାୟୀ ପ୍ରାୟ ଅଶୀତି ସମ୍ବତ୍ସର କୃଷ୍ଣଙ୍କ ସହିତ ଅତିବାହିତ କରିଥିବାରୁ ପୃଥ୍ୱୀପୁତ୍ର ପାର୍ଥ ଅର୍ଜ୍ଜୁନ ବା 'ପବିତ୍ର ହୃଦୟ' ରୂପେ ଆଖ୍ୟାତ ହୋଇଥିଲେ । ସେହିପରି ସଖି କହିଲେ ଆମେ ସଖ୍ୟ ଚେତନାର ପ୍ରତିଭୂକୁ ବୁଝିଥାଉ । ଯେତେବେଳେ ଅନୁରୂପ ଭକ୍ତିରେ ସେ ବାହ୍ୟ ଜଗତର ବନ୍ଧନରେ ବନ୍ଧନୀ ନୁହେଁ ସେତେବେଳେ ସେ କୃଷ୍ଣ ଜଳଦ ପୂର୍ଣ୍ଣ କାନ୍ତିକୁ ଜୀବାଧୀଶ ଶ୍ରୀକୃଷ୍ଣ ରୂପେ ଆଶ୍ଳେଷ କରେ, ପ୍ରେମାଧୀଶ ଶ୍ରୀକୃଷ୍ଣ ରୂପେ ଉପାସନା କରେ, ଆନନ୍ଦାଧୀଶ ଶ୍ରୀକୃଷ୍ଣ ରୂପେ ସୃଷ୍ଟିର ଅଣୁରେ ଅଣୁରେ ତାଙ୍କୁ ଅନ୍ୱେଷଣ କରେ । ତେଣୁ "ରସିକଜନଂ ତନୁତା ମତିମୁଦିତଂ" ଅର୍ଥାତ୍ ଜୟଦେବଙ୍କ କାନ୍ତକୋମଳ ମଧୁର ପଦାବଳୀର ଲକ୍ଷ୍ୟ ହେଉଛି ହୃଦୟକୁ ଆନନ୍ଦାପ୍ଲୁତ କରିବା ।

ପ୍ରଗାଢ଼ ମଦନ ଚିନ୍ତା ମଧ୍ୟ ଏମିଶୀ ପ୍ରେମରସରେ ସୁସଂହତ, ଧ୍ୟାନନିବିଷ୍ଟ ଓ ଦିବ୍ୟାୟିତ ହୋଇପାରେ । ଏଇ ଦୃଷ୍ଟାନ୍ତ ବହନ କରିଛି ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ । ସେଥିପାଇଁ ସ୍ୱୟଂ ପରମାତ୍ମା ସ୍ୱାକ୍ଷରିତ କରିଛନ୍ତି : "ଦେହି ପଦପଲ୍ଲବମୁଦାରମ୍ ।" ପଦରଜର ନମ୍ର ମଧୁର ସ୍ପର୍ଶ ବଶୀଭୂତ କରେ କାମାର୍ତ୍ତ ମନକୁ, ଅଦମନୀୟ କାମନାକୁ ଉତ୍ତରିତ କରେ ଦିବ୍ୟ ଚେତନାକୁ ।

ଏସବୁ ଅର୍ଥ କେହି ଦେହବାଦୀ ସମାଲୋଚକ ଯଦି ପଳାୟନ ଧର୍ମୀ ବୋଲି ଭାବୁଥାନ୍ତି, କେହି ଯଦି କଳ୍ପନା ବିଳାସ ବୋଲି ମନେ କରନ୍ତି ସେ ବୁଝିବା ଆବଶ୍ୟକ ଯେ ମୁହୁର୍ମୁହୁ ଦିବ୍ୟ ପ୍ରେମର ଉତ୍ସରଣ ଅନୁରୂପ ତୀବ୍ର ମୁହୂର୍ତ୍ତକୁ ଅମୃତମୟ କରିଥାଏ । ମୂର୍ତ୍ତିମାନ୍ କରିଥାଏ ହୃଦୟର 'ରସୋ ବୈ ସଃ'କୁ । ଆଉଥରେ ରାଧା କଳ୍ପନାରେ "କୃଷ୍ଣଭୋଗୀଭବନ" ଆଶ୍ଳେଷ କରନ୍ତି କିମ୍ବା ନେତ୍ରରେ, ପତ୍ରରେ, ଅନୁଚିନ୍ତାରେ ବିଶ୍ୱାସ ଓ ଅନୁରାଗର ରଙ୍ଗରେଖା ଯୋଡ଼ିଯାଡ଼ି ତିଆରି କରନ୍ତି ସେଇ ରୂପ.....ଶ୍ୟାମଳ, କୋମଳ କୃଷ୍ଣମୁରାରୀ; ମେଘଶ୍ୟାମଳ, ଘନଶ୍ୟାମଳ କୋମଳ କୃଷ୍ଣମୁରାରୀ ସେଇ 'ବେଦାନ୍ ଉଦ୍ଧରତେ,' 'ଜଗନ୍ନିବହତେ'ର ଛବି । ସେଇ 'ନିନ୍ଦସି ଯଜ୍ଞବିଧେ'ର ନବ୍ୟାନାଭିଧମ ରୂପ । ପ୍ରକୃତି ତା'ର ସମସ୍ତ ଐଶ୍ୱର୍ଯ୍ୟରେ ବିମଣ୍ଡିତ ହେବା ପରେ ଦିବ୍ୟତ୍ୱର ଆଶ୍ଳେଷ ପାଇଁ ପ୍ରାର୍ଥନା କରେ । ନିଜ ସତ୍ତାର ବିଚ୍ଛୁରିତ ବାସ୍ନାରେ ଖଣ୍ଡିତ ନ ହୋଇ, ଆହ୍ଲାଦର ଦୀପଶିଖାରେ, ଶିଖାରେ ବିଭକ୍ତ ନ ହୋଇ ସେ ଅସୀମର ଅବତରଣକୁ ପ୍ରତୀକ୍ଷା କରେ ।

ରାଧା–ଧାରା, ଧାରା, ରାଧା..... ଏଇ ଦୁଇଟି ଶବ୍ଦ ହୃଦୟ ବେଦୀରେ ସୃଷ୍ଟିର ସମସ୍ତ ସଙ୍ଗୀତକୁ ସ୍ୱରବଦ୍ଧ କରେ । ଜଣେ ହଜିଗଲେ ଆଉ ଜଣେ ଖୋଜେ । ଜଣେ ଡାକିଲେ ଆଉ ଜଣେ 'ଓ' କରେ । ପ୍ରତିଧ୍ୱନି ଭ୍ରମର ଗୁଞ୍ଜନରେ, ମେଘମନ୍ଦ୍ରରେ, ନିର୍ଝର କଣ୍ଠରେ, କେକୀର ନୃତ୍ୟଲୀଳାରେ । ସମସ୍ତ ପଞ୍ଚ ପରିବର୍ତ୍ତନରେ ଅପରିବର୍ତ୍ତିତ ଥାଏ ଗୋଟିଏ ରୂପର ଆକର୍ଷଣ । ଭୀରୁ ଅଥଚ

ଚାହିଁଲା ତା'ର ଦୁଇ ଆଖି ଅଲକ୍ଷ୍ୟରେ କେଉଁଠି, କେମିତି ବାଟ ଓଗାଳେ ।

ଯେତେବେଳେ ମେଘ ଘୋଟି ଆସେ, ତାଳ ତମାଳ ବନ ପାରିହୋଇ ଉଡୁଥାନ୍ତି ବଳାକାପଂକ୍ତି, ବନବୃକ୍ଷରେ ଘନୀଭୂତ ହୁଏ ଶ୍ୟାମଳିମା, କେଳୀ ପୁଲକରେ ଆନନ୍ଦର ପାଲବ ସେଇ ଡରକୁଳା କୃଷ୍ଣଙ୍କୁ ଘରକୋଣକୁ ଘେନିଯିବାର ଅପରିହାର୍ଯ୍ୟ ଦିବ୍ୟ ଦାୟିତ୍ୱ ନ୍ୟସ୍ତ ହୁଏ ରାଧା ଉପରେ । "ରାଧେ ଗୃହଂ ପ୍ରାପୟ ।" ଧାରାକୁ ଧରି ନିଅ, ବାଟ କଢ଼ାଇ ଦିଅ, ହାତ ବଢ଼ାଇ ମୋହନ ମଧୁର ଅନ୍ଧାର ବାଟରେ ଆଶ୍ଳେଷକର ଅନିର୍ବାଣ ଅରୂପକୁ । ସେଇ ପଥପ୍ରାନ୍ତ କୁଞ୍ଜଦ୍ରୁମ ତଳେ ସବୁ ମିଶିଯାଉ ରାସରେ, ରସରେ । ଅନିତ୍ୟରେ ନିତ୍ୟର ସଂଗୀତ ଆରଥରେ ନିନାଦିତ ହେଉ ଜୟଦେବ ସରସ୍ୱତୀଙ୍କ କଣ୍ଠରୁ :

ମେଘୈର୍ମେଦୁରମମ୍ବରଂ ବନଭୁବଃ
ଶ୍ୟାମାସ୍ତମାଳଦ୍ରୁମୈ
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ
ରାଧେଗୃହଂ ପ୍ରାପୟ ।

ଇତ୍ଥଂ ନନ୍ଦନି ଦେଶତଶ୍ଚଳି ତୟୋଃ
ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ
ରହଃ କେଳୟଃ ।

ସଘନ ମେଘର ଆଭରଣ ଦେଖି
ସାରଟା ଆକାଶ ସମାବୃତ,
ବନ ଭୂଖଣ୍ଡ ଶ୍ୟାମଳ ତମାଳ
ଦ୍ରୁମରେ, ଦ୍ରୁମରେ ତିମିର ସ୍ନାତ... ।

ତେଣୁ ଜୟଦେବଙ୍କ କାନ୍ତକୋମଳ ମଧୁର ପଦାବ... ଅନୁସରଣରେ କବିଙ୍କ ପରି ଆମେ ପ୍ରତ୍ୟେକ ରାଧା ... ଆହ୍ଲାଦରେ ଦେହ ବେଦନା 'ଭୁଲିଯାଉ । ବିସ୍ତାରିତ, ବି... ବନଭୂମି, ପ୍ରସନ୍ନ କୁଞ୍ଜ ଆଉ ସଘନ ମେଘ ପରି ଅନ୍ଧାର ... ରେଖାଏ ବିଜୁଳିର ଝଲକା ହୃଦୟ ବେଦୀରେ ବିଚ୍ଛୁରି... ଆଲୋକ । ସ୍ୱର୍ଣ୍ଣାଭ ଆନନ୍ଦର ଦେଉଳରେ, ... 'ଶ୍ରୀଗୀତଗୋବିନ୍ଦ'ର ସୁଖକର ଶୁଭଙ୍କର ମାର୍ଗର ସନ୍ଧାନ । ... ହେଉ ଯାତ୍ରୀର ଶ୍ରମ । ଜୟତୁ ଜୟଦେବ କବି ପ୍ରବନ୍ଧଃ ।

*ସୂଚନା ଓ ଲୋକ ସମ୍ପର୍କ ବିଭାଗ,*
*ଭୁବନେଶ୍ୱର–୭୫୧୦୦୧ ।*




ସୂଚନା ଓ ଲୋକ ସମ୍ପର୍କ, ସଂସ୍କୃତି ବିଭାଗ ଏବଂ ଶବରୀ ସାଂସ୍କୃତିକ ସଂସଦ ଦ୍ୱାରା ଆୟୋଜିତ ଶହୀଦ ଲକ୍ଷ୍ମଣ ନାୟକଙ୍କ ୫୦ତମ ମୃତ୍ୟୁ ବାର୍ଷିକୀ ଉତ୍ସବରେ ହରିଜନ ଏବଂ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ଘାସିରାମ ମାଝୀ ଉଦ୍‌ବୋଧନ ଦେଉଛନ୍ତି (୨୯/୩) ।

# ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଶାସନ

ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ

ଗୀତ ଗୋବିନ୍ଦ ସରସ କାବ୍ୟର ବିଶ୍ୱ ବିଶ୍ରୁତ ରଚୟିତା ମହାକବି ଜୟଦେବ ଆଜି କାଲି ଦାସଙ୍କ ପରି ପୃଥିବୀ ବିଖ୍ୟାତ। କାବ୍ୟ ସୃଷ୍ଟିରେ, ଭାଷାରେ, ଭାବରେ, ଛନ୍ଦରେ ତାଙ୍କର ବୈଶିଷ୍ଟ୍ୟ ଦ୍ୱିତୀୟଥର କେହି ସର୍ଜନା କରିପାରି ନାହାନ୍ତି, ଅନୁକରଣ ବି କରିପାରି ନାହାନ୍ତି। କବି ଜନ୍ମ ନେଇଥିଲେ ଦେବଭୂମି ଉତ୍କଳର କେନ୍ଦୁବିଲ୍ୱ ବ୍ରାହ୍ମଣ ଶାସନରେ ଯାହାକି ଏବେ କେନ୍ଦୁଲୀ ନାମରେ ପରିଚିତ। ଯେଉଁ ପବିତ୍ର ଭୂମିରେ କବିରାଜ ଶ୍ୟାମସୁନ୍ଦର ଭକ୍ତି ପ୍ରେମରେ କାନ୍ଧା ସହ ଛାୟା ପରି ବିଚରଣ କରୁଥିଲେ ଓ ଯେଉଁ ପବିତ୍ର ପୀଠରୁ କୋମଳକାନ୍ତ ପଦାବଳୀର ମଧୁ ଝଙ୍କାର ଉଠି ସମଗ୍ର ଜଗତକୁ ସ୍ତବ୍ଧ ଓ ମୋହିତ କରି ଦେଇଥିଲା ସେହି ଦେବଭୂମି କେନ୍ଦୁବିଲ୍ୱର ନାମ 'ଗୀତ ଗୋବିନ୍ଦ'ରେ ମଧ୍ୟ ରହିଛି।

## କେନ୍ଦୁଲୀ ବା କେନ୍ଦୁବିଲ୍ୱ :

ପୁରୀ ଜିଲ୍ଲା ବାଲିଅନ୍ତା ଥାନା ପ୍ରତାପରୁଦ୍ରପୁର ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଏହି କେନ୍ଦୁଲୀ ଗ୍ରାମ। ଉତ୍ତରରେ ପୁଣ୍ୟତୋୟା ଉତ୍କଳ ଜାହ୍ନବୀ ପ୍ରାଚୀ ଓ ଦକ୍ଷିଣରେ ପୁରାଣ ପ୍ରସିଦ୍ଧ କୁଶଭଦ୍ରା ନଦୀ ଏହି ଗ୍ରାମର ପବିତ୍ରତାକୁ ଯଥେଷ୍ଟ ବଢ଼ାଇ ଦେଉଛି। ସୁଶୋଭିତ ତମାଳ, ପାଟଳ, ବକୁଳ, ତାଳ, ନାରିକେଳ ସହ ଘନ କେନ୍ଦୁ ଓ ବିଲ୍ୱ ବୃକ୍ଷରାଜି ଯଥାର୍ଥରେ କେନ୍ଦୁବିଲ୍ୱ ନାମକରଣକୁ ସାର୍ଥକ କରୁଛି। ପୂର୍ବେ କେନ୍ଦୁଲୀ ଗ୍ରାମ ତିନିଗୋଟି ଭାଗରେ ବିଭକ୍ତ ଥିଲା କେନ୍ଦୁଲୀ ଦେଉଳୀ, କେନ୍ଦୁଲୀ ଶାସନ, କେନ୍ଦୁଲୀ ପାଟଣା।

## ପ୍ରାଚୀନ କୀର୍ତ୍ତୀ :

କେନ୍ଦୁଲୀ ଗ୍ରାମ ମଧ୍ୟକୁ ପଶ୍ଚିମ ଦିଗରୁ ପ୍ରବେଶ କଲେ ପ୍ରଥମେ ଦୃଷ୍ଟିଗୋଚର ହୁଏ ଶ୍ରୀନୃସିଂହନାଥଙ୍କ ମନ୍ଦିର। କନ୍ଧା ପ୍ରସ୍ତରରେ ନିର୍ମିତ ଏହି ମନ୍ଦିରର ଉଚ୍ଚତା ପ୍ରାୟ ୪୦ ଫୁଟ ହେବ। ଘନ ଚୂନ ପ୍ରଲେପ ଦ୍ୱାରା ମନ୍ଦିରରେ ଥିବା କାରୁକାର୍ଯ୍ୟର ସଜ୍ଜତା ଜଣାପଡୁ ନାହିଁ। ମନ୍ଦିର ମଧ୍ୟରେ ହିରଣ୍ୟ ବିଦାରଣ ଶ୍ରୀନୃସିଂହଙ୍କର ଦୁଇଟି ବିଗ୍ରହ। ଗୋଟିକରେ କୋଳରେ ଶୋଭା ପାଉଛନ୍ତି ଲକ୍ଷ୍ମୀ। ଅନ୍ୟଟି କେବଳ ହିରଣ୍ୟ ବିଦାରଣ ବିଗ୍ରହ। ମୁଖଶାଳାରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ମାଧବଙ୍କର କଳାମୁଗୁନି ପ୍ରସ୍ତରର କମନୀୟ ବିଗ୍ରହ। ମନ୍ଦିରକୁ ଲାଗି ରହିଛି ତିମାଳୀ ବା ତିରୁମଲ୍ଲ ମଠ। ପୁରୀ ମୁଖ୍ୟ ତିରୁମଲ୍ଲ ମଠର ଏହା ଏକ ଶାଖା ମଠ। ବିଜୟ ନଗରର ରାଜା ତିରୁମଲ୍ଲ ରାୟ (୧୫୬୫-୧୫୮୦) ନିଜ ସଭା ପଣ୍ଡିତ ଲକ୍ଷ୍ମଣସୂରୀଙ୍କ ସହ ଜଗନ୍ନାଥ ଓ କେନ୍ଦୁବିଲ୍ୱ ଦର୍ଶନରେ ଆସି ଏହି ମଠମାନ ପ୍ରତିଷ୍ଠା କରିଥିଲେ। ଲକ୍ଷ୍ମଣସୂରୀ ଜୟଦେବଙ୍କ 'ଗୀତ ଗୋବିନ୍ଦ'ର ଟୀକା ପ୍ରଣୟନକାରୀ ଭାବେ ଭାରତ ବିଖ୍ୟାତ ଥିଲେ। ଏହି ମଠରେ ଦକ୍ଷିଣ ଅଞ୍ଚଳରୁ ଯାତ୍ରୀମାନେ ରହୁଥିଲେ। ମଠର ବହୁ-ଭୂ-ସମ୍ପତ୍ତିମାନ ଏବେ ବି ରହିଛି। ମାତ୍ର ମଠ ଘରଟି ମରାମତି ଅଭାବରୁ ଭାଙ୍ଗିବାକୁ ବସିଲାଣି। ପିତ୍ତଳ ଛପର ହୋଇଥିବା କବାଟମାନ ଏହି ମଠରେ ଲାଗିଥିବାର ଦର୍ଶକ ଦେଖିଥିଲା ମାତ୍ର ତାହା ଏବେ ଅନ୍ୟତ୍ର ସ୍ଥାନାନ୍ତରିତ। ମଠର ବହୁ କାଗଜପତ୍ରରୁ ଏହା ଏକ ଯାତ୍ରୀ ଅଭ୍ୟାଗତ ମଠ ରୂପେ ବିଦିତ ଥିବା ଜଣାଯାଏ। ମଠର ପାର୍ଶ୍ୱବର୍ତ୍ତୀ ଏକ ପୁଷ୍କରିଣୀରୁ ଏକ ପ୍ରସ୍ତର ପେଟିକା ମଧ୍ୟରେ ଆବଦ୍ଧ ଥିବା ତାମ୍ର ଶାସନମାନ ବିଗତ ଶତାବ୍ଦୀରେ ଆବିଷ୍କୃତ ହୋଇଥିଲା, ଯାହାକି କେନ୍ଦୁଲୀ ତାମ୍ର ଶାସନ ରୂପେ ବିଦିତ। ଏଥିରୁ ଜଣାଯାଏ ଗଙ୍ଗ ସମ୍ରାଟ ଚତୁର୍ଥ ନରସିଂହ ଦେବ (୧୩୮୩ ଖ୍ରୀ: ଅ:) କିନିରି ନାମକ ଗ୍ରାମର ନାମକରଣ ବିଜୟ ନରସିଂହପୁର କରାଇ ନରହରି ଦାସ ପ୍ରହରାଜଙ୍କୁ ଦାନ କରିଥିଲେ। ଗଙ୍ଗ ବଂଶାବଳୀରୁ ପ୍ରଶଂସାମାନ ଏହି ତାମ୍ର ଶାସନରେ ଲିପିବଦ୍ଧ ରହିଛି। ଏହି ମଠର କିଛି ଦୂର ପରେ ପଡ଼େ ଯୂପ ସ୍ତମ୍ଭ ପରିବେଷ୍ଟିତ ଯଜ୍ଞ ବେଦୀ। କନ୍ଧା ପ୍ରସ୍ତରରେ ନିର୍ମିତ ଏହି ବେଦିକାରେ ଜୟଦେବ ଯଜ୍ଞ କରୁଥିବାର ପ୍ରବାଦ ଅଛି। ପୁରୁଷାନୁକ୍ରମେ ପବିତ୍ର ଅକ୍ଷୟ ତୃତୀୟା ଦିନ ଏହି ସ୍ଥାନରେ ଗ୍ରାମବାସୀମାନେ ଯଜ୍ଞ କରିଥାନ୍ତି। ଏହାପରେ ଦେଖିବାକୁ ମିଳେ ପୁନଃନିର୍ମିତ ଇଟାର ଏକ ମନ୍ଦିର। ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ଏହି ଭଗ୍ନ ମନ୍ଦିରର ପୁନଃନିର୍ମାଣ କରାଯାଇଛି। ମନ୍ଦିର ମଧ୍ୟରେ ଦୁଇଟି ଦେବୀ ବିଗ୍ରହ। ବିଗ୍ରହ ଦ୍ୱୟର ଉପର ଭାଗରେ ସପ୍ତଫେଣାଚ୍ଛାଦିତ ନାଗ। କଳା ମୁଗୁନି ପ୍ରସ୍ତରରେ ଏହି ଦେବୀ ବିଗ୍ରହର ନିର୍ମାଣ ଶୈଳୀ ଅଷ୍ଟମ ଶତାବ୍ଦୀର ହୋଇପାରେ ବୋଲି ଐତିହାସିକମାନେ ମତ ଦେଇଥାନ୍ତି। କେତେକ ଏହାକୁ ବଜ୍ରଯାନୀ ବୌଦ୍ଧମାନଙ୍କର ଆରାଧ୍ୟ ଦେବୀ ବିଗ୍ରହ କହୁଥିବା ବେଳେ ଗ୍ରାମର ଲୋକେ ବିଗ୍ରହ ଦ୍ୱୟକୁ ନାଗେଶ୍ୱରୀ ଓ ପଦ୍ମାବତୀ ନାମରେ ପୂଜା କରିଥାନ୍ତି। ମନ୍ଦିରକୁ ଲାଗି ରହିଛି ପ୍ରାଚୀନ କଳା ପ୍ରସ୍ତର ପୀଢ଼ ଥିବା ଏକ ଶୈବ ପୀଠ। ଲିଙ୍ଗ ନଥିବା ଏହି ଶକ୍ତିରେ ଗଙ୍ଗୀ ଆବିର୍ଭୂତ ହୋଇଥିବାର କିମ୍ବଦନ୍ତୀ ପ୍ରଚଳିତ ଅଛି।

ଏହି ସ୍ଥାନକୁ ଲାଗି ରହିଛି ଏକ ମନୋରମ ବାଟିକା। ଗୀତ ଗୋବିନ୍ଦ ବର୍ଣ୍ଣିତ ବୃକ୍ଷରାଜିରେ ସୁଶୋଭିତ ଏହାର ମଧ୍ୟ ସ୍ଥଳରେ ଶ୍ରୀ ଜୟଦେବ ସଂଗ୍ରହାଳୟ। ସ୍ଥାନୀୟ ଅଞ୍ଚଳରୁ ମିଳିଥିବା ପ୍ରାଚୀନ ବିଗ୍ରହମାନ ଏଥିରେ ସ୍ଥାନ ପାଇଛି। ଏହା ଭିତରେ ଥିବା ଦୁଇଟି କମନୀୟ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରୀ ମାଧବ ବିଗ୍ରହ ଦର୍ଶକଙ୍କୁ ଆକୃଷ୍ଟ କରିଥାଏ। ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ବାଟିକା ତଥା ଏହି ସଂଗ୍ରହାଳୟ ପରିରକ୍ଷିତ।

## ଗୀତ ଗୋବିନ୍ଦର ପ୍ରଭାବ :

କେନ୍ଦୁଲୀ ଗ୍ରାମର ଦକ୍ଷିଣ ଦିଗକୁ ଥିବା ମନ୍ଦୁଖଣ୍ଡା (କେନ୍ଦୁଲୀ ତାମ୍ର ଶାସନରେ ମନ୍ଦୁଲୁଣ୍ଡା) ଗ୍ରାମର ଦେବୀ ବିଳାଶୁଣୀଙ୍କ ନିକଟରେ ଦଶହରା ନବରାତ୍ରରେ ଚଣ୍ଡିପାଠ ପରିବର୍ତ୍ତନରେ ଗୀତ ଗୋବିନ୍ଦ ପାଠ କରାଯାଏ । ଶକ୍ତି ପୀଠରେ: ଦଶହରା ନବରାତ୍ରରେ ଗୀତ ଗୋବିନ୍ଦ ପାଠ ଏକ ବ୍ୟତିକ୍ରମ । ଏହି ଅଞ୍ଚଳର ସମସ୍ତ ଶୈବ ପୀଠ ଓ ବିଷ୍ଣୁ ମନ୍ଦିରମାନଙ୍କରେ ସକାଳର ପୂଜା ଓ ସନ୍ଧ୍ୟାର ଆରତି ସମୟରେ ଗୀତ ଗୋବିନ୍ଦ ବୋଲାଯିବାର ପରମ୍ପରା ରହିଆସିଛି । ଏହାହିଁ ସମ୍ଭବତଃ ଗୀତ ଗୋବିନ୍ଦର ପ୍ରଭାବ ବୋଲି ବୁଝାଯିବ ।

## ଦଶାବତାର ନାମରେ ଜନପଦ :

ଗଙ୍ଗ ରାଜତ୍ୱ କାଳରେ କେନ୍ଦୁଲୀ ଗ୍ରାମର ଚାରି ଦିଗରେ ଗୀତ ଗୋବିନ୍ଦ ବର୍ଣ୍ଣିତ ଦଶାବତାରଙ୍କ ନାମରେ ଦଶଟି ଜନପଦ ପ୍ରତିଷ୍ଠିତ ହୋଇଥିବାର ଦେଖାଯାଏ । ଏହି ପ୍ରାଚୀନ ଗ୍ରାମମାନଙ୍କର ମୁଖ୍ୟ ଦେବତା ଭାବେ ସମ୍ପୃକ୍ତ ଅବତାର ବା କେତେକରେ ଜଗନ୍ନାଥଙ୍କ ବିଗ୍ରହମାନ ପୂଜା ପାଉଛନ୍ତି । ଏଗୁଡ଼ିକ ହେଲା-(୧) ମତ୍ସ୍ୟପୁର, (୨) କୂର୍ମ ଶାସନ ଓ କୂର୍ମଡ଼ା, (୩) ବରାହପୁର, (୪) ବିଜୟ ନରସିଂହପୁର, (୫) ବଳିବାମନପୁର, (୬) ଭାର୍ଗବପୁର, (୭) ରାମଚନ୍ଦ୍ରପୁର, (୮) ବଳଭଦ୍ରପୁର, (୯) ବୌଦ୍ଧଖଣ୍ଡ ଓ ବୁଦ୍ଧପଡ଼ା, (୧୦) କଳିପୁର ଓ କଳିଯୁଗ ବାଘଳପୁର ।

ଏହା ବ୍ୟତୀତ କେନ୍ଦୁଲୀ ଗ୍ରାମ ସନ୍ନିକଟରେ ବହୁ ପ୍ରାଚୀନ ଜନବସତିମାନ ରହିଛି । ଏମାନଙ୍କ ମଧ୍ୟରେ (୧) ବାମାଦେବୀପୁର, (୨) ଭଉଜପୁର, (୩) ପ୍ରାଚୀ କୂଳରେ ଥିବା ପରାଶର ପୀଠ, (୪) ବନମାଳୀପୁର (ପ୍ରାଚୀ ଓ କୁଶଭଦ୍ରା କୂଳର ପୁରୀ ଜିଲ୍ଲାର ବାଣିଜ୍ୟ କେନ୍ଦ୍ର), (୫) ବାସୁଦେବପୁର, (୬) ଦାମୋଦରପୁର, (୭) ନାରାୟଣପୁର, (୮) ନିଆଳୀ, (୯) ମାଧବ, (୧୦) ଚୌରାଶୀ, (୧୧) ଲକ୍ଷ୍ମୀ ନାରାୟଣପୁର, (୧୨) ବାଘଳପୁର (ଗଙ୍ଗ ସମ୍ରାଟ ଅନିୟଙ୍କ ଭୀମଦେବଙ୍କ ପାଟରାଣୀଙ୍କ ନାମ ବାଘଲ ଦେବୀ), (୧୩) ଅଡ଼ସପୁର (ବଜ୍ରଯାନୀ ବୌଦ୍ଧ ଦେବତା ଓଡ଼ବୀଶ ବା ଶ୍ୱେତଗଙ୍ଗ ଦେବଙ୍କ ସାନ ପୁଅଙ୍କ ନାମ ଅଟ୍ଟହାସ ଦେବଙ୍କ ନାମାନୁସାରେ ହୋଇପାରେ), (୧୪) ଗଙ୍ଗେଶ୍ୱର ଗଡ଼ (ସମ୍ରାଟ ଶ୍ୱେତଗଙ୍ଗ ଦେବଙ୍କ ଅନ୍ୟ ନାମ ଗଙ୍ଗେଶ୍ୱର ଦେବ), (୧୫) ପ୍ରତାପରୁଦ୍ରପୁର, (୧୬) କୁମାରପୁର, (୧୭) ଭଇଁରାଗଡ଼ (ବିସ୍ତୃତ ପାଟଳୀ ଜଙ୍ଗଲ ନିମନ୍ତେ ବିଖ୍ୟାତ) ପ୍ରଭୃତି ଅନ୍ତର୍ଭୁକ୍ତ । କେନ୍ଦୁଲୀ ଗ୍ରାମ ସନ୍ନିକଟର ପଶ୍ଚିମ ଦିଗରେ ଥିବା ଉପରଲିଖିତ ଗଙ୍ଗେଶ୍ୱର ଗଡ଼ରେ ସମ୍ରାଟ ଶ୍ୱେତଗଙ୍ଗ ଦେବ ରହୁଥିବାର ପ୍ରବାଦ ଅଛି । ସମ୍ପୃକ୍ତ ଗ୍ରାମର ମୁଖ୍ୟ ଦେବତା ଭାବେ 'ଗଙ୍ଗମଣି' ନାମକ ଶିବ ଲିଙ୍ଗ ପୂଜା ପାଉଛନ୍ତି । ମହାନଦୀ ସନ୍ନିକଟ ଶ୍ୱେତଗଙ୍ଗ ଗଡ଼ଠାରୁ ଏକ ପ୍ରାଚୀନ ରାଜପଥ ଏହି ଗଙ୍ଗେଶ୍ୱର ଗଡ଼ ଓ କେନ୍ଦୁଲୀ ଗ୍ରାମ ଦେଇ ସମୁଦ୍ର ପର୍ଯ୍ୟନ୍ତ ଲମ୍ବି ଯାଇଥିଲା ଓ ଅଦ୍ୟାପି ଏହାର ବହୁ ଅଂଶ ବିଦ୍ୟମାନ ଓ ଭେଟ ନାମରେ ନାମିତ । କଳିଙ୍ଗ ଯୁଦ୍ଧରେ ମଗଧ ସେନାମାନଙ୍କ ସହିତ ଲଢ଼ିଥିବା କିମ୍ବଦନ୍ତୀ ପ୍ରସିଦ୍ଧ ପ୍ରଖ୍ୟାତ ବିଦ୍ୟା ବିଶାରଦା 'ଜାଙ୍ଗୁଳୀ ଧମିଲ' ଏହି ଅଞ୍ଚଳର ବୋଲି ... ଓ ଉପର ଆଲୋଚିତ ରାଜ ରାସ୍ତା 'ଭେଟ' କଡ଼ରେ ଧମିଲ ... ଏକ ପ୍ରାଚୀନ ଗ୍ରାମ ଏବେ ବି ବିଦ୍ୟମାନ ଓ ଏହାର ଅଧି... ଦେବୀ 'ଜାଙ୍ଗୁଳୀ' ନାମରେ ପୂଜିତ ।

କେନ୍ଦୁଲୀ ଗ୍ରାମ ପୂର୍ବ ପଟକୁ ପ୍ରାୟ ୨ କିଲୋମିଟର ବ୍ୟବଧାନରେ ଥିବା ମାଧବ ଗ୍ରାମର ଶଙ୍ଖ, ଚକ୍ର, ଗଦା, ପଦ୍ମ... ମାଧବ ବିଷ୍ଣୁଙ୍କ ପୂଜା ଓଡ଼ିଶା ବିଖ୍ୟାତ । ବର୍ଷର ସବୁ ସମୟରେ ଯାତ୍ରୀମାନେ ଦେବ ଦର୍ଶନ ପାଇଁ ଏଠାକୁ ଆସିଥାନ୍ତି । ... ଶତାବ୍ଦୀରେ ଗଙ୍ଗ ରାଜତ୍ୱ କାଳରେ ନିର୍ମିତ ମାଧବଙ୍କ ମନ୍ଦିର ... ଉଚ୍ଚତା ପ୍ରାୟ ୮୦ ଫୁଟ ହେବ ଓ ଏହାର ନାଟ ଓ ଭୋଗ ମଣ୍ଡପ ... ରହିଛି । ମନ୍ଦିରର ସୂକ୍ଷ୍ମ କାରୁକାର୍ଯ୍ୟମାନ ଦର୍ଶକର ଦୃଷ୍ଟି ଆକର୍ଷଣ କରିଥାଏ । ଗୀତ ଗୋବିନ୍ଦ ବର୍ଣ୍ଣିତ ଦଶାବତାର ବିଗ୍ରହ ... ମନ୍ଦିରର ଚତୁର୍ଦ୍ଦିଗରେ ଅବସ୍ଥାପିତ । ଠାକୁରଙ୍କ ସେବାରେ ଗୀତ ଗୋବିନ୍ଦ ଗାନର ପ୍ରଥା ଅଛି । ଜୟଦେବଙ୍କ ସମୟରେ ଏହି ବିଗ୍ରହ ପ୍ରତିଷ୍ଠା ହୋଇଥିଲା ଓ ମହାକବି ତାଙ୍କର ଜନ୍ମସ୍ଥାନ କେନ୍ଦୁଲୀ ଗ୍ରାମରେ ଥିବାବେଳେ ପ୍ରତ୍ୟହ ଏହି ଦେବ ଦର୍ଶନରେ ଅଧ୍ୟୁ... କିମ୍ବଦନ୍ତୀ ପ୍ରଚଳିତ ଅଛି ।

ମାଧବ ଗ୍ରାମର ସନ୍ନିକଟରେ ଅଛି ଚୌରାଶୀ । ... ଦକ୍ଷିଣ ଦିଗରେ ଦେଖିବାକୁ ମିଳେ ଦଶମ ଶତାବ୍ଦୀର ... ଲକ୍ଷ୍ମୀନାରାୟଣଙ୍କ ମନ୍ଦିର । ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ... ସଂରକ୍ଷିତ ହୋଇଛି । ମନ୍ଦିର ମଧ୍ୟରେ କଳା ମୁଗୁନି ପ୍ରସ୍ତରରେ ନିର୍ମିତ ଲକ୍ଷ୍ମୀନାରାୟଣଙ୍କର କମନୀୟ ବିଗ୍ରହ ପୂଜା ପାଉଛନ୍ତି । ଗୀତ ଗୋବିନ୍ଦର 'ଶ୍ରୀତ କମଳା କୁଚ ମଣ୍ଡଳ ଧୃତ କୁଣ୍ଡଳ...' ସତେ ବା ଅବିକଳ ନକଲ । କବିର ମାନସ ପଟରେ ... ବିଗ୍ରହ ବା ଦୃଶ୍ୟ ନପଡ଼ିଲେ ତାହାର କାବ୍ୟିକ ଭାଷାରେ ... ପରିପ୍ରକାଶତା ଲାଭ କରିପାରେ ନାହିଁ । ଏଥିରୁ ଅନୁମେୟ ଜୟଦେବଙ୍କ ଦୃଷ୍ଟିରେ ଏହି ବିଗ୍ରହ ନିଶ୍ଚିତ ଭାବେ ପଡ଼ିଥିଲା । ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର ଉତ୍ତର ପଟର କାନ୍ଥରେ ... ଏକ ବିଗ୍ରହ ପୂଜା ପାଉଛନ୍ତି । ମାତ୍ର ଏହାର ଡାହାଣ ହାତ ... ଯାଇଛି । ଲିଙ୍ଗରାଜ ମନ୍ଦିର ପଛପଟରେ ଏହି ବିଗ୍ରହଙ୍କ ... ମନ୍ଦିର ଥିଲା ଓ ତାହା ଭାଙ୍ଗିଯିବାରୁ ସେବକମାନେ ମୂର୍ତ୍ତିକୁ ... ମନ୍ଦିର ବେଢ଼ାକୁ ସ୍ଥାନାନ୍ତରିତ କରିଛନ୍ତି । କେନ୍ଦୁଲୀ ... ଚୌରାଶୀ ଓ ଲିଙ୍ଗରାଜ ବେଢ଼ାରେ ଥିବା ବିଗ୍ରହ ଦ୍ୱୟ ଭଳି ବିଗ୍ରହ ... ଓଡ଼ିଶାରେ ଅନ୍ୟତ୍ର ଏ ପର୍ଯ୍ୟନ୍ତ ଦେଖାଯାଇ ନାହିଁ । ... ଆଲୋଚିତ 'ଭେଟ' ପ୍ରାଚୀନ ରାଜପଥ ଚୌରାଶୀ ଗ୍ରାମ ... ଦେଇ ଯାଇଥିବାର ଦେଖାଯାଏ ।

## ଶ୍ରୀ ଚୈତନ୍ୟ ଓ ପଞ୍ଚସଖା :

ଷୋଡ଼ଶ ଶତାବ୍ଦୀରେ ଆବିର୍ଭୂତ ଶ୍ରୀ ଚୈତନ୍ୟ ଓ ପଞ୍ଚସଖା ... ପ୍ରତିବର୍ଷ ପୁରୀରୁ କେନ୍ଦୁଲୀ ଗ୍ରାମ ପରିଦର୍ଶନରେ ଅସୁଥିଲେ ... ଶ୍ରୀ ଚୈତନ୍ୟଙ୍କ ଶିଷ୍ୟ ତଥା ରାୟ ରାମାନନ୍ଦଙ୍କର ସେବକ ମାଧବ ପଟ୍ଟନାୟକ ସ୍ୱ-ରଚିତ ବୈଷ୍ଣବ ଲୀଳାମୃତରେ ଦର୍ଶାଇଛନ୍ତି ।

ନିଆଳୀ ମାଧବେ ଗମନ—ପ୍ରାଚୀରେ ଅଙ୍ଗ ପ୍ରକ୍ଷାଳନ
ମାଧବେ ଭଗତି ଅର୍ପଣ—କୀର୍ତ୍ତନ ରସ ପ୍ରସାରଣ

...ନୃତ୍ୟ ଯୋଗ ମେଳ ହୋନ୍ତି—ମକର ମେଳା ସେ କରନ୍ତି
...ଗୋବିନ୍ଦ ନୃତ୍ୟ ରସେ—ଜୟଦେବର ପରଶଂସେ
...ନ୍ଦୁଲୀ ଗ୍ରାମର ମଧ୍ୟେଣ—କୀର୍ତ୍ତନ ରସ ପ୍ରସାରଣ
...ମୁଁ ଗମନ୍ତି ସ୍ନେହାଶ୍ରା— ପଢ଼ଇ ମୁହଁ ତହିଁ ରଙ୍ଗୀ
(ପଞ୍ଚମ ଅଧ୍ୟାୟ, ୪୯—୫୬)

...ପଟ୍ଟନାୟକ ଏହା ନିଜେ ଦେଖିଛନ୍ତି । ଜୟଦେବଙ୍କ ...ସ୍ଥାନ ନିଆଳୀ ଶାସନ ସନ୍ନିକଟ କେନ୍ଦୁଲୀ ଗ୍ରାମ ବୋଲି ସେ ...ବିରଚିତ ଲୀଳାମୃତ ଗ୍ରନ୍ଥରେ ସ୍ପଷ୍ଟ ଭାବରେ କହିଛନ୍ତି । ତେଣୁ ...ଶତାବ୍ଦୀ ମଧ୍ୟଭାଗ ପର୍ଯ୍ୟନ୍ତ ପ୍ରାଚୀକୂଳ କେନ୍ଦୁଲୀ ଗ୍ରାମରେ ...ଦେବଙ୍କ ସ୍ମୃତି ଜାଗ୍ରତ ଥିବାର ଏଥିରୁ ଜଣାଯାଏ । ...ଗଜପତି ସମ୍ରାଟ ପ୍ରତାପରୁଦ୍ର ଦେବ ମଧ୍ୟ କେନ୍ଦୁଲୀ ...ରେ ଆସିଥିଲେ ଓ ତା'ର ସ୍ମାରକୀ ନିମିତ୍ତ କେନ୍ଦୁଲୀ ...କୁ ଲାଗି ପ୍ରତାପରୁଦ୍ରପୁର ବ୍ରାହ୍ମଣ ଶାସନ ଅଦ୍ୟାପି ...ମାନ । ଗ୍ରାମର ଆଖଣ୍ଡଳମଣି ଶିବ ମନ୍ଦିରରେ ଗୀତ ...ଗାନ ସେବାରେ ଅନ୍ତର୍ଭୁକ୍ତ । ଏହି ମନ୍ଦିର ମଧ୍ୟରେ କଳା ...ପ୍ରସ୍ତରରେ ନିର୍ମିତ କୃଷ୍ଣ ବିଗ୍ରହ ପୂଜା ପାଉଛନ୍ତି । କାକରୁଦ୍ରପୁର ନାମରେ ଆହୁରି ଏକ ଶାସନ ପ୍ରତାପରୁଦ୍ରପୁର ଶାସନ ସନ୍ନିକଟ କୁଶଭଦ୍ରା ନଦୀ କୂଳରେ ଅବସ୍ଥିତ । ଏମାର ମଠର ଏକ ଶାଖା ମଠ ଏହି ଗ୍ରାମରେ ରହିଛି । ମଠର ଠାକୁର ପତିତପାବନ ନାମରେ ଜଗନ୍ନାଥଙ୍କ ବିଗ୍ରହ ପୂଜା ପାଉଥାନ୍ତି । ବରାହ, ନୃସିଂହ, ବାମନ ଅବତାରମାନ ପାର୍ଶ୍ୱ ଦେବତା ଭାବେ ମଠ ମନ୍ଦିରରେ ବିଦ୍ୟମାନ । ପରିଚାଳନା ଅଭାବରୁ ମଠ ପ୍ରାୟ ଧ୍ୱଂସ ଅବସ୍ଥାକୁ ଆସିଲାଣି । ସ୍ଥାନୀୟ ଗ୍ରାମବାସୀମାନଙ୍କ ଉଦ୍ୟମରେ ଏହାର ପୁନରୁଦ୍ଧାର ଚାଲିଛି । ଜୟଦେବଙ୍କ ଗୀତ ଗୋବିନ୍ଦ ଠାକୁରଙ୍କ ସେବାଭୁକ୍ତ । ଏଠାର ବୁଣାକାର ସମ୍ପ୍ରଦାୟ ଗୀତ ଗୋବିନ୍ଦ ଖଣ୍ଡୁଆ ବୁଣି ଜଗନ୍ନାଥଙ୍କୁ ଆଗେ ଦେଉଥିଲେ ଓ ଏଠାର କେନ୍ଦୁଲୀ ଶାଢ଼ୀ ଦିନେ ପ୍ରସିଦ୍ଧି ଲାଭ କରିଥିଲା । ଅଷ୍ଟାଦଶ ଶତାବ୍ଦୀ ଦ୍ୱିଜ ଶ୍ରୀଧର ଦାସଙ୍କ କୃତ କାଞ୍ଚନ ଲତା କାବ୍ୟରେ ଅଛି :—

'ସହଯେ ଦ୍ୱିଜ ନନ୍ଦିନୀ ତେଜୋଧମା କନକ ପନ୍ତି
କଳା କେନ୍ଦୁଲୀ ଶାଢ଼ୀ ଭିଡ଼ି ପିନ୍ଧିଛି ମୋତି ଦନ୍ତି ।'

---

ଓ: ଏଲ୍: ଆର: ପି, ଭୁବନେଶ୍ୱର ।



ଭୁବନେଶ୍ୱରଠାରେ ଅନୁଷ୍ଠିତ ମହିଳା ସାଇକେଲ ଚାଳନା ପ୍ରତିଯୋଗିତାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି (୨୯/୩) ।

# ପ୍ରାଚୀ ଉପତ୍ୟକାର ମାଧବ ପୀଠ

ନିରୂପମା ତ୍ରିପାଠୀ

ଉତ୍କଳ ଜାହ୍ନବୀ ପ୍ରାଚୀ ନଦୀର ଅବବାହିକାରେ ମାଧବ ନାମଧାରୀ ଚତୁର୍ଭୁଜ ବିଷ୍ଣୁ ମୂର୍ତ୍ତିର ପୂଜା ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ପୂର୍ବରୁ ଆରମ୍ଭ ହୋଇଥିବାର ଅନୁମାନ କରାଯାଇପାରେ । ତେବେ ଏହା ସହ ବୌଦ୍ଧ, ଜୈନ୍ୟ, ଶାକ୍ତ ଓ ତାନ୍ତ୍ରିକ ମତବାଦର ପୀଠମାନ ସମନ୍ୱୟାନୁସାରେ ଏଠାରେ ପ୍ରତିଷ୍ଠିତ ହୋଇଥିଲା । ଅଷ୍ଟାଦଶ ଶତାବ୍ଦୀରେ ରଚିତ ପ୍ରାଚୀ ମହାତ୍ମ୍ୟରେ ପ୍ରାଚୀ କୂଳରେ ଦ୍ୱାଦଶ ମାଧବ ପୀଠମାନ ଥିବାର ବର୍ଣ୍ଣନା ଅଛି । ପ୍ରାଚୀ ମହାତ୍ମ୍ୟ ସଂସ୍କୃତ "କପିଳ ସଂହିତା" ଛାୟାରେ ଲିଖିତ ।

"ଦ୍ୱାଦଶ ମାଧବ ନିବାସ – କରି ଅଛନ୍ତି ତୀରେ ବାସ ।

ପ୍ରାଚୀ ମହାତ୍ମ୍ୟ–୧୦

ମହାକବି ଜୟଦେବଙ୍କ ଜନ୍ମସ୍ଥାନ ରୂପେ ବିଦିତ କେନ୍ଦୁଲୀ ଗ୍ରାମ ସନ୍ନିକଟ ପ୍ରାଚୀ ଉପତ୍ୟକାରେ କିଭଳି ମାଧବ ପୀଠମାନ ଥିଲା ପ୍ରତ୍ନତାତ୍ତ୍ୱିକ ତଥ୍ୟମାନଙ୍କ ଉପରେ ଭିତ୍ତିକରି ତାହାର ଏକ ଚିତ୍ର ନିମ୍ନରେ ପ୍ରଦତ୍ତ ହେଲା ।

## ମାଧବାନନ୍ଦ :

କେନ୍ଦୁଲୀ ଗ୍ରାମ ଉତ୍ତରକୁ ପ୍ରାୟ ଦୁଇ କିଲୋମିଟର ଦୂର ଅଡ଼ସପୁରଠାରେ ଥିବା ମାଧବାନନ୍ଦ ମଠର ମାଧବ ବିଗ୍ରହ । ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ପୂର୍ବରୁ ମୂର୍ତ୍ତିଟିର ଗଠନ ବୋଲି କୁହାଯାଇପାରେ । କେନ୍ଦୁଲୀ ଗ୍ରାମରେ ଆବିଷ୍କୃତ ଦୁଇଟି କମନୀୟ ମାଧବ ବିଗ୍ରହ ସ୍ଥାନୀୟ ଜୟଦେବ ସଂଗ୍ରହାଳୟରେ ରଖାଯାଇଛି ।

## ନିଆଳୀ ମାଧବ :

ନିଆଳୀ ଶାସନସ୍ଥ ଶୋଭେନେଶ୍ୱର ମହାଦେବଙ୍କ ପ୍ରାଙ୍ଗଣରେ ପ୍ରାଚୀ ଉପତ୍ୟକାରେ ଧ୍ୱଂସ ହେଇଥିବା ୧୧ଟି ମନ୍ଦିରରୁ ଆନିତ ମାଧବ ବିଗ୍ରହ ଏଠାରେ ଏକ ସଂଗ୍ରହାଳୟରେ ରଖାଯାଇଛି । ସ୍ଥାନୀୟ ବ୍ରହ୍ମା ମନ୍ଦିର ସନ୍ନିକଟସ୍ଥ ପୁଷ୍କରିଣୀରୁ ଆବିଷ୍କୃତ ଦୁଇଟି ମାଧବ ବିଗ୍ରହ ମଧ୍ୟ ଏହାର ଅନ୍ତର୍ଭୁକ୍ତ ।

## ମାଧବ :

ପ୍ରାଚୀ କୂଳସ୍ଥ ମାଧବ ଗ୍ରାମର ବିଖ୍ୟାତ ମାଧବ ମନ୍ଦିର । ... ରାଜତ୍ୱ କାଳରେ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ମନ୍ଦିର ... ହୋଇଥିଲେ ମଧ୍ୟ ପୂଜିତ ବିଗ୍ରହ ଏହାର ପୂର୍ବବର୍ତ୍ତୀ କାଳର ... କୁହାଯାଇପାରେ । ମନ୍ଦିରରେ ଦଶାବତାରର ବିଗ୍ରହ ... ସ୍ତମ୍ଭିପଟର କାନ୍ଥରେ ରହିଛି । ଏପରି ଦଶାବତାର ... ଖୋଦେଇ ଥିବା ମନ୍ଦିର ଅତ୍ୟନ୍ତ ବିରଳ । ଭୁବନେଶ୍ୱର ... ବୋଇତାଳ ମନ୍ଦିର ପଛପଟ ରାଜଗୁରୁ ପରିବାରର ... (ସ୍ୱର୍ଣ୍ଣ ଜଳେଶ୍ୱର) ଶିବ ମନ୍ଦିରରେ ଏପରି ଦଶାବତାର ବିଗ୍ରହ ... ଦେଖିବାକୁ ମିଳେ । କେନ୍ଦୁଲୀ ଗ୍ରାମଠାରୁ ମାଧବର ଦୂରତା ... ରେଖାରେ ପ୍ରାୟ ସାତ କିଲୋମିଟର ହେବ ।

## ଅଙ୍ଗେଶ୍ୱର ମାଧବ :

ମାଧବ ଗ୍ରାମର ଦକ୍ଷିଣକୁ ପାଞ୍ଚ କିଲୋମିଟର ... ପିତାପଡ଼ାଠାରେ ଥିବା ଅଙ୍ଗେଶ୍ୱର ମହାଦେବଙ୍କ ମନ୍ଦିର ନିକଟରେ ... ଥିବା ଏକ ସ୍ୱଳଘରେ ତିନି ଫୁଟ ଉଚ୍ଚ କଳା ମୁଗୁନି ପ୍ରସ୍ତରର ... ବିଗ୍ରହ ପୂଜା ପାଉଛନ୍ତି । ମାଧବଙ୍କ ନିମନ୍ତେ ଥିବା ମନ୍ଦିରଟି ... ପାଇଯାଇଛି । ଅଙ୍ଗେଶ୍ୱର ମହାଦେବଙ୍କ ଜଗମୋହନରେ ମୁଗୁନି ... ପ୍ରସ୍ତରର ଦୁଇଟି ମାଧବ ବିଗ୍ରହ ଥୁଆ ହୋଇଛି । ଏହି ସ୍ଥାନ ... ଅଙ୍ଗ ତୀର୍ଥ କୁହାଯାଏ ।

## ଅମରେଶ୍ୱର ମନ୍ଦିର :

ପ୍ରାଚୀ ନଦୀର ଦକ୍ଷିଣ କୂଳ ନିମାପଡ଼ା–ଅସ୍ତରଙ୍ଗ ରାସ୍ତା ... କଡ଼ରେ ଥିବା ଅମରେଶ୍ୱର ମହାଦେବଙ୍କ ମନ୍ଦିର । ମନ୍ଦିର ... ପ୍ରାଚୀନ ଇଟାରେ ତିଆରି । ଜଗମୋହନ ମଧ୍ୟରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ କଳା ମୁଗୁନି ପ୍ରସ୍ତରରେ ନିର୍ମିତ ମାଧବଙ୍କ ବିଗ୍ରହ ପୂଜା ପାଉଛନ୍ତି । ଶିବ ମନ୍ଦିରର ପଶ୍ଚିମକୁ କଳା ପ୍ରସ୍ତରରେ ନିର୍ମିତ ... ମନ୍ଦିରରେ ଲକ୍ଷ୍ମୀ ନୃସିଂହଙ୍କ ବିଗ୍ରହ । କେନ୍ଦୁଲୀ ଗ୍ରାମ ... ଲକ୍ଷ୍ମୀନୃସିଂହ ବିଗ୍ରହ ସହିତ ଏହାର ସାମଞ୍ଜସ୍ୟ ରହିଛି ।

## ନୀଳକଣ୍ଠପୁର ମାଧବ :

କାକଟପୁର ବ୍ଲକ୍ ଅଫିସ୍ ସନ୍ନିକଟ ନୀଳକଣ୍ଠପୁର ଗ୍ରାମସ୍ଥ ... ମନ୍ଦିର ମଧ୍ୟରେ ମାଧବ ୪ଫୁଟ ୬ଇଞ୍ଚ×୨ ଫୁଟ ୬ ଇଞ୍ଚ ବିଗ୍ରହ ... ପୂଜା ପାଉଛନ୍ତି । ମନ୍ଦିରରେ ପାର୍ଶ୍ୱ ଦେବତା ଭାବେ ବରାହ ... ନୃସିଂହ, ତ୍ରିବିକ୍ରମ ବିଗ୍ରହମାନ ଅଛି ।

## ଦଗିଲୀ ମାଧବ :

କାକଟପୁର ଥାନା ପ୍ରାଚୀ ନଦୀର ବାମକୂଳ ଦଗିଲୀ ... ନାମକ ସ୍ଥାନରେ ୪ ଫୁଟ ୨ ଇଞ୍ଚର ମାଧବ ବିଗ୍ରହ ପୂଜା ... ପାଉଛନ୍ତି । ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ସେଠାରେ ଦୁଇ ... ମନ୍ଦିର ସହ ଜଗମୋହନ ଓ ନାଟ ମନ୍ଦିରର ପୀଠମାନ ମଧ୍ୟ ... ଆବିଷ୍କୃତ ହୋଇପାରିଛି । ଅକ୍ଷୟ ତୃତୀୟା ଦିନ ଏଠାରେ ... ବଡ଼ ମେଳା ହୁଏ ।

## ନୀଳମାଧବ :

ପ୍ରାଚୀ ନଦୀର ଦକ୍ଷିଣ କୂଳ ନିମାପଡ଼ା–ଅସ୍ତରଙ୍ଗ ରାସ୍ତା ... ସନ୍ନିକଟ ଅମରେଶ୍ୱର ଶିବ ମନ୍ଦିରଠାରୁ ଦୁଇ କିଲୋମିଟର ଦୂରରେ ...

... ଶ୍ରୀ ମନ୍ଦିରରେ ସୁନ୍ଦର ପ୍ରସ୍ତରରେ ମାଧବ ବିଗ୍ରହ (୩ ଫୁଟ ୧୦ ଇଞ୍ଚ) ଦେଖାଯାଏ । ବିଗ୍ରହ ବସିଥିବା ... ସିଂହାସନ ୨ ଫୁଟ ୮ ଇଞ୍ଚ × ୧ ଫୁଟ ୯ ଇଞ୍ଚ) ମୂର୍ତ୍ତିର ... ଦୁଇଟି ଶ୍ରୀ ବିଗ୍ରହ ଓ ପାଦତଳେ ଗରୁଡ଼ଙ୍କର ପ୍ରାର୍ଥନା ... ମୁଦ୍ରା ଏଥିରେ ଅଛି ।

**... ମାଧବ :**

... ୩ କିଲୋମିଟର ଦୂର ଦକ୍ଷିଣ–ପଶ୍ଚିମ ... ଅବସ୍ଥିତ ଲତାହରଣଠାରେ ଥିବା ରାମେଶ୍ୱର ଶିବ ... ଜଗମୋହନରେ ଦୁଇଟି ମାଧବ ବିଷ୍ଣୁଙ୍କର ବିଗ୍ରହ । ... ବିଗ୍ରହ ମଧ୍ୟରେ ତ୍ରିବିକ୍ରମ, ବରାହ ଓ ଗରୁଡ଼ । ଏଠାରେ ... ସିଂହାସନରେ ବସିଥିବା ଅଷ୍ଟଭୁଜା ଦୁର୍ଗା ଅଛନ୍ତି । ବିଷ୍ଣୁ ଓ ... ପୂର୍ବ ଥିବା ହେତୁ ସେଠାରେ ପୂର୍ବରୁ ଏକ ବିଷ୍ଣୁ ମନ୍ଦିର ଥିବା ... ଯାଇପାରେ ।

**ମୁଦ୍‌ଗଲ ମାଧବ :**

... ମୁଦ୍‌ଗଲ୍ ଗ୍ରାମରେ ମାଧବଙ୍କ (୫ ଫୁଟ ୭ ଇଞ୍ଚ)ର ... ଅତ୍ୟନ୍ତ ସୁନ୍ଦର । ଏହି ପୀଠଠାରୁ ଅଳ୍ପ ଦୂରରେ ଥିବା ଏକ ... ମନ୍ଦିରରେ ମାଧବଙ୍କର (୪ ଫୁଟ ୨ ଇଞ୍ଚ) ଅନ୍ୟ ଏକ ବିଗ୍ରହ ... ପାଉଛନ୍ତି । କିମ୍ବଦନ୍ତୀ ଅନୁଯାୟୀ ମୁଦ୍‌ଗଲ୍ ଋଷି ଏହି ... ବିଗ୍ରହ ପ୍ରତିଷ୍ଠା କରିଥିଲେ ।

**ଲଳିତ ମାଧବ :**

ପ୍ରାଚୀ ଓ ଲଳିତା ନଦୀ ମଧ୍ୟବର୍ତ୍ତୀ ସ୍ଥାନରେ ପୂଜିତ ବିଗ୍ରହଙ୍କୁ ଲଳିତ ମାଧବ କୁହାଯାଏ । ମୂର୍ତ୍ତିଟିର ଉଚ୍ଚତା ୩ ଫୁଟ ୫ ଇଞ୍ଚ × ୧ ଫୁଟ ୧୦ ଇଞ୍ଚ ହେବ । ଏଠାରେ ଏକ ମନ୍ଦିର ଥିଲା । ମାତ୍ର ତାହା କାଳକ୍ରମେ ଭାଙ୍ଗିଯାଇଛି । ଏହି ମାଧବଙ୍କ ଦର୍ଶନ ନିମନ୍ତେ ବହୁ ଯାତ୍ରୀଙ୍କର ସମାଗମ ହୁଏ ।

**ମଙ୍ଗଳା ମାଧବ :**

କାକଟପୁର ମଙ୍ଗଳାଙ୍କ ବେଢ଼ାରେ ଥିବା ଦୁଇଟି ମାଧବ ବିଗ୍ରହ ପୂଜା ପାଉଛନ୍ତି । ମଙ୍ଗଳାଙ୍କ ଦର୍ଶନ ପରେ ମାଧବ ବିଗ୍ରହ ଦର୍ଶନରେ ବହୁ ପୁଣ୍ୟ ହୁଏ ବୋଲି କଥିତ ।

**ସହାୟକ ଗ୍ରନ୍ଥ :**


(୧) ଜୟଦେବ ଓ ଗୀତ ଗୋବିନ୍ଦ–କେଦାର ନାଥ ମହାପାତ୍ର ।

(୨) Prachi Valley—Shri P. K. Ray

(୩) Jayadev—Shri P. C. Tripathy



ନିରୁପମା ତ୍ରିପାଠୀ,
Qrs. 2RA, 11/7, Flat,
Unit IX, Bhubaneswar.





ଗୁଡ଼ିକା ଭବନଠାରେ ଆୟୋଜିତ ଖଣି ଏବଂ ଖଣିଭିତ୍ତିକ କାରଖାନାଗୁଡ଼ିକରେ ନିରାପତ୍ତା, ସ୍ୱାସ୍ଥ୍ୟ ଏବଂ ପରିବେଶ ଶୀର୍ଷକ ଏକ ଜାତୀୟ ସମ୍ମେଳନକୁ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଉଦ୍‌ଘାଟନ କରୁଛନ୍ତି (୨୨/୨) ।

# ଭାରତୀୟ ସାଂସ୍କୃତିକ ଏକତାର ପ୍ରତୀକ 'ଗୀତଗୋବିନ୍ଦ'

ଶ୍ରୀ ବ୍ରଜ ପାଇକରାୟ

ହିମାଳୟ ବ୍ୟତିରେକ ଯେଉଁଳି ଭାରତର ଭୌଗଳିକ ସ୍ଥିତି ବର୍ଣ୍ଣନା ଅସମ୍ପୂର୍ଣ୍ଣ, ଠିକ୍ ସେହିପରି 'ଗୀତଗୋବିନ୍ଦକୁ' ବାଦ୍ ଦେଇ ଦ୍ୱାଦଶ ଶତାବ୍ଦୀଠାରୁ ଭାରତୀୟ ସାହିତ୍ୟ ଓ ସଂସ୍କୃତିର ସମୀକ୍ଷା ଓ ବିଶ୍ଳେଷଣ ଅଚିନ୍ତନୀୟ ।

ଐତିହାସିକମାନଙ୍କ ମତରେ ଏହି ମହାନ୍ କାବ୍ୟ 'ଗୀତଗୋବିନ୍ଦ'ର ସ୍ରଷ୍ଟା ଜୟଦେବ ପୁରୀ ନିକଟସ୍ଥ କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମ ଗ୍ରହଣ କରି ୧୧୫୬ ଖ୍ରୀ: ଅ:ରୁ ୧୧୭୦ ଖ୍ରୀ: ଅ: ମଧ୍ୟରେ ଗଙ୍ଗ ସମ୍ରାଟ ରାଘବଙ୍କ ରାଜସଭାରେ ଜଣେ ଶ୍ରେଷ୍ଠ ପଣ୍ଡିତ ରୂପେ କାର୍ଯ୍ୟ କରୁଥିଲେ । ତାଙ୍କର ରଚିତ ସଂସ୍କୃତ କାବ୍ୟ 'ଗୀତଗୋବିନ୍ଦ'ରେ ରାଧାକୃଷ୍ଣଙ୍କ ପ୍ରେମଲୀଳା ଓ ଭଗବାନ ବିଷ୍ଣୁଙ୍କ ଦଶାବତାର୍ ଆଦିର ବର୍ଣ୍ଣନା ଏଭଳି ଲାଳିତ୍ୟପୂର୍ଣ୍ଣ ଓ ଭାବଗର୍ଭକ ହୋଇଥିଲା ଯେ ଏହା ସାଧାରଣ ଜନମାନସକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ଦ୍ୱାଦଶ ଶତାବ୍ଦୀରେ "ଗୀତ ଗୋବିନ୍ଦ" ରଚିତ ହେବାପରେ ଏହାର ପ୍ରସାର ଓ ଲୋକପ୍ରିୟତା ଯଥେଷ୍ଟ ବୃଦ୍ଧି ପାଇଥିଲା ଏବଂ ଏହା କ୍ରମେ ଭାରତର ବହୁ ଆଞ୍ଚଳିକ ଭାଷାରେ ଅନୁଦିତ ହୋଇଥିଲା । ଏହି ଅନୁଦିତ କାବ୍ୟଗୁଡ଼ିକରେ ମୂଳ 'ଗୀତ ଗୋବିନ୍ଦ'ର ଭାବଧାରାର ମୌଳିକତା ରକ୍ଷା କରିବା ସଙ୍ଗେ ସଙ୍ଗେ କବିମାନେ ନୂତନ ତଥ୍ୟମାନ ସଂଯୋଜିତ କରିବାରେ ଲାଗିଲେ ଏବଂ ଏହାର ଶୈଳୀକୁ ଅନୁକରଣ ପୂର୍ବକ ନୂତନ 'ଗୀତଗୋବିନ୍ଦ' ରଚନା କରିବା ଲାଗି ପ୍ରଚେଷ୍ଟା ଚଳାଇଥିଲେ । ମାତ୍ର ପ୍ରତ୍ୟେକ ଅନୁବାଦ କାବ୍ୟ ଓ ରଚନାରେ ଏହାର ମୌଳିକ ନିର୍ଯ୍ୟାସ ବା ଅନ୍ତଃସତ୍ତା ଅକ୍ଷୁଣ୍ଣ ରହିଥିଲା । କ୍ରମଶଃ ବିଭିନ୍ନ ଗୋଷ୍ଠୀ, ସମାଜ ଓ ହିନ୍ଦୁ ପଣ୍ଡିତମାନଙ୍କ ଦ୍ୱାରା ଏହାର ମାର୍ମିକ ବିଶ୍ଳେଷଣ ଓ ଉପସ୍ଥାପନାର ଧାରା ପରିବର୍ତ୍ତିତ ହୋଇଥିଲା । ସାହିତ୍ୟିକ ଅଭିରୁଚିର ପ୍ରସାର ସଙ୍ଗେ ସଙ୍ଗେ ନାଟ୍ୟ ଶାସ୍ତ୍ରରେ ବିଭିନ୍ନ ରାଗ, ତାଳ ଓ ଛନ୍ଦରେ ନୂତନତ୍ୱ ସ୍ଥାନ ପାଇଲା ଏବଂ କଳା ଓ ଭାସ୍କର୍ଯ୍ୟ କ୍ଷେତ୍ରରେ 'ଗୀତ ଗୋବିନ୍ଦ'ରେ ବର୍ଣ୍ଣିତ ରାଧାକୃଷ୍ଣ ପ୍ରେମଲୀଳା ସମ୍ପର୍କିତ ତଥ୍ୟ ଏବଂ ଅବତାରଗୁଡ଼ିକର ସ୍ଥୂଳ ରୂପାୟନ ଓ ନୃତ୍ୟ ଶୈଳୀର ବିଭିନ୍ନ ଅନୁବନ୍ଧମାନ ବହୁଳ ଭାବେ ବିଭିନ୍ନ ମନ୍ଦିର ଓ ପ୍ରାସାଦ ଗାତ୍ରରେ ଖୋଦିତ ହୋଇଥିଲା । ଉକ୍ତ କାବ୍ୟାନୁକରଣରେ ମଧ୍ୟ ଚିତ୍ରକରମାନେ ସ୍ୱୀୟ କଳ୍ପନାଭିତ୍ତିକ ବିଭିନ୍ନ ରୂପରେଖ ଅଙ୍କନ କଲେ । ଫଳରେ ଭାରତର ବିଭିନ୍ନ ଆଞ୍ଚଳିକ ଚିତ୍ରକଳା କ୍ଷେତ୍ରରେ 'ଗୀତ ଗୋବିନ୍ଦ'ର ପ୍ରଭାବ ପରିଦୃଷ୍ଟ ହୋଇଥିଲା । ଆଞ୍ଚଳିକ ନୃତ୍ୟଗୁଡ଼ିକରେ ଏହାର ରାଗ, ତାଳକୁ ସନ୍ନିବେଶିତ କରି ନୃତ୍ୟଗୁରୁମାନେ ନୂତନ ପରମ୍ପରା ସୃଷ୍ଟି କରିବାକୁ ଲାଗିଲେ । ବିଶେଷକରି ମନ୍ଦିରଗୁଡ଼ିକରେ ପ୍ରଚଳିତ 'ମାହାରୀ ନୃତ୍ୟ' ବା 'ଦେବଦାସୀ ନୃତ୍ୟ'ରେ 'ଗୀତଗୋବିନ୍ଦ'ର ବିଭିନ୍ନ ସର୍ଗର ଭାବ ନୃତ୍ୟ ମାଧ୍ୟମରେ ପ୍ରକଟ କରାଗଲା ।

ନେପାଳରେ ସପ୍ତଦଶ ଶତାବ୍ଦୀର ପଞ୍ଚମ ଦଶନ୍ଧିରେ ରଚିତ 'ଗୀତଗୋବିନ୍ଦ'ର ଏକ ସଂସ୍କରଣ ୨୪ ସର୍ଗ ବିଶିଷ୍ଟ ଏବଂ ଏଥିରେ ମୂଳ ଗୀତଗୋବିନ୍ଦର ସପ୍ତଦଶ ପଦକୁ ବାଦ୍ ଦିଆଯାଇଛି । ପାଟନାଠାରୁ ପ୍ରାପ୍ତ ଗୀତଗୋବିନ୍ଦ ୧୨୯୫ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିବାର ଉଲ୍ଲେଖ ରହିଛି । ବିଭିନ୍ନ ସୂତ୍ରରୁ ଗବେଷଣାରୁ ଦେଖାଯାଇଛି ଯେ 'ଗୀତଗୋବିନ୍ଦ'ର ସାହିତ୍ୟିକ ରୂପାନ୍ତର ଭାରତବର୍ଷର ଗୁଜୁରାଟ, କର୍ଣ୍ଣାଟକ, କେରଳ, ଆସାମ, ମଣିପୁର, ପଞ୍ଜାବ ଆଦି ରାଜ୍ୟରେ ପ୍ରସାର ଲାଭ କରିଥିଲା ଏବଂ ବିଶେଷତଃ ଓଡ଼ିଶା ଓ ବଙ୍ଗଳାରେ ଏହାର ବହୁ ସଂସ୍କରଣ ଭିନ୍ନ ରୂପରେ ଦୃଷ୍ଟିଗୋଚର ହୋଇଥାଏ । ଚତୁର୍ଦ୍ଦଶ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟଭାଗ ପର୍ଯ୍ୟନ୍ତ ଗୀତଗୋବିନ୍ଦର ରଚନାଗୁଡ଼ିକରେ ବିଭିନ୍ନ ତାରତମ୍ୟ ପରିଲକ୍ଷିତ ହୋଇଥାଏ । ପଞ୍ଚଦଶ ସପ୍ତଦଶ ଶତାବ୍ଦୀରେ ଭକ୍ତି ଧର୍ମାନ୍ଦୋଳନ ସମୟରେ ବୈଷ୍ଣବମାନଙ୍କ ଦ୍ୱାରା ଏହା ବହୁ ଚର୍ଚ୍ଚିତ ହେବା ଫଳରେ କବି, ପଣ୍ଡିତ ଓ ସମାଲୋଚକମାନେ ଉକ୍ତ କାବ୍ୟର ବିଭିନ୍ନ ଦିଗର ଆଲୋଚନା, ସମାଲୋଚନା, ରଚନା ଓ ସମୀକ୍ଷା ଦିଗରେ ନିଜର ସାଧନା ତ୍ୱରାନ୍ୱିତ କରିଥିଲେ । ସେହି ସମୟରେ ପଞ୍ଚ ବୈଷ୍ଣବଧର୍ମର ଏକ ମୁଖ୍ୟ ପୀଠସ୍ଥଳୀ ଥିଲା ଓ 'ଗୀତଗୋବିନ୍ଦ'ର ପଠନ ଓ ଗାୟନର ଜନପ୍ରିୟତା ଦୃଷ୍ଟିରୁ ପଶ୍ଚିମ ସାହିତ୍ୟର ଏହାର ଗୁରୁତ୍ୱ ବହୁଳ ଭାବେ ବୃଦ୍ଧି ପାଇଥିଲା । ପଞ୍ଚଦଶ ଶତାବ୍ଦୀର 'ଗୀତଗୋବିନ୍ଦ' ଲେଖକମାନଙ୍କ ମଧ୍ୟରେ ଗୁଜୁରାଟର କବିମାନଙ୍କର ଏବଂ ରାଜସ୍ଥାନର କବି କୁମ୍ଭଙ୍କ ନାମ ଉଲ୍ଲେଖଯୋଗ୍ୟ । ଷଷ୍ଠ ଶତାବ୍ଦୀ ବେଳକୁ ଏହାର ବହୁ ସଂସ୍କରଣ ଓଡ଼ିଶା ଓ ବଙ୍ଗଳାରେ ପ୍ରକାଶିତ ହୋଇ ପ୍ରସାର ଲାଭ କରିଥିଲା । ଶ୍ରୀଚୈତନ୍ୟଙ୍କ ଆବିର୍ଭାବ ପରେ ବୈଷ୍ଣବ ମତାବଲମ୍ବୀମାନଙ୍କ ମଧ୍ୟରେ ଏହା ବିଶେଷ ଆଦୃତ ହୋଇ ଥିବାର ଜଣାଯାଏ । ପଞ୍ଚଦଶ ଶତାବ୍ଦୀ ରଚିତ 'ଅଭିନବ ଗୀତ ଗୋବିନ୍ଦ'ର ରାଗ ଓ ତାଳ ଇତ୍ୟାଦିରେ କେତେକ ଭିନ୍ନତା ପରିଲକ୍ଷିତ ହୋଇଥାଏ ।

କାଳକ୍ରମେ ଉକ୍ତ କାବ୍ୟ ଲୋକ ସଂସ୍କୃତି ଓ ମନ୍ଦିର ସଂସ୍କୃତି ସହ ଘନିଷ୍ଠଭାବେ ସଂଶ୍ଳିଷ୍ଟ ହେଲା । ଓଡ଼ିଶା, ବଙ୍ଗଳା, ଗୁଜୁରାଟ, ରାଜସ୍ଥାନ ଆଦି ରାଜ୍ୟର ଲୋକ ସଂସ୍କୃତି ସହ 'ଗୀତଗୋବିନ୍ଦ'ର ଲଳିତ ପଦ୍ୟାବଳୀ ମିଶିଯିବାରୁ ସାଧାରଣ ଜନତା ମୁଖରେ ଅଧିକ ପ୍ରସାରିତ ହୋଇଥିଲା । ସେହିପରି ଦକ୍ଷିଣ ଭାରତରେ ଏହା 'ରାଧା କଲ୍ୟାଣମ୍' ନାମରେ ସଙ୍ଗୀତ ଓ ନୃତ୍ୟ କଳାରେ ନୂତନ ପରମ୍ପରା ସୃଷ୍ଟିକଲା । ସୁପ୍ରସିଦ୍ଧ ତେଲୁଗୁ ସାଧୁ 'ସ୍ୱାମୀ ନିର୍ଦ୍ଧ' ଯେତେବେଳେ ବୃନ୍ଦାବନ ଯାତ୍ରୀ କଲେ, ସେଠାରେ ସେ

ଗୀତଗୋବିନ୍ଦରେ ରାଧାଙ୍କ ବୈଶିଷ୍ଟ୍ୟ ସମ୍ପର୍କରେ ଭିନ୍ନ ଯୁକ୍ତିମାନ ଦେଇ ରାଧାଙ୍କୁ 'ଗୀତଗୋବିନ୍ଦ'ର ଶ୍ରେଷ୍ଠ ଚରିତ୍ର ରୂପେ ବର୍ଣ୍ଣନା କରିଛନ୍ତି । ଫଳରେ ଉତ୍ତର ଓ ଦକ୍ଷିଣ ଭାରତର କେତେକ ଅଞ୍ଚଳରେ 'ରାଧା' ପୂଜନର ପରମ୍ପରା ପ୍ରଚଳିତ ହେଲା । ଶାକ୍ତ ମତାନୁଯାୟୀ ରାଧାଙ୍କୁ ଶକ୍ତି ବା ଆଧାର ରୂପେ ଅନେକ ଗ୍ରହଣ କଲେ । ଅନ୍ୟ ପକ୍ଷରେ ଆସାମର ପଣ୍ଡିତ ଶଙ୍କରଦେବଙ୍କ ଦ୍ୱାରା 'କୃଷ୍ଣ' ଚରିତ୍ରକୁ ମୁଖ୍ୟ ଓ 'ରାଧା' ଚରିତ୍ରକୁ ଗୌଣ ଚରିତ୍ର ରୂପେ ଚିତ୍ରିତ କରାଗଲା । ଅତଏବ ପୂର୍ବ ଭାରତର ଅଞ୍ଚଳରେ 'କୃଷ୍ଣ ପୂଜନ'ର ପରମ୍ପରା ସୃଷ୍ଟି ହେଲା । ଏତଦ୍ ବ୍ୟତୀତ ମଧ୍ୟ ଭାରତ ଓ ଉତ୍ତର ଭାରତର କେତେକ ସ୍ଥାନରେ ରାଧା ଓ କୃଷ୍ଣ ଉଭୟଙ୍କର ମାହାତ୍ମ୍ୟ ପ୍ରତି ଗୁରୁତ୍ୱ ଦେଇ 'ଯୁଗଳ ମୂର୍ତ୍ତିମାନ ପ୍ରତିଷ୍ଠା କରାଯାଇଥିଲା ।

ସାହିତ୍ୟ କ୍ଷେତ୍ରରେ 'ଗୀତଗୋବିନ୍ଦ'କୁ କେନ୍ଦ୍ରକରି ଭିନ୍ନ ଭିନ୍ନ ଧାରାର ସୃଷ୍ଟି ହେବାକୁ ଲାଗିଲା । ଗୋସ୍ୱାମୀ ସମ୍ପ୍ରଦାୟର ଅନୁଗାମୀମାନେ ଏହାକୁ ଆଧ୍ୟାତ୍ମ ଶାସ୍ତ୍ର ବା ଧର୍ମତତ୍ତ୍ୱ ସମ୍ବଳିତ ଶାସ୍ତ୍ର ରୂପେ ଗ୍ରହଣ କଲେ । ସାହିତ୍ୟିକ ଦୃଷ୍ଟିଭଙ୍ଗୀରେ 'ଗୀତଗୋବିନ୍ଦ'ର ଗୁଣକୁ ଅନୁଶୀଳନ କରି ଏହାର ଅଳଙ୍କାର ଓ ନାୟକ, ନାୟିକା ଭେଦ ଆଦିର ଏକ କାବ୍ୟିକ ଅଭିବ୍ୟକ୍ତି ବୋଲି କେତେକ ମତ ଦେଲେ । କାମଶାସ୍ତ୍ରୀମାନେ ଏହାକୁ କାମଶାସ୍ତ୍ର ଭାବେ ଗ୍ରହଣ କରିନେଲେ । ସଙ୍ଗୀତଜ୍ଞମାନେ 'ଗୀତଗୋବିନ୍ଦ'ର ଗୀତିତତ୍ତ୍ୱକୁ ନେଇ ନୂତନ ସଙ୍ଗୀତମାନ ରଚନା କରିବାକୁ ଲାଗିଲେ । ନାଟ୍ୟକାରମାନେ ସଂସ୍କୃତ ତଥା ବିଭିନ୍ନ ଆଞ୍ଚଳିକ ଭାଷାରେ ଏହାର ନାଟ୍ୟ ରୂପାନ୍ତର ପ୍ରଦର୍ଶନ କରାଇ ଲୋକପ୍ରିୟତା ହାସଲ କରିବାରୁ ଏହା ନାଟ୍ୟ ଜଗତର ଏକ ଅମୂଲ୍ୟ ସୃଷ୍ଟି ରୂପେ ପରିଗଣିତ ହେଲା । ଭାଷିକ ଦୃଷ୍ଟିକୋଣରୁ ବିଭିନ୍ନ କବିଙ୍କ ରଚନାମାନ ଭାଷା ସାହିତ୍ୟକୁ ସମୃଦ୍ଧ କଲା । ଅନୁବାଦ ସାହିତ୍ୟ ମୁଖ୍ୟତଃ ସାଂସ୍କୃତିକ ଐକ୍ୟ, ଭାଷା ବିବାଦ ଓ ଅନ୍ତର୍ଦ୍ୱନ୍ଦ ଦୂରୀକରଣରେ ବିଶେଷ ସହାୟକ ହେଲା ।

'ଗୀତଗୋବିନ୍ଦ'ର ପ୍ରଚାର ଓ ପ୍ରସାରର ଅନ୍ୟ ଏକ ବଳିଷ୍ଠ ମାଧ୍ୟମ ଥିଲା ଚିତ୍ରକଳା ଓ ଭାସ୍କର୍ଯ୍ୟ କଳା । ଏହି ପଦ୍ୟାବଳୀର ଭାବଧାରା, ରୂପ ଓ ଛନ୍ଦକୁ ଚିତ୍ରକଳାରେ କଳାକାରମାନେ ଚିତ୍ରାଙ୍କନ କରିବାକୁ ଲାଗିଲେ । ଏହାମଧ୍ୟ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବେଶ୍ ଆଦୃତ ହେବାକୁ ଲାଗିଲା । ଐତିହାସିକମାନେ ମନ୍ଦିର ଏବଂ ପ୍ରାସାଦ ପ୍ରାଙ୍ଗଣ ଓ କାନ୍ଥରେ ଖୋଦିତ ମୂର୍ତ୍ତି ଓ ବହୁ ଅଙ୍କିତ ଚିତ୍ରପଟର ସନ୍ଧାନ ପାଇଁ ଶତାବ୍ଦୀବ୍ୟାପୀ ଏହାର ଚିତ୍ରକଳାର ମାନ ନିର୍ଦ୍ଧାରଣ କରିଛନ୍ତି । ୧୯୩୮ ମସିହାରେ ଐତିହାସିକ ମଜୁମଦାର ୧୪୮୩ ଖ୍ରୀଷ୍ଟାବ୍ଦରେ ଅଙ୍କିତ ଚିତ୍ରପଟରେ ଚିତ୍ରମାନ ଗୁଜୁରାଟରୁ ଆବିଷ୍କାର କରିଥିଲେ । ଆନ୍ଧ୍ର ପ୍ରଦେଶ, ଦିଲ୍ଲୀ, ରାଜସ୍ଥାନ, ଆସାମ, ପଞ୍ଜାବ, ମଣିପୁର, ଗୁଜୁରାଟ, ହିମାଚଳ ପ୍ରଦେଶ, ଓଡ଼ିଶା ଓ ପଶ୍ଚିମ ବଙ୍ଗରୁ ମିଳିଥିବା ଚିତ୍ରାବଳୀ ବିଭିନ୍ନ ଶିକ୍ଷାନୁଷ୍ଠାନ ଓ ମ୍ୟୁଜିୟମ୍‌ରେ ସଂରକ୍ଷିତ ଅଛି । ଏହାଛଡ଼ା ବିଦେଶୀ ମ୍ୟୁଜିୟମ୍‌ରେ ଏହାର ବହୁ ନମୁନା ଦେଖିବାକୁ ମିଳେ ।

ଭାରତୀୟ ଆଞ୍ଚଳିକ ନୃତ୍ୟ ଓ ସଙ୍ଗୀତରେ 'ଗୀତଗୋବିନ୍ଦ'ର ପ୍ରଭାବ ବିଶେଷ ଉଲ୍ଲେଖଯୋଗ୍ୟ । କେରଳର "ଗୁରୁବାୟୁର ମନ୍ଦିର", ନବଦ୍ୱୀପର ଶ୍ରୀଚୈତନ୍ୟ ମନ୍ଦିର ପୁରୀର ଜଗନ୍ନାଥ ମନ୍ଦିର ଓ ମଥୁରାର ମନ୍ଦିରଗୁଡ଼ିକରେ 'ଗୀତ ଗୋବିନ୍ଦ'କୁ ଶାସ୍ତ୍ରୀୟ ରୀତି ଭିନ୍ନ ଅନ୍ୟ ରୀତିରେ ମଧ୍ୟ ଗାନ କରାଯାଉଥାଏ । ମଞ୍ଚ ଅଭିନୟ ପ୍ରଦର୍ଶନ ସମୟରେ ସାଧାରଣତଃ ନାରୀ ପୋଷାକରେ ଏହାର ସଙ୍ଗୀତ ରୂପକ, ଗୀତାଭିନୟ ଓ ନୃତ୍ୟ ଆଦି ପରିବେଷିତ ହୋଇଥାଏ । ଦକ୍ଷିଣ ଭାରତରେ ଭଜନ ଓ ଲୋକ ସଙ୍ଗୀତ ଭାବରେ ରାଧାକୃଷ୍ଣଙ୍କ ମିଳନ ସଙ୍ଗୀତ ବିଭିନ୍ନ ଉତ୍ସବ ଓ ମାଘ ସଂକ୍ରାନ୍ତି ପ୍ରଭୃତି କେତେକ ପର୍ବପର୍ବାଣୀରେ ଗାନ କରାଯାଏ । ବଙ୍ଗଳା, ଓଡ଼ିଶା ଓ ମଣିପୁରରେ ପ୍ରଚଳିତ କୀର୍ତ୍ତନ, ମେଳା, ପାଲା, ଦାସକାଠିଆ ଆଦିରେ 'ଗୀତ ଗୋବିନ୍ଦ'ର ବର୍ଣ୍ଣନା ଶୈଳୀ ସ୍ୱତନ୍ତ୍ର ରୂପେ କରାଯାଇଥାଏ । କର୍ଣ୍ଣାଟକୀ ଓ ହିନ୍ଦୁସ୍ଥାନୀ ସଙ୍ଗୀତରେ ମଧ୍ୟ ଏହାର ଗାୟନ ପଦ୍ଧତି ଭିନ୍ନ । ଓଡ଼ିଶା, ବଙ୍ଗଳା ଓ ଅନ୍ୟ କେତେକ ମନ୍ଦିର ଗାତ୍ରରେ ଖୋଦିତ ଗୀତ ଗୋବିନ୍ଦର ଦୃଶ୍ୟମାନ ଭାସ୍କର୍ଯ୍ୟ କଳାର ବିକାଶରେ ଏକ ଭିନ୍ନ ଦିଗନ୍ତ ସୃଷ୍ଟି କରିପାରିବାରେ ସକ୍ଷମ ହୋଇପାରିଛି ଏବଂ ସେହି ସେହି ମୂର୍ତ୍ତିଗୁଡ଼ିକ ବିଭିନ୍ନ ଦାର୍ଶନିକ ତତ୍ତ୍ୱର ପ୍ରତୀକ ରୂପେ କବି ଓ ଭାବୁକମାନଙ୍କୁ ନୂତନ ତଥ୍ୟାନୁଶୀଳନ ଲାଗି ପ୍ରେରଣା ଦେଇ ଆସିଛି ।

ଉପରୋକ୍ତ ତଥ୍ୟମାନ ଆଲୋଚନା କଲାବେଳେ ଭାରତୀୟ ସାଂସ୍କୃତିକ ପରମ୍ପରାରେ 'ଗୀତଗୋବିନ୍ଦ'ର ବଳିଷ୍ଠ ପ୍ରଭାବର କାରଣ ବିଶେଷ ପ୍ରଣିଧାନଯୋଗ୍ୟ । ଜୟଦେବଙ୍କ କାବ୍ୟରେ କୋମଳ ପଦ୍ୟାବଳୀ ଭାରତୀୟ ସଂସ୍କୃତି ତଥା ଜନଜୀବନ ସହ ଗଭୀର ଭାବେ ସଂଶ୍ଳିଷ୍ଟ । ଜୟଦେବ ରାଧାକୃଷ୍ଣଙ୍କୁ ଅବତାର ପୁରୁଷ ଓ ପ୍ରକୃତି ରୂପେ ବର୍ଣ୍ଣନା କରୁଥିଲେ ମଧ୍ୟ ସେମାନଙ୍କ ଲୌକିକ ଜୀବନଧାରାକୁ ମନୁଷ୍ୟ ଜୀବନଧାରା ସହ ସନ୍ତୁଳନ ପୂର୍ବକ ବିଭିନ୍ନ ପଦ୍ୟର ଅବତାରଣା କରିଛନ୍ତି । ସାଧାରଣ ମଣିଷର ଆଶା, ଆକାଂକ୍ଷା ସୁଖ, ଦୁଃଖ, କାମନା, ବାସନା, ରୋଗ ଓ ଅଭିମାନକୁ ଏଥିରେ ସ୍ଥାନ ଦେଇଛନ୍ତି । ଏହା ସାଧାରଣ ବ୍ୟକ୍ତି ବିଶେଷଙ୍କ ପାଇଁ ବୋଧଗମ୍ୟ ଓ ଗ୍ରହଣୀୟ ହେବା ସ୍ୱାଭାବିକ, ବିଭିନ୍ନ ଗୋଷ୍ଠୀ ଓ ସମ୍ପ୍ରଦାୟର ବ୍ୟକ୍ତିମାନେ ସର୍ବଦା ସ୍ୱସାମାଜିକ । ଭୌଗଳିକ ସ୍ଥିତି ଏବଂ ଚଳଣି ପ୍ରତି ଏତେ ଅନୁରକ୍ତ ଯେ ଠିକ୍ ନିଜ ଚେତନା ଓ ଚଳଣିର ଦୃଷ୍ଟିଭଙ୍ଗୀ ନେଇ ସ୍ୱୀୟ ଦେବାଦେବୀଙ୍କ ପରିକଳ୍ପନା କରୁଥାନ୍ତି । ତେଣୁ ଜୟଦେବଙ୍କର 'ଗୀତଗୋବିନ୍ଦ'ର ଭାବଧାରା ଲୌକିକ ଜୀବନ ଧାରାର ଅନ୍ତଃସତ୍ତାକୁ ନେଇ ବର୍ଣ୍ଣିତ ହୋଇଥିବାରୁ ଏହା ଭାରତୀୟ ସଂସ୍କୃତିର ଏକ ଉପାଦେୟ ତଥା ଲୋକପ୍ରିୟ ପରମ୍ପରା ରୂପେ ସମଗ୍ର ଦେଶରେ ପ୍ରଚଳିତ । ବୈଦେଶିକ ଆକ୍ରମଣ ସହ ବହୁ ସଂସ୍କୃତିର ଅନୁପ୍ରବେଶ ଓ ସମ୍ମିଶ୍ରଣ ସତ୍ତ୍ୱେ 'ଗୀତଗୋବିନ୍ଦ'ର ପରମ୍ପରା ଭାରତବର୍ଷରେ ଅକ୍ଷୁର୍ଣ୍ଣ ରହିଛି ।

'ଗୀତଗୋବିନ୍ଦ'ର ରଚନା, ଉପସ୍ଥାପନା ଓ ସମାଲୋଚନାର ପଦ୍ଧତି ଭାରତବର୍ଷରେ ପର୍ଯ୍ୟାପ୍ତ, ବହୁ ଚର୍ଚ୍ଚିତ ତଥା ବହୁ ଆଦୃତ । ଏହାର ଆଧ୍ୟାତ୍ମିକ, କାବ୍ୟିକ, କଳାତ୍ମକ ତଥା ସାଙ୍ଗୀତିକ ମୂଲ୍ୟବୋଧର ଭିନ୍ନ ଭାବାର୍ଥମାନ ଭାରତୀୟ ଜନମାନସକୁ ଯେ ଦୃଢ଼ ଭାବରେ ଆକର୍ଷିତ ଓ ଅନୁପ୍ରାଣିତ କରିପାରିଛି ଏହା ସର୍ବଥା ଅନସ୍ୱୀକାର୍ଯ୍ୟ । ତେଣୁ ଉତ୍କଳୀୟ କବି ଜୟଦେବ ଜଗନ୍ନାଥ ସଂସ୍କୃତିର ଭେଦହୀନ ଆଦର୍ଶର ଜଣେ ମହାନ୍ ପୁରୋଧା ଏବଂ 'ଗୀତଗୋବିନ୍ଦ' କାବ୍ୟ ଜାତୀୟ ସଂସ୍କୃତିର ଏକ ଅମୂଲ୍ୟ ରତ୍ନ ।

---

*ଆଡ୍‌ଭୋକେଟ୍,*
*ଡି/୩୮, ଏସ୍. ଡି. ଆଇ. କଲୋନୀ*
*ୟୁନିଟ୍ ୪, ଭୁବନେଶ୍ୱର ।*

# ଉତ୍କଳ ପ୍ରସଙ୍ଗର ବିଜ୍ଞାପନ ହାର

(୧) ସାଧାରଣ ପୂରା ପୃଷ୍ଠା—ଟ ୧,୦୦୦·୦୦

(୨) ସାଧାରଣ ଅର୍ଦ୍ଧ ପୃଷ୍ଠା—ଟ ୬୦୦·୦୦

(୩) ୨ୟ ଏବଂ ୩ୟ ପ୍ରଚ୍ଛଦ ପୃଷ୍ଠା—ଟ ୧,୫୦୦·୦୦

(୪) ୪ର୍ଥ ପ୍ରଚ୍ଛଦ ପୃଷ୍ଠା—ଟ ୨,୫୦୦·୦୦

ଏକ ବର୍ଷ ପାଇଁ ଏକକାଳୀନ ବିଜ୍ଞାପନ ଦେଲେ ଶତକଡ଼ା ୨୫ ଭାଗ ରିହାତି ଦିଆଯିବ। ବିଜ୍ଞାପନ ସମ୍ପର୍କୀୟ ଅଧିକ ତଥ୍ୟ ପାଇଁ ନିମ୍ନୋକ୍ତ ଠିକଣାରେ ଯୋଗାଯୋଗ କରନ୍ତୁ।

*ସୂଚନା ଅଧିକାରୀ*
*ସୂଚନା ଓ ଲୋକ ସମ୍ପର୍କ ବିଭାଗ*
*ଭୁବନେଶ୍ୱର-୭୫୧୦୦୧*

*OGP—MP—PTS (I&PR) 3—6,000—5-5-1992*



ତାଳପତ୍ର ପୋଥିରେ ଜୟଦେବଙ୍କ ସଚିତ୍ର ଗୀତ ଗୋବିନ୍ଦ